ଗୁରୁ ନାନକଦେବଙ୍କର ପଞ୍ଚମ ଜନ୍ମ-ଶତାବ୍ଦୀ ପାଳନ ଅବସରରେ ତାଙ୍କର ନୀତିବାଣୀର ଏକ ସଂକଳନ ପ୍ରକାଶ କରି ତାହାକୁ ସମସ୍ତ ଭାରତୀୟ ଭାଷାରେ ଅନୁବାଦିତ କରିବାକୁ ଭାରତ ସରକାରଙ୍କର ଶିକ୍ଷା ଓ ଯୁବସେବା ମନ୍ତ୍ରଣାଳୟ ସିଦ୍ଧାନ୍ତ ଗ୍ରହଣ କଲେ । ଆଧୁନିକ ଭାରତର ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଆବଶ୍ୟକତା ହେଉଛି—ଜାତୀୟ ଏକତା । ଗୁରୁ ନାନକଦେବଙ୍କ ଜୀବନ ଆମ ଜାତୀୟ ଏକତାର ଏକ ଅନୁପମ ଉଦାହରଣ । ତାଙ୍କର ଏହି ମହନୀୟ ବାଣୀ ପାଠକରି ଆମମାନଙ୍କ ମଧ୍ୟରେ ଜାତୀୟ ଏକତା ଅଧିକରୁ ଅଧିକ ସୁଦୃଢ଼ ହେବ ବୋଲି ଆଶା ।

ଭାଇ ଯୋଧ ସିଂହଙ୍କ ଦ୍ୱାରା ସଂପାଦିତ ଏହି ସଂକଳନଟି ଅଦ୍ୱିତୀୟ । ଏହି ସଂକଳନର ପ୍ରତ୍ୟେକ ପୃଷ୍ଠାରେ ନାନକବାଣୀର ମହନୀୟତା ପାଠକମାନେ ଉପଲବ୍ଧ କରିବେ ।

ମୂଲ୍ୟ : ଟ ୫.୦୦

# ଗୁରୁ ନାନକ ବାଣୀ

ସମ୍ପାଦକ

ଭାଇ ଯୋଧ ସିଂହ

ଅନୁବାଦ

ଡକ୍‌ଟର ମାୟାଧର ମାନସିଂହ



ନ୍ୟାସନାଲ ବୁକ୍‌ ଟ୍ରଷ୍ଟ, ଇଣ୍ଡିଆ
ନୂଆଦିଲ୍ଲୀ

# ଉପକ୍ରମଣିକା

ପାଞ୍ଚ ଶହ ବର୍ଷ ପୂର୍ବେ ପଞ୍ଜାବ ପ୍ରଦେଶରେ ଜଣେ ମହାତ୍ମା ଅବତୀର୍ଣ୍ଣ ହୋଇଥିଲେ ଯେ କି ଆଜି ଏକ ଦିବ୍ୟପୁରୁଷ ତୁଲ୍ୟ ପୂଜ୍ୟ; ଯଦିଓ ସେ ନିଜେ ନିଜକୁ ଦାସ, ସାଧୁ କିମ୍ବା ଅତି ବେଶୀରେ ଏକ କବି କହି ହିଁ ସନ୍ତୁଷ୍ଟ ଥିଲେ । ସେହି ମହାମାନବ ତତ୍କାଳୀନ ଯାତାୟାତ ପଥର ଦୁର୍ଗମତାଜନିତ ନାନାବିଧ ଦୁଃଖକଷ୍ଟକୁ ଭ୍ରୂକ୍ଷେପ ନ କରି ଉତ୍ତରରେ ହିମାଳୟ, ଦକ୍ଷିଣରେ ଲଙ୍କାଦ୍ୱୀପ, ପୂର୍ବରେ ଆସାମ ପ୍ରଦେଶ ଏବଂ ପଶ୍ଚିମରେ ସୀମାନ୍ତ ପ୍ରଦେଶର ଶେଷ ସୀମା ପର୍ଯ୍ୟନ୍ତ ବହୁ ରାଜ୍ୟ ପର୍ଯ୍ୟଟନ କରିଥିଲେ । ସେ ଯେଉଁଠାକୁ ଯାଉଥିଲେ, ସେଠାର ବେଶଭୂଷା ଗ୍ରହଣ କରିନେଇ ସେହି ସ୍ଥାନର ପ୍ରଚଳିତ ଭାଷାରେ ମଧ୍ୟ କଥାବାର୍ତ୍ତା କରୁଥିଲେ ଏବଂ ନିଜ ଦେଶ ବାହାରେ ମକ୍କା, ମଦୀନା ଓ ବାଗ୍‌ଦାଦ୍‌ ପର୍ଯ୍ୟନ୍ତ ମଧ୍ୟ ଯାଇଥିଲେ । ଏହା ତାଙ୍କ ଉପଦେଶାବଳୀରେ ସଂସ୍କୃତ, ଫାରସୀ ଏବଂ ଅନ୍ୟାନ୍ୟ ଉପଭାଷାର ମିଶ୍ରଣରୁ ସ୍ପଷ୍ଟ ଅନୁମିତ ହୁଏ । ଯେତେବେଳେ ସେ ସ୍ୱର୍ଗାରୋହଣ କଲେ, ସେତେବେଳେ ହିନ୍ଦୁମାନେ ତାଙ୍କୁ ନିଜର ଗୁରୁ ପରି ସ୍ୱ ସ୍ୱ ରୀତିନୀତି ଅନୁସାରେ ଶବସଂସ୍କାର ପାଇଁ ଦାବି କଲାବେଳେ ମୁସଲମାନମାନେ ମଧ୍ୟ ତାଙ୍କୁ ନିଜର ପୀର ବୋଲି ମନେକରି ସ୍ୱ ରୀତି ଅନୁଯାୟୀ ତାଙ୍କୁ କବର ଦେବାକୁ ଚାହୁଁଥିଲେ । ସେହି ମହାପୁରୁଷଙ୍କ ପଞ୍ଚମ ଜନ୍ମଶତବାର୍ଷିକୀ ଉପଲକ୍ଷେ ଭାରତ ସରକାରଙ୍କ ଶିକ୍ଷା ଓ ଯୁବସେବା ମନ୍ତ୍ରାଳୟ ସ୍ଥିର କଲେ କି, ତାଙ୍କର ସମସ୍ତ ବାଣୀର ଏକ ସଙ୍କଳନ କରାଯିବ ଏବଂ ସେ ସବୁକୁ ଆମ ସାଧାରଣତନ୍ତ୍ର ରାଷ୍ଟ୍ରର ପ୍ରଧାନ ପ୍ରଧାନ ଭାଷାରେ ପ୍ରଚାରିତ କରାଯିବ । ଆଧୁନିକ ଭାରତର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ହେଲା ରାଷ୍ଟ୍ରର ଐକ୍ୟଭାବ । ଗୁରୁ ନାନକ ଦେବଙ୍କ ଜୀବନୀ ରାଷ୍ଟ୍ରୀୟ ଏକତାର ଏକ ଅନୁପମ ଉଦାହରଣ । ମୋର ବିଶ୍ୱାସ, ଗୁରୁ ନାନକଙ୍କ ବାଣୀଦ୍ୱାରା ଭାରତୀୟଙ୍କ ମଧ୍ୟରେ ଏହି ଏକତାର ଭାବ ଦୃଢ଼ୀଭୂତ ହେବ ।

ଆମ୍ଭେମାନେ ସମସ୍ତେ ଭାଇ ଯୋଧ ସିଂହଙ୍କ ନିକଟରେ ଋଣୀ; କାରଣ "ନ୍ୟାସନାଲ ବୁକ୍ ଟ୍ରଷ୍ଟ"ର ଅନୁରୋଧକ୍ରମେ ସେ ଗୁରୁ ନାନକ ବାଣୀର ଏହି ସଙ୍କଳନ ପ୍ରସ୍ତୁତ କରିଛନ୍ତି ।

୧୮।୨।୭୧ — ବାଳକୃଷ୍ଣ କେଶ୍‌କର

ନୂଆଦିଲ୍ଲୀ

# ସୂଚୀପତ୍ର

# ନିବେଦନ

'ଗୁରୁବାଣୀ'ର ଏହି ସଙ୍କଳନରେ ଗୁରୁ ନାନକ ଦେବଙ୍କ ବାଣୀ ବିଭିନ୍ନ ପ୍ରକରଣରେ ଲେଖାଯାଇଛି ଏବଂ ତାଙ୍କର ଧାର୍ମିକ, ସାଂସ୍କୃତିକ, ସାମାଜିକ ଓ ନୈତିକ ବିଚାରଧାରା ତଥା ସିଦ୍ଧାନ୍ତସବୁକୁ ପ୍ରକାଶ କରିବାର ପ୍ରୟାସ କରାଯାଇଛି । ତତ୍କାଳୀନ ପଞ୍ଜାବରେ ଉପର୍ଯ୍ୟୁକ୍ତ କ୍ଷେତ୍ର ପ୍ରେକ୍ଷିତର ଅବସ୍ଥିତି ସହିତ ଭଲଭାବରେ ପରିଚିତ ହେବା ପାଇଁ ଏହି ବିଚାରଧାରା ଓ ସିଦ୍ଧାନ୍ତର ଯଥାଯଥ ମୂଲ୍ୟାଙ୍କନ ନିତାନ୍ତ ପ୍ରୟୋଜନ । ଭାରତବର୍ଷର ଏହି ଅଂଶଟି ଏଇଥିପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି; କାରଣ ଏହିଠାରେ ହିଁ ପ୍ରଥମେ ବେଦମନ୍ତ୍ର ପ୍ରତିଧ୍ୱନିତ ହୋଇଥିଲା । ସ୍ନାତକମାନେ ଶବ୍ଦମାନଙ୍କୁ ଶୁଦ୍ଧଭାବରେ ଉଚ୍ଚାରଣ କରି ଶିଖିବା ପାଇଁ ଏହି ସ୍ଥାନରେ ପ୍ରତିଷ୍ଠିତ ଆଶ୍ରମମାନଙ୍କୁ ଆସୁଥିଲେ । ସଂସ୍କୃତ ଭାଷାର ସର୍ବଶ୍ରେଷ୍ଠ ବୈୟାକରଣିକ ପାଣିନି ଏହି ସ୍ଥାନରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କର ଲାଳନପାଳନ ମଧ୍ୟ ଏହିଠାରେ ହୋଇଥିଲା । ପୁନଶ୍ଚ ବୌଦ୍ଧଧର୍ମ ମଧ୍ୟ ଏହି କ୍ଷେତ୍ରରେ ବହୁକାଳ ଧରି ପ୍ରତିଷ୍ଠା ଲାଭ କରିଥିଲା । ସୁପ୍ରାଚୀନ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ଏହିଠାରେ ଅବସ୍ଥିତ ଥିଲା; କିନ୍ତୁ ଗୁରୁ ନାନକଙ୍କ ଆବିର୍ଭାବ ସମୟରେ ବୌଦ୍ଧଧର୍ମ ଲୁପ୍ତ-ପ୍ରାୟ ହୋଇଯାଇ ବ୍ରାହ୍ମଣ୍ୟ ଧର୍ମହିଁ ପ୍ରାଧାନ୍ୟ ଲାଭ କରିଥିଲା । ଅବଶ୍ୟ ଜୈନମାନେ ମଧ୍ୟ କୌଣସି କୌଣସି ନଗରରେ ବାସ କରୁଥିଲେ; କିନ୍ତୁ ଏମାନେ ହିନ୍ଦୁ ସମାଜର ଏକ ଅଂଶ ବୋଲି ହିଁ ପରିଗଣିତ ହେଉଥିଲେ । ସେତେବେଳେ ଏ ପ୍ରାନ୍ତରେ ହିନ୍ଦୁ ଓ ମୁସଲମାନହିଁ ବହୁସଂଖ୍ୟାରେ ବାସ କରୁଥିଲେ ଏବଂ ସ୍ୱଳ୍ପସଂଖ୍ୟକ ଗୋରଖପନ୍ଥୀ କାନଫଟା ଯୋଗୀ ହିନ୍ଦୁ ଓ ମୁସଲମାନ ଉଭୟଙ୍କ ଉପରେ ବିଶେଷ ଭାବରେ ପ୍ରଭାବ ବିସ୍ତାର କରୁଥିଲେ । ଲୋକମାନେ ବିଶ୍ୱାସ କରୁଥିଲେ କି ଏମାନଙ୍କଠାରେ ଚମତ୍କାର ଶକ୍ତି ସବୁ ଥିଲା । ଯନ୍ତ୍ର, ମନ୍ତ୍ର ବା ତନ୍ତ୍ର-ବିଦ୍ୟା ସାଧନ କରିଥିବା ହେତୁ ହିଁ ଏହି ଯୋଗୀମାନେ ଲୋକସମାଜରେ ବୈଶିଷ୍ଟ୍ୟ ଲାଭ କରିଥିଲେ । ଯୋଗୀମାନଙ୍କ ବରଦାନଦ୍ୱାରା ଧନଲାଭ ଆଶାରେ ପ୍ରଲୁବ୍ଧ କିମ୍ବା ସେମାନଙ୍କ ଅଭିଶାପ ସମ୍ଭାବନାରେ ଭୟଭୀତ ହୋଇ ଲୋକମାନେ ସେମାନଙ୍କର ସେବା-ଶୁଶ୍ରୂଷା କରୁଥିଲେ ଏବଂ ବେଳେ ବେଳେ ସେମାନଙ୍କୁ ଗୁରୁ ବୋଲି ମଧ୍ୟ ମାନିନେଉଥିଲେ । ମୁସଲମାନ ବା ହିନ୍ଦୁ ଉଭୟ ଧର୍ମର ଲୋକମାନଙ୍କୁ ଏହି ପନ୍ଥାରେ ଦୀକ୍ଷିତ କରାଇ ନିଆଯାଉଥିଲା । ହିନ୍ଦୁ ଓ ମୁସଲମାନ ଉଭୟ ଶ୍ରେଣୀ ଏହି ମତକୁ ସ୍ୱୀକାର କରିବା ହେଉଛି ଏହି କଥାର ପ୍ରମାଣ ।

ହିନ୍ଦୁମାନେ ଯେ କେବଳ ଚାରି ବର୍ଣ୍ଣରେ ବିଭକ୍ତ ଥିଲେ, ତାହା ନୁହେଁ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ପ୍ରତ୍ୟେକ ଶ୍ରେଣୀ ମଧ୍ୟ ଆଉ କେତେକ ଉପ-ଶ୍ରେଣୀରେ ବିଭକ୍ତ ଥିଲେ । ଯେକୌଣସି ଏକ ବର୍ଣ୍ଣର ଉପବିଭାଗମାନଙ୍କରେ ମଧ୍ୟ ଉଚ୍ଚ-ନୀଚ ଭେଦଭାବ ବିସ୍ତାର ଲାଭ କରିଥିଲା । ଏହି ଚାରି ବର୍ଣ୍ଣ ବାଦେ ଚଣ୍ଡାଳ-ମାନଙ୍କର ଆଉ ଏକ ପୃଥକ୍ ଶ୍ରେଣୀ ଥିଲା, ଯେଉଁମାନଙ୍କୁ ସ୍ପର୍ଶ କଲେ ଲୋକ ଅପବିତ୍ର ହୋଇଉଠିବାର ମନୋଭାବ ପ୍ରଚଳିତ ଥିଲା । ଅଧୁନାତନ ହିନ୍ଦୁଭାବାପନ୍ନ ବ୍ୟକ୍ତିମାନେ ଯଦ୍ୟପି ଜାତି-ପ୍ରଥାର ବିରୋଧୀ, ତଥାପି ଏମାନେ ବର୍ଣ୍ଣଭେଦକୁ ଅନୁମୋଦନ କରନ୍ତି; "କିନ୍ତୁ ମାନବ ଆଦୌ ନିରପେକ୍ଷ ନୁହେଁ । ସେ ସମାଜରେ ନିଜର ଚରିତ୍ର,

ଆଚରଣ ଏବଂ କର୍ମ ଅନୁସାରେ କୌଣସି ନା କୌଣସି ସାମାଜିକ ସମଗ୍ରତା ସହିତ ସମ୍ବନ୍ଧିତ ରହିବହିଁ ରହିବ । ଯଦି ସମାଜରେ ଚତୁର୍ବର୍ଣ୍ଣ-ବିଭାଜନକୁ ଈଶ୍ୱରଙ୍କ ବିଧାନ ବା ଆତ୍ମିକ ବ୍ୟବସ୍ଥାରୂପେ ମାନିନିଆଯାଏ, ତେବେ ଏହା ମଧ୍ୟ ମାନିବାକୁ ହେବ ଯେ, ଆତ୍ମିକ ବିବେକ, ସମ୍ପାଦନ-କ୍ଷମତା, ଉତ୍ପାଦନ-କୌଶଳ ଏବଂ ସେବାପରାୟଣତା ଇତ୍ୟାଦି ମଧ୍ୟ ଯେକୌଣସି ସାମାଜିକ ବ୍ୟବସ୍ଥାର ଅପରିହାର୍ଯ୍ୟ ଅଙ୍ଗ ହେବ । ସାମାଜିକ ବ୍ୟବସ୍ଥା ପାଇଁ ଯୋଜନା-ମାନ ପ୍ରସ୍ତୁତ କରିବା ହେଉଛି ବିଶ୍ୱବିଦିତ ବିଦ୍ୱାନ୍‌ମାନଙ୍କର କର୍ତ୍ତବ୍ୟ । ସମାଜର ଶକ୍ତିଶାଳୀ ଅଙ୍ଗ ଏହି ଯୋଜନାଗୁଡ଼ିକୁ ଏପରିଭାବରେ ଅନୁମୋଦନ କରିବ ଯେପରି କି ସେଗୁଡ଼ିକ ନାଗରିକମାନଙ୍କୁ ସବଳ ସ୍ୱାଧିକାର ରୂପରେ ପ୍ରସ୍ତୁତ କରେ, ଦକ୍ଷ ଶିଳ୍ପୀମାନେ ନିଜର ଶିଳ୍ପ ଉତ୍ତମଭାବରେ ସମ୍ପାଦନ କରନ୍ତି ଓ ସେବାଧର୍ମୀ କାରିଗର-ମାନେ ସେଗୁଡ଼ିକୁ ବ୍ୟାବହାରିକ ରୂପ ଦିଅନ୍ତି ।"[୧] ଏହି ଯୁକ୍ତି ଉପରେ ଜୋର ଦିଆହୋଇ ପୁଣି ଲେଖାଯାଇଛି, "ବ୍ୟକ୍ତି ସମାଜକୁ ଉତ୍ପନ୍ନ, କିନ୍ତୁ ସମାଜ ଗୋଟିଏ ଆବଶ୍ୟକୀୟ ଉପାୟ, ଯଦ୍ୱାରା ତାର ବ୍ୟକ୍ତିତ୍ୱର ବିକାଶ ହୋଇପାରେ । ସମାଜରେ ତାର ସ୍ଥାନ ସୁରକ୍ଷିତ ରହିବା ଉଚିତ, କାରଣ ଏଥିରୁ ସେ ତାର ବ୍ୟକ୍ତିତ୍ୱର ବିକାଶପାଇଁ ଆହୁରି ଅଧିକ ସହାୟତା ପାଇପାରେ ଏବଂ ନିଜ ରୁଚି ଅନୁଯାୟୀହିଁ ଗୁଣ ବର୍ଣ୍ଣରେ ଆବଦ୍ଧ ହୋଇଥାଏ; ଯଥା:— ବିଦ୍ୱାନ୍ ଓ ଜ୍ଞାନୀ, କ୍ଷମତାଶାଳୀ ବା କର୍ମନିଷ୍ଠ, ସୁଶିକ୍ଷିତ-ଶିଳ୍ପୀ ଏବଂ ଶ୍ରମିକ । ମନୁଷ୍ୟର କ୍ରିୟାଶୀଳ ରୁଚି ଅନୁଯାୟୀ ଆତ୍ମାର ସୃଷ୍ଟ ହୋଇଥିବା ଅଂଶ, ନିଜେହିଁ ନିଜର ଶ୍ରେଣୀ ନିରୂପଣ କରିନିଏ ।"[୨]

ଯେତେବେଳେ ହିନ୍ଦୁମାନେ ଏ ଦେଶରେ ରାଜତ୍ୱ କରୁଥିଲେ, ସେତେବେଳେ ଏହି ବ୍ୟବସ୍ଥା ସୁଚାରୁରୂପେ ପ୍ରଚଳିତ ଥିଲା ଏବଂ ତଦନୁଯାୟୀ ବ୍ୟକ୍ତି ନିଜର ଚରିତ୍ର, ଆଚରଣ ଏବଂ କର୍ମ ଅନୁସାରେ ଶ୍ରେଣୀ ବାଛି ନେଇପାରୁଥିଲା ଓ ତାକୁ ମଧ୍ୟ ପରିବର୍ତ୍ତନ କରିପାରୁଥିଲା; କିନ୍ତୁ ଯେତେବେଳେ ଜନସଂଖ୍ୟା କ୍ରମଶଃ ବଢ଼ିବାକୁ ଲାଗିଲା ଏବଂ ପ୍ରତ୍ୟେକ ବ୍ୟକ୍ତିପକ୍ଷରେ ଚରିତ୍ର, ଆଚରଣ ଓ କର୍ତ୍ତବ୍ୟ ନିର୍ଦ୍ଧାରଣ ଅସମ୍ଭବ ହୋଇପଡ଼ିଲା, ସେତେ-ବେଳେ ବର୍ଣ୍ଣାନୁଯାୟୀ ଶ୍ରେଣୀବିଭାଗ କରିବା ନିର୍ଣ୍ଣୀତ ହେବାକୁ ଲାଗିଲା । ବ୍ରାହ୍ମଣ-କୁଳଜାତ ବ୍ୟକ୍ତିଠାରେ ବ୍ରାହ୍ମଣର ଆତ୍ମଶୁଦ୍ଧି ଓ କର୍ମନିଷ୍ଠା ଲେଶମାତ୍ର ନ ଥିଲେ ସୁଦ୍ଧା ସେ ବ୍ରାହ୍ମଣ ବୋଲାଇଲା ଏବଂ କାଳକ୍ରମେ ଏହିପରି ଉଚ୍ଚବର୍ଣ୍ଣ ବ୍ୟକ୍ତିମାନେ ନିଜ ନିଜର ଜନ୍ମଗତ ଅଧିକାରଗୁଡ଼ିକୁ ଅଧିକରୁ ଅଧିକ ଦୃଢ଼ କରି ସ୍ୱ ସ୍ୱ କର୍ତ୍ତବ୍ୟକର୍ମ ଭୁଲିବାକୁ ତ ଲାଗିଲେ, ପୁଣି ନିଜର ପଦମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ନିମନ୍ତେ ସେମାନେ ତଥାକଥିତ ପୁନର୍ଜନ୍ମ ମୀମାଂସା ଅନୁଯାୟୀ ଏ ପ୍ରକାର ଯୁକ୍ତି ଉପସ୍ଥାପନ କଲେ ଯେ ପ୍ରତ୍ୟେକ ଆତ୍ମା ସଞ୍ଚିତ ରୁଚି ଓ ଅନୁକୂଳ ଗୁଣ ନେଇହିଁ ଯଥାଯୋଗ୍ୟ ଜାତିରେ ଜନ୍ମଗ୍ରହଣ କରେ । ଏହି କାରଣରୁ ବ୍ୟକ୍ତି ଯେଉଁ ବର୍ଣ୍ଣରେ ଜାତ ହୋଇଥାଏ, ସମାଜଦ୍ୱାରା ନିର୍ଦ୍ଧାରିତ ମର୍ଯ୍ୟାଦାନୁସାରେ କାମ କରି ସେ ସେହି ଶ୍ରେଣୀରେହିଁ ତାର ଆତ୍ମାର ବିକାଶ ସାଧନ କରିପାରେ । କିନ୍ତୁ ସମାଜରେ ଏହି ଯୁକ୍ତିର ଯାଥାର୍ଥ୍ୟ ଆଦୌ ପ୍ରମାଣିତ ହୋଇ ନଥାଏ । କାରଣ, ଏହି ସିଦ୍ଧାନ୍ତ ଅନୁଯାୟୀ ଧରିନେବାର କଥା ଯେ, ବ୍ରାହ୍ମଣକୁଳଜ ପ୍ରତ୍ୟେକ ବ୍ୟକ୍ତି ତ୍ୟାଗଶୀଳ, ବିଦ୍ୟାନୁରାଗୀ ଏବଂ ଜ୍ଞାନୀ ହେବେ ଏବଂ ଶୂଦ୍ରକୁଳରେ କୌଣସି ହେଲେ ଭକ୍ତ ମଧ୍ୟ ଜନ୍ମଗ୍ରହଣ କରିବେ ନାହିଁ,—କିନ୍ତୁ ଘଟଣାଚକ୍ରରେ ଏହାର ପୂର୍ଣ୍ଣ ବିପରୀତ ଫଳ ଦେଖାଯାଉଛି ।

ଏହି ବର୍ଣ୍ଣ-ବିଭାଗଦ୍ୱାରା ହିନ୍ଦୁ ସମାଜରେ ଆଉ ଏକ ଗୁରୁଦୋଷ ମଧ୍ୟ ଲକ୍ଷିତ ହେଲା । ବର୍ଣ୍ଣଧର୍ମାନୁସାରେ କେବଳ କ୍ଷତ୍ରିୟମାନେ ଅସ୍ତ୍ରଶସ୍ତ୍ରଧାରୀ ହୋଇ ରହିଲେ ଏବଂ ସମାଜରେ କାରିଗର ବା ଶ୍ରମିକଙ୍କ

୧. "Eastern Religions and Western Thought" by Prof. Radhakrishanan, II Edition, P. 356.

୨. ଉପରୋକ୍ତ ବହିର ୩୫୭ ପୃଷ୍ଠା

୩. ଉପରୋକ୍ତ ବହିର ୩୬୭ ପୃଷ୍ଠା

ସଂଖ୍ୟା ସୈନିକମାନଙ୍କ ସଂଖ୍ୟା ଅପେକ୍ଷା ଅଧିକ ରହିଲା । ଫଳତଃ ଦେଶରକ୍ଷା ଦାୟିତ୍ୱରେ ଖୁବ୍ କମ୍ ଲୋକ ରହିଲେ । ଏତଦ୍ୱାରା ଏହି ଏକ ମହାନ କୁଫଳ ଘଟିଲା ଯେ "ରାଜଂଶାସନ ଓ ଦେଶରକ୍ଷା କାର୍ଯ୍ୟ ସୀମିତ ହୋଇ ଆସିଲାବେଳକୁ ତେଣେ ଲୋକମାନଙ୍କର ନିଜ ନିଜ ଗୋଷ୍ଠୀର ପରଂପରାଗତ ନିୟମ ଏବଂ ପଦ୍ଧତି ଅନୁସାରେ ହିଁ ନିଜ ନିଜ ଭିତରେ କଳହ ନିଷ୍ପତ୍ତି କରିବାର ସ୍ୱାତନ୍ତ୍ର୍ୟ ଗଢ଼ିଉଠିଲା । ତେଣୁ ଯେତେବେଳେ ପର୍ଯ୍ୟନ୍ତ ସେମାନଙ୍କ ଜୀବନ ନିର୍ବାହରେ କୌଣସି ପ୍ରକାର ହସ୍ତକ୍ଷେପ ନ ହୋଇଛି, ସେତେବେଳେ ପର୍ଯ୍ୟନ୍ତ ଦେଶର ଶାସକ କିଏ— ଏ ବିଷୟରେ ସେମାନଙ୍କର ଚିନ୍ତାର ଅବକାଶହିଁ ରହିଲା ନାହିଁ । ଏକ ରାଜ-ଧ୍ୱଜାକୁ ଲୋକେ ଯେତିକି ସମ୍ମାନ ପ୍ରଦର୍ଶନ କରୁଥିଲେ, ଅନ୍ୟ ଶାସକର ପତାକାକୁ ସେମାନେ ଠିକ୍ ତଦନୁରୂପ ସମ୍ମାନ ପ୍ରଦର୍ଶନ କରୁଥିଲେ । ପରାଧୀନ ଅବସ୍ଥାରେ ମଧ୍ୟ ଲୋକମାନଙ୍କର ଜୀବନ ଯାପନ ପ୍ରଣାଳୀ ପୂର୍ବପରି ଅବ୍ୟାହତ ରହୁଥିଲା । ଏ ପ୍ରକାର ଶିଥିଳ ନୀତିର ପରିଣାମ ଏହି ହେଲା ଯେ ନିଜ ଦେଶ ବୈଦେଶିକ ଆକ୍ରମଣକାରୀଙ୍କର ସହଜ ଶିକାରରେ ପରିଣତ ହେଲା ।"[୧]

ଯେତେବେଳେ ମୁସଲମାନ ଆକ୍ରମଣକାରୀମାନେ ଯୁଦ୍ଧରେ ବିଜୟ ଲାଭ କରି ଭାରତରେ ନିଜର ସାମ୍ରାଜ୍ୟ ସ୍ଥାପନ କଲେ ସେତେବେଳେ ହିନ୍ଦୁମାନଙ୍କ ସମକ୍ଷରେ ଆଉ ଏକ ସମସ୍ୟା ମଧ୍ୟ ଉପସ୍ଥିତ ହେଲା ।

ମୁସଲମାନ ବିଜୟ ହେତୁ ପ୍ରାଚୀନ ଭାରତୀୟ ଅର୍ଥାତ୍ ହିନ୍ଦୁ ଜଗତରେ ଏପରି ଦୁଇଟି ଅଦୃଷ୍ଟପୂର୍ବ ବିଘଟନକାରୀ ଅଂଶ ପ୍ରବେଶ କଲା,— ଯାହାର ଆଦର୍ଶଗତ ପୃଷ୍ଠଭୂମି ଥିଲା କିଛି ସମାନ । ଏମାନଙ୍କ ଭିତରୁ ଦୁଇ ଜାତି ହିଁ ଭାରତୀୟ ଚିନ୍ତାଧାରା ଓ ଜୀବନଯାପନ ପ୍ରଣାଳୀକୁ ବହୁ ପରିମାଣରେ ପ୍ରଭାବିତ କଲା । ଏ ଦୁହେଁ ହେଲେ ଆରବ ଦେଶର ମୁସଲମାନମାନେ ଯିଏ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ସିନ୍ଧୁ ପ୍ରଦେଶ ଜୟ କଲେ ଏବଂ ତୁର୍କୀମାନେ, ଯେଉଁମାନେ କି ଆଫଗାନିସ୍ଥାନଠାରୁ କ୍ରମାଗତ ଲୁଟପାଟ କରି କରି ଶେଷରେ ଦଶମ ଶତାବ୍ଦୀର ମଧ୍ୟଭାଗରେ ରୀତିମତ ଦେଶଜୟାତ୍ମକ ଆକ୍ରମଣ ଆରମ୍ଭ କରିଦେଲେ । ଯାହା ଫଳରେ କି, ବହୁ କାଳଧରି ଭାରତର ଅନ୍ତର୍ଗତ ଥିବା ଆଫଗାନିସ୍ଥାନ, ଭାରତରୁ ଚିରକାଳ ଲାଗି ବିଚ୍ଛିନ୍ନ ହୋଇଗଲା । ଏହି ଲୁଣ୍ଠନକାରୀ ତୁର୍କୀମାନେ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ପଞ୍ଜାବ ପ୍ରଦେଶକୁ ମଧ୍ୟ ଜୟ କରିନେଲେ । ସେହି ସମୟରୁ ପଞ୍ଜାବ ମୁସଲମାନମାନଙ୍କର କର୍ତ୍ତୃତ୍ୱାଧୀନରେ ରହିଲା । ତ୍ରୟୋଦଶ ଶତାବ୍ଦୀ ବେଳକୁ ସେମାନେ ପଶ୍ଚିମବଙ୍ଗ ପର୍ଯ୍ୟନ୍ତ ସମଗ୍ର ଭାରତରେ ନିଜର ଆଧିପତ୍ୟ ବିସ୍ତାର କଲେ ଓ ଦିଲ୍ଲୀକୁ କେନ୍ଦ୍ର କରି ଏହି ବିସ୍ତୃତ ଅଞ୍ଚଳରେ ମୁସଲମାନ ସାମ୍ରାଜ୍ୟ ସ୍ଥାୟୀଭାବରେ ସ୍ଥାପନ କଲେ । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସେମାନଙ୍କର ସାମ୍ରାଜ୍ୟ ଶକ୍ତିଶାଳୀ ଓ ପ୍ରଭାବଶାଳୀ ହୋଇ ରହିଲା । ଆରବ ଓ ତୁର୍କୀ ଏହି ଦୁଇ ଗୋଷ୍ଠୀ ଇସଲାମ ଧର୍ମଗ୍ରହଣ ଯୋଗୁଁ, ସବୁଠାରୁ ଅଧିକ ଶକ୍ତିଶାଳୀ ହୋଇ ଉଠିଥିଲେ ଏବଂ ଏହି ଦୁଇ ଗୋଷ୍ଠୀର ହିନ୍ଦୁଧର୍ମ-ସଂପୃକ୍ତ-ଜ୍ଞାନ ଅତ୍ୟନ୍ତ ଅଳ୍ପ ଓ ଅସ୍ପଷ୍ଟ ଥିବା ହେତୁ, ଭାରତୀୟ ହିନ୍ଦୁ ଭାବନା ଓ ସଂସ୍କୃତି ପ୍ରତି ସେମାନଙ୍କର ଧାରଣା ଥିଲା ଏକାନ୍ତ ଅସହିଷ୍ଣୁ ।

ଈଶ୍ୱରପ୍ରେରିତ ଏହି ଇସଲାମିକ ମିଶନର ଉଦ୍ଦେଶ୍ୟ ଥିଲା, ସମଗ୍ର କାଫେର୍ ହିନ୍ଦୁସ୍ଥାନକୁ ପୈଗମ୍ବର ସାହେବଙ୍କ ପ୍ରଚାରିତ ସତ୍ୟ ଏବଂ ବିଶୁଦ୍ଧ ଧର୍ମର ଅନ୍ତର୍ଭୁକ୍ତ କରାଇନେବା । ଏହିପରି କୃତନିଶ୍ଚୟତା ନେଇହିଁ ମୁସଲମାନ ଧର୍ମ ଭାରତରେ ପ୍ରବେଶ କରିଥିଲା । ଲକ୍ଷ୍ୟ ଥିଲା ଭାରତକୁ ହତ୍ୟା, ଲୁଟ୍‌ପାଟ ଓ ଧ୍ୱଂସ କରି ଦେଇ ନଷ୍ଟଭ୍ରଷ୍ଟ କରାଇବା ଏବଂ ସେହି ଧ୍ୱଂସାବଶେଷ ଉପରେ ଇସ୍‌ଲାମକୁ ଠିଆକରାଇବା । ଇସ୍‌ଲାମ, ଭାରତରେ ଥିବା କୌଣସି ଶୂନ୍ୟ ସ୍ଥାନକୁ ପୂରଣ କରିନାହିଁ । ମୁସଲମାନମାନେ ହିନ୍ଦୁମାନଙ୍କୁ କେବଳ ଜୟ କଲେ ନାହିଁ, ଲୁଣ୍ଠନ ମଧ୍ୟ କଲେ ଏବଂ ସେହି ସୂତ୍ରରେ ପ୍ରାପ୍ତହେଲେ ବହୁ ସମ୍ପଦ । ଈଶ୍ୱରାଦିଷ୍ଟ ବୋଲି ମନେକରିହିଁ

---

୧. ହିନ୍ଦୁସ୍ଥାନୀ ସଂସ୍କୃତି. ପୃ: ୫୪-୫୫

ସେମାନେ କାଫେର ହିନ୍ଦୁ ବିରୁଦ୍ଧରେ ଲଢ଼ୁଥିଲେ ଏବଂ ଏହିପରି ଭାବରେ ସେମାନେ କିଛି ଆଧ୍ୟାତ୍ମିକ ଫଳର ଅଧିକାରୀ ବୋଲି ମଧ୍ୟ ମନେ କରୁଥିଲେ । ମୁସଲମାନ ବିଜେତାଠାରେ ଏହିପରି ଭାବରେ ପାର୍ଥିବ, ଆର୍ଥିକ ଓ ଆଧ୍ୟାତ୍ମିକ ଭାବ ପରସ୍ପର-ଜଡ଼ିତ ହୋଇଗଲେ । ସେମାନେ ତୁର୍କିମାନଙ୍କ ସ୍ୱାଭାବିକ ଅନୁସୃତ ରୀତିରେ ହିଁ ହତ୍ୟା ଓ ଲୁଣ୍ଠପାଟ ଦେଇ ଜୟ ହାସଲ କଲେ ଏବଂ ଭାରତବର୍ଷରେ ସେ ପର୍ଯ୍ୟନ୍ତ-ଅଜ୍ଞାତ-ଥିବା ଜବରଦସ୍ତି-ଧର୍ମାନ୍ତରଣ ପ୍ରଥା ଚାଲୁ କଲେ । ଭାରତୀୟ ସଭ୍ୟତା ଓ ମୁସଲମାନ ଧର୍ମ ଭିତରେ ଏପରି ଭାବରେ ଦେଖାଦେଇଥିବା ଏହି ସଂଘର୍ଷ ଯୋଗୁଁ କିଛି କାଳ ପାଇଁ ଭାରତରେ ଏକ ସଙ୍କଟଜନକ ପରିସ୍ଥିତି ଉପୁଜିଲା ।

ଇସଲାମର ସଂଯୋଗ ହେତୁହିଁ, ଆରବୀ ଓ ତୁର୍କିମାନେ ଯେ ପ୍ରବଳ ଭାବରେ ଶକ୍ତିଶାଳୀ ହୋଇ ଉଠିଥିଲେ, ଐତିହାସିକ ଦୃଷ୍ଟିକୋଣରୁ, ବିଦ୍ୱାନ ଲେଖକମାନେ ମଧ୍ୟ ଏହା ମାନିନେଇଛନ୍ତି । ମୁସଲମାନ ଧର୍ମ ଗ୍ରହଣ ପୂର୍ବରୁ ଆରବୀମାନେ ଭିନ୍ନ ଭିନ୍ନ ଦଳରେ ବିଭକ୍ତ ହୋଇ ରହି ପରସ୍ପର ଦ୍ୱନ୍ଦ୍ୱରେ ମାତିରହିଥିଲେ । ମୁସଲମାନ ଧର୍ମ ପ୍ରଭାବରେ ଆରବବାସୀମାନେ ବିଭିନ୍ନ ମୂର୍ତ୍ତିପୂଜା ଛାଡ଼ି ଏକ ଈଶ୍ୱରଙ୍କୁ ପୂଜା କରିବାକୁ ଏବଂ ପ୍ରତ୍ୟେକ ମନୁଷ୍ୟଙ୍କୁ ଭାଇ ବୋଲି ଭାବିବାକୁ ପ୍ରଥମ କରି ପ୍ରେରଣା ପାଆନ୍ତି, ଆରବବାସୀ ଇତିହାସରେ ପ୍ରଥମ କରି ଏକ ଶକ୍ତିଶାଳୀ ଜାତିରେ ପରିଣତ ହୋଇପାରିଲେ ।

ଅଥଚ ପ୍ରଶ୍ନ ହୋଇପାରେ ଯେ ଯେଉଁ ହିନ୍ଦୁ ସଂସ୍କୃତି ହିମାଳୟଠାରୁ ଆରମ୍ଭ କରି କନ୍ୟାକୁମାରୀ ଏବଂ ଶ୍ରୀ ସୋମନାଥଠାରୁ ଶ୍ରୀ ଜଗନ୍ନାଥ ପୁରୀ ପର୍ଯ୍ୟନ୍ତ ପ୍ରସାରିତ ହୋଇରହିଥିଲା ତାର ମୁକାବିଲା କରିବା ପାଇଁ ଇସ୍‌ଲାମ କାହିଁକି ଶକ୍ତି ପ୍ରଦର୍ଶନ କଲା ନାହିଁ ? ପ୍ରଥମତଃ ମୁସଲମାନ ଆକ୍ରମଣକାରୀମାନଙ୍କଠାରୁ ହିନ୍ଦୁମାନେ ଥିଲେ ଅଧିକ ସଂଖ୍ୟକ । ପୁଣି ଉପନିଷଦ ଇତ୍ୟାଦିରୁ ହିନ୍ଦୁମାନେ ମଧ୍ୟ ଇସ୍‌ଲାମର ଏକେଶ୍ୱର ପରି "ଏକ ବ୍ରହ୍ମ, ଦ୍ୱିତୀୟ ନାସ୍ତି" ଏହି ତତ୍ତ୍ୱ ବହୁପୂର୍ବରୁ ପାଇ ସାରିଥିଲେ; କିନ୍ତୁ ଦୁଃଖର ବିଷୟ ଏହି ଯେ ବକ୍ଷ୍ୟମାଣ କାଳକୁ ଏକ ବ୍ରହ୍ମଙ୍କ ସ୍ଥାନରେ ବହୁ ଦେବଦେବୀ ଓ ଅବତାର କେବଳ ନୁହେଁ, ହିନ୍ଦୁମାନେ ପଶୁ, ସର୍ପ ଏବଂ ବୃକ୍ଷକୁ ମଧ୍ୟ ପୂଜା କରୁଥିଲେ । ହିନ୍ଦୁ ସମାଜ ଅନେକ ଶ୍ରେଣୀ ଓ ଜାତିରେ ଛିନ୍ନ-ବିଚ୍ଛିନ୍ନ ହୋଇ ଯାଇଥିଲା । ଫଳତଃ ମୁସଲମାନମାନଙ୍କପରି ସେମାନେ (ହିନ୍ଦୁମାନେ) ଗୋଟିଏ ଏକକ ଜାତିରେ ପରିଣତ ହୋଇ ପାଦେ ସୁଦ୍ଧା ଅଗ୍ରସର ହୋଇ ପାରିଲେ ନାହିଁ । ଗୁରୁ ନାନକ ଦେବହିଁ ଭାରତୀୟ ସମାଜର ଏହି ଦୁର୍ବଳତାକୁ ପ୍ରଥମକରି ସ୍ପଷ୍ଟ ଅନୁଭବ କରି ପାରିଥିଲେ ।

ଏବପରି, ସେତେବେଳେ ମଧ୍ୟ ଭାରତରେ ଥିବା ଅଧିକାଂଶ ମୁସଲମାନ ବିଦେଶରୁ ସଦ୍ୟ ଭାରତକୁ ଆସି ନଥିଲେ । ସେମାନେ ଏହି ଦେଶର ମାଟିରେ ଜନ୍ମ ଗ୍ରହଣ କରି ଏଠାରେ ହିଁ ଲାଳିତପାଳିତ ହୋଇଥିଲେ ଏବଂ ହିନ୍ଦୁମାନଙ୍କ ସହିତ ସେମାନଙ୍କର ସାମାଜିକ ସମ୍ପର୍କ ଘନିଷ୍ଠ ରହିଥିଲା । ଗୁରୁ ନାନକ ଦେବଙ୍କ ଏ ଲକ୍ଷ୍ୟ କଦାପି ନ ଥିଲା କି ସେମାନଙ୍କୁ ଭାରତରୁ ତଡ଼ି ଦିଆଯାଉ । ବରଂ ସେ ସେମାନଙ୍କୁ ଏ ବିଷୟ ବୁଝାଇବା ପାଇଁ ସଚେଷ୍ଟ ହୋଇଥିଲେ କି "ଜୋ ରଚେ ସହି ଆପଣେ ତିନ୍ ଭାବେ ସଭ କୋଇ ।" ୧ ଯେ ପରମାତ୍ମାଙ୍କୁ ଚିହ୍ନି ପାରିଛି ସେ ସମସ୍ତଙ୍କୁ ଜାଣି ପାରେ । କିନ୍ତୁ ଫଳରୁହିଁ ବୃକ୍ଷର ମୂଲ୍ୟବିଚାର ହୋଇଥାଏ । କୌଣସି ବ୍ୟକ୍ତିର ଧର୍ମ ତାର ନିଜର ଦୈନନ୍ଦିନ ଜୀବନର ବ୍ୟବହାରରୁହିଁ ଜଣାପଡ଼ିଯାଏ । ମୁଁ ଅମୁକ ପିରଙ୍କର ବା ଅବତାର ପ୍ରତି ଆସ୍ଥା ରଖେ—ଏହା କହିଦେଲେ କିଛିହେଲେ ଲାଭ ହେବ ନାହିଁ; ଯଦି ସେହି ମହାପୁରୁଷଙ୍କ ବାଣୀ ଅନୁଯାୟୀ ଆମ୍ଭେମାନେ ସତ୍‌ମାର୍ଗରେ ପରିଚାଳିତ ନ ହେଉ ।

୧. ତିଲଙ୍ଗ, ୨.୧

ଯଦିଓ ମୁସଲମାନମାନେ ଏକ ଈଶ୍ୱରଙ୍କୁ ସମଗ୍ର ଜଗତର ପିତା ବୋଲି ମାନନ୍ତି ଏବଂ କହନ୍ତି ଯେ ସବୁ ମନୁଷ୍ୟ ଭାଇ ଭାଇ ପରି; କିନ୍ତୁ ବାସ୍ତବ କ୍ଷେତ୍ରରେ ମୁସଲମାନ ଆଖିରେ ସେହି କେବଳ ଭ୍ରାତୃପଦବାଚ୍ୟ, ଯେ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇପାରୁଥିଲା । ଫଳରେ ଯେଉଁମାନେ ହିନ୍ଦୁ ଜାତି ମଧ୍ୟରେ ନୀଚ ବୋଲି ବିବେଚିତ ହେଉଥିଲେ ଓ ଯେଉଁମାନଙ୍କୁ ହିନ୍ଦୁସମାଜ ଘୃଣାଚକ୍ଷୁରେ ଦେଖୁଥିଲା, ସେମାନେ ମୁସଲମାନ ଧର୍ମ ପ୍ରତି ଆକୃଷ୍ଟ ହେବାକୁ ଲାଗିଲେ । ସେମାନେ ମୁସଲମାନ ଧର୍ମ ସ୍ୱୀକାର କରି ମୁସଲମାନ ସମାଜ ମଧ୍ୟରେ ସମାନ ଅଧିକାର ପାଇଲେ; ଯଦିବା ଏକଥା ସତ୍ୟ ଯେ ମୁସଲମାନମାନେ ମଧ୍ୟ ପାରସ୍ପରିକ ଗୋଷ୍ଠୀଗତ ଘୃଣ୍ୟ ଭେଦଭାବରୁ ସଂପୂର୍ଣ୍ଣ ମୁକ୍ତ ନୁହନ୍ତି । ବରଂ ସେମାନେ ଭାରତବର୍ଷରେ ପ୍ରବେଶ କରି ନିଜର ଘୃଣ୍ୟ ଭେଦଭାବଦ୍ୱାରା ଏଠାରେ ସେମାନେ ମଧ୍ୟ ଜାତି-ଉପଜାତି-ସମନ୍ୱିତ ହୋଇଉଠିଛନ୍ତି । ବିଶେଷକରି ସମଗ୍ରଭାବରେ ହିନ୍ଦୁ ଓ ମୁସଲମାନ ଏହି ଦୁଇ ସମ୍ପ୍ରଦାୟ ମଧ୍ୟରେ ପ୍ରବଳ ଭିଡ଼ାଓଟରା ଲାଗିବା ଫଳରେ ପରସ୍ପର ପରସ୍ପରଠାରୁ ଦରାବର ଦୂରେଇ ରହିଲେ । ଅଥଚ ଭାରତୀୟ ସମାଜରେ ଯେକୌଣସି ଧର୍ମମତାବଲମ୍ବୀ ହୋଇଥାଆନ୍ତୁ ନା କାହିଁକି ସେମାନେ ନିଜ ନିଜ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର କରନ୍ତୁ—ଏହାହିଁ ଗୁରୁ ନାନକ ଦେବଙ୍କ ପକ୍ଷରେ ମୁଖ୍ୟ ଜଟିଳ ସମସ୍ୟା ଥିଲା । ଏହି କାରଣରୁ ପରମ ତତ୍ତ୍ୱ ସହିତ ସାକ୍ଷାତ୍କାର ହେବା ପରେ ସେ ଯେଉଁ ଆଦ୍ୟ ବଚନ ଉଚ୍ଚାରଣ କରିଥିଲେ, ତାହା ଥିଲା, "କେହି ବି ହିନ୍ଦୁ, ବା ମୁସଲମାନ ନୁହନ୍ତି ।" ଏହାର ଭାବାର୍ଥ ହେଉଛି,—ଯେକୌଣସି ବ୍ୟକ୍ତି ସ୍ୱଇଚ୍ଛାରେ ଯେକୌଣସି ଧର୍ମର ହୋଦା କାନ୍ଧରେ ପକାଉ, ସେଥିରେ କିଛି ଯାଏ ଆସେ ନାହିଁ; କିନ୍ତୁ ଜାଣି ରଖିବା ଉଚିତ ଯେ ସବୁ ମଣିଷ ସମାନ ଅଟନ୍ତି ଏବଂ ସେମାନେ କେବଳ ସ୍ୱ ସ୍ୱ କର୍ମାନୁସାରେ ହିଁ ପରମାତ୍ମାଙ୍କ ସାନ୍ନିଧ୍ୟ ଲାଭ କରିପାରିବେ ବା ତାଙ୍କଠାରୁ ଦୂରେଇଯିବେ । ନାନକ ଦେବ ଲୋକମାନଙ୍କର ଦେଶ, ବଂଶ, ବର୍ଣ୍ଣ ଇତ୍ୟାଦି ଦେଇ ଜାତିଭେଦକୁ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରିଯାଇଛନ୍ତି । ତାଙ୍କର କହିବାର ମୁଖ୍ୟ ତାତ୍ପର୍ଯ୍ୟ ଏହି ଯେ ସାଧାରଣତଃ ମନୁଷ୍ୟ କେବଳ ଦୁଇ ପ୍ରକାରର ଦେଖାଯାନ୍ତି, 'ଗୁରୁମୁଖ' ଓ 'ମନସୁଖ' । ଯେଉଁମାନଙ୍କର ଭଗବାନଙ୍କଠାରେ ଲକ୍ଷ୍ୟ ଥାଏ, ଯେଉଁମାନଙ୍କର ଜୀବନ ସତ୍ୟ ଓ ସେବା-ପରାୟଣତାଦ୍ୱାରା ପରିଚାଳିତ ହୁଏ ଏବଂ ଯେଉଁମାନେ ଏକ ପରମପିତାଙ୍କ ପୁତ୍ର ସଦୃଶ ଅନ୍ୟମାନଙ୍କୁ ମଧ୍ୟ ସ୍ନେହ କରିଥାନ୍ତି, ସେମାନଙ୍କୁ ଗୁରୁମୁଖ ବା ଗୁରୁ-ଦୀକ୍ଷିତ କୁହାଯାଏ । ଯେଉଁମାନେ ସର୍ବଦା ନିଜ ସ୍ୱାର୍ଥ ସାଧନ ପାଇଁ ଚେଷ୍ଟିତ ଏବଂ ଯେଉଁମାନେ ଜାଗତିକ ପଦାର୍ଥ ଓ ନିଜର ସୁଖ ପାଇଁ ମିଥ୍ୟା, ଛଳନା, ଦଗାବାଜି ଓ କପଟତା ଆଦି ଘୃଣ୍ୟ କାର୍ଯ୍ୟ କରିବା ନିମନ୍ତେ ଲେଶମାତ୍ର କୁଣ୍ଠିତ ହୋଇନଥାନ୍ତି, ସେମାନଙ୍କୁ ନାନକଜୀ ମନସୁଖ ବା ସ୍ୱେଚ୍ଛାଗୃହୀ କହିଯାଇଛନ୍ତି । ଏହିପରି ଲୋକମାନେ ବାହାରକୁ ଯେକୌଣସି ଧର୍ମର କେବଳ ବାହ୍ୟ ରୀତିନୀତିଗୁଡ଼ିକ ପାଳନକରି ଚାଲିଥିଲେ ସୁଦ୍ଧା, ଇହଜନ୍ମ ବା ପରଜନ୍ମରେ ଶାନ୍ତି ପାଇପାରିବାର ଆଶା କରି ନ ପାରନ୍ତି ।

ଏହି ତଥ୍ୟକୁ ସିଦ୍ଧ କରିବା ଅଭିପ୍ରାୟରେ ଯେତେବେଳେ ନାନକଜୀ ନିଜର ବିଚାରଧାରାକୁ ସମାଜରେ ପରିପ୍ରକାଶ କଲେ ସେତେବେଳେ ପ୍ରତ୍ୟକ୍ଷ ବ୍ୟାବହାରିକ ଦୃଷ୍ଟାନ୍ତ ଭାବରେ ସେ ଜଣେ ହିନ୍ଦୁ ସହିତ ଅନ୍ୟ ଜଣେ ସାହସୀ ମୁସଲମାନଙ୍କୁ ମଧ୍ୟ ନିଜର ଦୀର୍ଘ ପର୍ଯ୍ୟଟନର ସଙ୍ଗୀ କରିଥିଲେ ଏବଂ ଏହି ଦୁହିଁଙ୍କୁ ହିଁ ସେ 'ଭାଇ' ବୋଲି ସମ୍ବୋଧନ କରୁଥିବା ଜନଶ୍ରୁତିରେ ପ୍ରତିଷ୍ଠିତ । ଯେତେବେଳେ ସୁଲତାନପୁରରୁ ସେ ନିଜରପ୍ରଥମ ଦେଶ-ଭ୍ରମଣ ଆରମ୍ଭ କଲେ, ସେତେବେଳେ ସେ ସୈଦପୁରରେ ଭାଇ ଲାଲଙ୍କ ଗୃହରେ ଅବସ୍ଥାନ କଲେ । ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ-ମାନଙ୍କ ଦୃଷ୍ଟିରେ ଲାଲ ଭାଇ ଥିଲେ ଶୂଦ୍ର । ଲୋକମାନେ ପରସ୍ପର ମଧ୍ୟରେ ଏ ବିଷୟରେ ବହୁତ ଆଲୋଚନା ଓ କଳ୍ପନା-ଜଳ୍ପନା କଲେ । ଅଧିକନ୍ତୁ ସେ ଯେତେବେଳେ ସେହି ନଗରର ଦେବାନଙ୍କ ଘରେ ଆୟୋଜିତ ବ୍ରାହ୍ମଣଭୋଜନରେ ଯୋଗ ଦେଲେ ନାହିଁ, ଏ ପ୍ରକାର କଳ୍ପନା-ଜଳ୍ପନା ଆହୁରି ବଢିଗଲା । ବ୍ରାହ୍ମଣଭୋଜନରେ

ଯୋଗ ନ ଦେବା କାରଣ ପଚରାଯିବାରେ ସେ ଦେବାନ, ମାଲିକ ଭାଗୋଙ୍କୁ ଠୋକ୍‌ଠୋକ୍ କହିଦେଲେ କି ଯେଉଁ ଯେଉଁ ସାମଗ୍ରୀରେ ତାଙ୍କର ଭୋଜନଦ୍ରବ୍ୟ ସବୁ ପ୍ରସ୍ତୁତ କରାହୋଇଥିଲା, ସେ ସବୁ ସଦୁପାର୍ଜିତ ଅର୍ଥରେ କିଣାଯାଇ ନ ଥିଲା; ବରଂ ଲୋକଙ୍କ ଉପରେ ଜୋରଜବରଦସ୍ତି କରି ତାହା ଆଦାୟ କରାଯାଇଥିଲା । ଏହି କାରଣରୁ ଉକ୍ତ ଖାଦ୍ୟ ଦ୍ରବ୍ୟ ପ୍ରସ୍ତୁତ କରିବାରେ ଯଥେଷ୍ଟ ବାହ୍ୟ ଶୁଚିତା ଅବଲମ୍ବିତ ହୋଇଥିଲେ ମଧ୍ୟ ପ୍ରକୃତରେ ତାହା ଥିଲା ଅଶୁଚି । ଏପରି ଅବସ୍ଥାରେ କଠିନ ପରିଶ୍ରମ ଲବ୍ଧ ଥିବା ଯୋଗୁଁ ଲାଲ ଭାଇଙ୍କ ଘରର ନିକୃଷ୍ଟ କୋଦରା-ରୁଟି ଥିଲା ପୂର୍ଣ୍ଣ ପବିତ୍ର ।

ସାଧାରଣତଃ ହିନ୍ଦୁମାନଙ୍କ ମଧ୍ୟରେ ଏ ସିଦ୍ଧାନ୍ତ ବଦ୍ଧମୂଳ ହୋଇଯାଇଥିଲା କି ସାଂସାରିକ ମୋହମାୟାଗ୍ରସ୍ତ ବ୍ୟକ୍ତି କଦାପି ଆତ୍ମିକ ଉନ୍ନତି କରିପାରେ ନାହିଁ । ହୁଏତ ବର୍ଣ୍ଣାଶ୍ରମ-ଧର୍ମ ଉପରେ ଆଧାରିତ ଜୀବନ ବିଭାଜନର ଫଳସ୍ୱରୂପ ଏ ବିଚାରଧାରା ଉତ୍ପନ୍ନ ହୋଇଥିଲା । ବର୍ଣ୍ଣାଶ୍ରମ ଧର୍ମ ଅନୁଯାୟୀ ମାନବ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ ବିଦ୍ୟାଧ୍ୟୟନ କରୁଥିଲା । ଏହାପରେ ସେ ପୁଣି ଗୃହସ୍ଥାଶ୍ରମରେ ପ୍ରବେଶ କରି ଆଉ ପଚିଶ ବର୍ଷ ପର୍ଯ୍ୟନ୍ତ ଗାର୍ହସ୍ଥ୍ୟଧର୍ମ ପାଳନ କରୁଥିଲା । ପଚାଶ ବର୍ଷ ବୟସରେ ପଦାର୍ପଣ କଲାପରେ ବାନପ୍ରସ୍ଥ ଆଶ୍ରମ ଆରମ୍ଭ ହେଉଥିଲା । ଏହି ଅବସ୍ଥାରେ, ଧର୍ମପୁସ୍ତକ-ନିର୍ଦ୍ଦେଶିତ ମାର୍ଗରେ ବିବେଚନା କରି ସତ୍‌ପଥରେ ଜୀବନ ଯାପନ କରିବା ଉଦ୍ଦେଶ୍ୟରେ ତପଃ-ସାଧନାକୁ ଅପରିହାର୍ଯ୍ୟ ବୋଲି ସ୍ୱୀକାର କରାଯାଉ-ଥିଲା । ଶେଷରେ ସନ୍ନ୍ୟାସ ଅର୍ଥାତ୍ ଚତୁର୍ଥାଶ୍ରମରେ ପହଞ୍ଚି ମନୁଷ୍ୟ ଏକପ୍ରକାରର ମୁକ୍ତି ଓ ସ୍ୱତନ୍ତ୍ରତା ପାଉଥିଲା ବୋଲି ମନେ କରାଯାଉଥିଲା ଏବଂ ଏ ଅବସ୍ଥାରେ କେବଳ ଭିକ୍ଷା କରି ଆଧ୍ୟାତ୍ମିକ ଚିନ୍ତନରେ ନିମଜ୍ଜିତ ହେବା ସନ୍ନ୍ୟାସୀର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ଧରିନିଆଯାଉଥିଲା । ଅନ୍ୟମାନଙ୍କୁ ଧର୍ମୋପଦେଶ ଦେବା ଅବଶ୍ୟ ସନ୍ନ୍ୟାସୀର ଅନ୍ୟ ଏକ କର୍ତ୍ତବ୍ୟ ବୋଲି ବିବେଚିତ ହେଉଥିଲା; କିନ୍ତୁ କ୍ରମେ କ୍ରମେ ଚତୁର୍ଥାଶ୍ରମ ପ୍ରବେଶର ବହୁପୂର୍ବରୁ ଅଳ୍ପ ବୟସରୁ ମଧ୍ୟ ଲୋକେ ସନ୍ନ୍ୟାସୀ ହେବାକୁ ଲାଗିଲେ ଏବଂ କାୟିକ ପରିଶ୍ରମ ବିନା କେବଳ ନିଜର ବାହ୍ୟ ବେଶଭୂଷାର ଆଧାର ଉପରେହିଁ ଜୀବନର ଆବଶ୍ୟକତାସମୂହ ମେଣ୍ଟାଇବା ସନ୍ନ୍ୟାସୀ ପକ୍ଷରେ ଶ୍ରେୟସ୍କର ବୋଲି ପ୍ରମାଣିତ ହେବାକୁ ଲାଗିଲା । ଏହିପରି ଭାବରେ ଧୀରେ ଧୀରେ ସେମାନେ ସମାଜ ଉପରେ ଏକ ଆର୍ଥିକ ଭାର ସଦୃଶ ହୋଇଗଲେ । ଏପରିକି ଏମାନଙ୍କର ଦଳସମୂହ ନିଜର ଶାରୀରିକ ପ୍ରତିପୋଷଣ ନିମିତ୍ତ ଅସ୍ତ୍ରଶସ୍ତ୍ର ଧାରଣ କରି ଲୋକମାନଙ୍କଠାରୁ ବଳପୂର୍ବକ ଖାଦ୍ୟପେୟ ସାମଗ୍ରୀ ସଂଗ୍ରହ କରିବାକୁ ଲାଗିଲେ । ତେଣୁ ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ ଭାବରେହିଁ ଗୁରୁ ନାନକ ଦେବ ସୁମେରୁ ପର୍ବତ ଉପରେ ସିଦ୍ଧ-ଯୋଗୀମାନଙ୍କ ଗହଣରେ ଆଲୋଚନା କରୁଥିବା ସମୟରେ ସେମାନଙ୍କୁ କହିଥିଲେ କି, "ସିଦ୍ଧ ପୁରୁଷମାନେ ତ ପର୍ବତଗୁହାରେ ଛପି କରି ରହିଲେ, ତେବେ ଜନତାକୁ ଠିକ୍ ବାଟ ଦେଖାଇବ କିଏ ?"

ନାନକଜୀ ଭାରତବର୍ଷ ଓ ହିନ୍ଦୁ ସମାଜର ଏହିପ୍ରକାର ପରିସ୍ଥିତିକୁ ସମଗ୍ର ଭାବରେ ବିଚାରକୁ ନେଇ, ଧର୍ମାର୍ଜନ ନାମରେ ସନ୍ନ୍ୟାସରୂପକ ସମାଜତ୍ୟାଗର ବରାବର ବିରୋଧୀ ପ୍ରଚାର କରିଚାଲିଥିଲେ । ଲୋକ ଗୃହସ୍ଥ ଜୀବନ ଯାପନ କରି ମଧ୍ୟ ପବିତ୍ର ଓ ସତ୍ୟମୟ ଆଚାର-ବ୍ୟବହାର ଦେଇ ଯେ ଆତ୍ମୋନ୍ନତି କରିପାରିବ ଏହା ସେ ଦୃଢ଼ ଭାବରେ ପ୍ରଚାର କରିଯାଇଛନ୍ତି । ଅବଶ୍ୟ ବହୁପୂର୍ବେ ଶ୍ରୀକୃଷ୍ଣ ଭଗବତ୍ ଗୀତାରେ ସନ୍ନ୍ୟାସ ଅପେକ୍ଷା କର୍ମ-ଯୋଗର ଆଦର୍ଶକୁ ଶ୍ରେଷ୍ଠତର ବୋଲି କହିଯାଇଥିଲେ; କିନ୍ତୁ ସାଧାରଣ ହିନ୍ଦୁ ଜନ-ଚେତନାରେ ସେ ପ୍ରକାର ଯୁକ୍ତିଯୁକ୍ତ ବିଚାର ପ୍ରଚାର ନିଷ୍ଫଳହିଁ ରହିଥିଲା । ପୁଣି ହିନ୍ଦୁ ଧର୍ମରେ 'ଅଧିକାର' ବାଦର ପ୍ରଚାର ହେତୁ ଧର୍ମସାଧନାର ଉତ୍ତମ ପନ୍ଥା ସବୁକୁ ସାଧାରଣ ଲୋକଙ୍କଠାରୁ ଗୁପ୍ତ ରଖାଯାଉଥିଲା । ସାଧାରଣ ଜନତା ବ୍ରାହ୍ମଣମାନଙ୍କର ବାହ୍ୟ କର୍ମ-କାଣ୍ଡ ସବୁରେହିଁ ସନ୍ତୁଷ୍ଟ ରହୁଥିଲେ । ଅଗଣିତ ଦେବଦେବୀ-ପ୍ରତିମାମାନଙ୍କର, ଧୂପ-ଦୀପ-ନୈବେଦ୍ୟ ଦେଇ

ପୂଜାହିଁ ସେମାନଙ୍କ ନିକଟରେ ଥିଲା ପର୍ଯ୍ୟାପ୍ତ ଧର୍ମସାଧନା । ହିନ୍ଦୁ ସମାଜରେ, ସମଗ୍ର ହିନ୍ଦୁ ଜନତାର ଦୁର୍ବଳତା ଓ କୁସଂସ୍କାରବଦ୍ଧ ଦୂରୀଭୂତ କରି ତାକୁ ଏକ ଶକ୍ତିଶାଳୀ ଗୋଷ୍ଠୀରୂପେ ଠିଆକରାଇବା ଦିଗରେ ଚିନ୍ତା କରିବାକୁ ଯୋଗ୍ୟ ନେତା ବି ଦେଖା ନ ଥିଲେ । ମୁସଲମାନମାନଙ୍କୁ 'ମ୍ଳେଚ୍ଛ' ବୋଲି ଘୃଣା କରିବାରୁ ସେମାନଙ୍କ ସହିତ ହିନ୍ଦୁମାନଙ୍କର ପାନ-ଭୋଜନାଦି ସ୍ୱାଭାବିକ ସାମାଜିକ ସମ୍ପର୍କ ନ ଥିଲା; ଅଥଚ ମ୍ଳେଚ୍ଛ ମୁସଲମାନର ଶାସନକୁ ପରିଚାଳିତ କରିବାପାଇଁ ମହନ୍ତ, ମକଦମ, ଦେବାନ ଆଦି ପଦ ପାଇଁ ହିନ୍ଦୁ ଲୋକେ ଆଗଭର ହୋଇଆସୁଥିଲେ । ନାନକଜୀଙ୍କର ଏହି ବାଣୀ-ସଂଗ୍ରହ ଯଦି କେହି ଧ୍ୟାନ ଦେଇ ପଢ଼ନ୍ତି, ତେବେ ତାଙ୍କ ଚିତ୍ତରେ ଏ ପ୍ରକାର ଚିତ୍ର ସ୍ପଷ୍ଟ ଉଦ୍ଭାସିତ ହୋଇଯିବ ବୋଲି ଆଶା ।

ବର୍ତ୍ତମାନ ମୁଁ ଦେଖାଇଦେବାକୁ ଚେଷ୍ଟା କରିବି ଯେ, ନାନକଜୀ ପ୍ରଚଳିତ ସମାଜ ଓ ସଂସ୍କୃତିରେ କି କି ପରିବର୍ତ୍ତନ ଆଣିଲେ; ଯାହା ଫଳରେ ତାଙ୍କ ସ୍ୱପ୍ନାନୁଯାୟୀ ଏକ ଶକ୍ତିଶାଳୀ ସମ୍ପ୍ରଦାୟ ସତ୍ୟରେ ଅଚିରେ ମୁଣ୍ଡଟେକି ଠିଆହୋଇ ପାରିଲା ।

ପ୍ରାୟ ସକଳ ଭାରତୀୟ ଧର୍ମଗ୍ରନ୍ଥ 'ଓଁ' ଏହି ଧ୍ୱନିଦ୍ୱାରା ଆରବ୍ଧ ହୋଇଥାଏ । ବୈୟାକରଣିକମାନେ ଏହାକୁ ଅବ୍ ଧାତୁରୁ ଉତ୍ପନ୍ନ ବୋଲି ଏବଂ ଏହାର 'ରକ୍ଷାକର'—ଏହି ତାତ୍ପର୍ଯ୍ୟ ବୋଲି ଘୋଷଣା କରିଥାନ୍ତି । କିନ୍ତୁ ପ୍ରଫେସର ମାକ୍ସମୁଲରଙ୍କ ମତ ଏହି ଯେ 'ସ୍ୱୀକୃତି'ହିଁ ଓଁ-ଧ୍ୱନିର ଏକମାତ୍ର ତାତ୍ପର୍ଯ୍ୟ; ଅର୍ଥାତ୍ ଆମେ ସାଧାରଣ ଭାଷାରେ ଯେଉଁ ସ୍ୱୀକାରୋଦ୍ୟୋତକ 'ହଁ' ବା 'ହଁା' କହୁ, ବ୍ରାହ୍ମଣ୍ୟ ଓଁର କେବଳ ସେହିହିଁ ଏକମାତ୍ର ଅର୍ଥ । ଅନ୍ୟପକ୍ଷରେ ଯୋଗୀଜନମାନଙ୍କର ଘୋଷଣା ଏହି ଯେ ଓଁ ଧ୍ୱନି, ସୃଷ୍ଟିର ଆଦ୍ୟରେ ନିରଞ୍ଜନଙ୍କଠାରୁ ନିର୍ଗତ ପ୍ରଥମ ଧ୍ୱନି ଏବଂ ଏହା ନିଖିଳ ସୃଷ୍ଟିରେ ପରିବ୍ୟାପ୍ତ । ଆମେ ପଶୁପକ୍ଷୀଙ୍କୁ ଯେପରି ସେମାନଙ୍କର ମୁଖ-ନିଃସୃତ ରବ ଦେଇ ସେମାନଙ୍କୁ ନାମିତ ଓ ଚିହ୍ନିତ କରୁ, ସେହି ପ୍ରାକୃତିକ ଧ୍ୱନି-ପରମ୍ପରା ନେଇ, 'ଓଁ' ହୋଇଉଠିଛି ପରମାତ୍ମାର ପ୍ରତୀକ । ଉପନିଷଦ୍ ଯୁଗରେ ଏହି ଧ୍ୱନିର ଏହି ଅର୍ଥରେ ପ୍ରୟୋଗ, ପରିପକ୍ୱ ହୋଇଉଠିଲା; ଅଥଚ ପରେ, ଏହି ଧ୍ୱନିକୁ ଅ, ଉ, ମ, ଏହିପରି ତିନୋଟି ବିଭିନ୍ନ ଭାବ-ଦ୍ୟୋତକ ଧ୍ୱନିର ମିଶ୍ରଣ ବୋଲି ସ୍ୱୀକାର କରାଗଲା । କେହି କେହି ମଧ୍ୟ କହିଗଲେ ଯେ ଏହି ତିନୋଟି ବିଭିନ୍ନ ଧ୍ୱନି ଆତ୍ମାର ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଏହି ତିନି ଅବସ୍ଥାର ଦ୍ୟୋତକ । କେତେ ଲୋକ ପୁଣି ଏହି ତିନି ଧ୍ୱନିରେ ଦେଖିଲେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ । କିନ୍ତୁ ଗୁରୁ ନାନକ ଓଁ ସହିତ ୧ ଅଙ୍କଟି ମିଶାଇ ତାହା କେବଳ ଏକ ନିରଞ୍ଜନଙ୍କର ଦ୍ୟୋତକ ବୋଲି ଘୋଷଣା କଲେ । କାରଣ, ସେ କହିଲେ ଯେ ନିରଂକାର ପ୍ରଭୁ ଏକ, ଅଦ୍ୱିତୀୟ । ତେଣୁ '୧ ଓଁକାର' ଧ୍ୱନିହିଁ ଯଥାର୍ଥରେ ହେବ, ଏକକ ନିରଂକାରଙ୍କର ଯଥାର୍ଥ ପ୍ରତୀକ । ସେହି ଏକ ହିଁ ଏ ସୃଷ୍ଟିରେ ଏକମାତ୍ର ପୂଜ୍ୟ । ଏହାଦ୍ୱାରା ନାନକଜୀ ଅନ୍ତତଃ ନିଜର ଅନୁଗାମିମାନଙ୍କୁ ବହୁ ଦେବଦେବତା ବା ଉପଦେବତାମାନଙ୍କର ଅଯୌକ୍ତିକ ପୂଜାରାଧନାରୁ ସ୍ୱାଭାବିକ ଭାବରେ ବିରତ କରାଇ ନେଇପାରିଥିଲେ । ତାଙ୍କ ପୂର୍ବରୁ ଯେ ଜଗତସ୍ରଷ୍ଟାଙ୍କର ସତ୍ୟ ରୂପ ଜଣା ନଥିଲା ଏପରି ନୁହେଁ; କିନ୍ତୁ ନାନକଜୀ କେବଳ ତାଙ୍କୁହିଁ ଏକମାତ୍ର "କର୍ତ୍ତାପୁରୁଷ" ବୋଲି ବାରମ୍ବାର ଘୋଷଣା କରି ସକଳ ଶାସ୍ତ୍ର ଭିତରେ ନିଜର ଏହି ମତକୁ ପ୍ରତିଷ୍ଠିତ କରିଯାଇଛନ୍ତି । ଭାରତୀୟ ସାଂଖ୍ୟ-ଦର୍ଶନ ଈଶ୍ୱରଙ୍କର ଅସ୍ତିତ୍ୱହିଁ ସ୍ୱୀକାର କରେ ନାହିଁ । ଯୋଗ-ଦର୍ଶନ ଈଶ୍ୱରଙ୍କୁ ସାମାନ୍ୟ ସ୍ୱୀକୃତି ଦେଲେହେଁ, ପ୍ରକୃତି ଓ ପୁରୁଷଙ୍କୁ ମଧ୍ୟ ଈଶ୍ୱରଙ୍କ ପରି ସ୍ୱୟଂ ଅନାଦି ବୋଲି ଘୋଷଣା କରିଯାଇଛି । ନ୍ୟାୟ-ଦର୍ଶନ ଓ ବୈଶେଷିକ ଦର୍ଶନ ଈଶ୍ୱରଙ୍କୁ ସୃଷ୍ଟିର ଶାସକ ଏବଂ ମନୁଷ୍ୟର ସକଳ କର୍ମର ଫଳଦାତା ବୋଲି ଘୋଷଣା କଲେହେଁ ସେମାନେ ଈଶ୍ୱରଙ୍କୁ ଏହି ସୃଷ୍ଟିର ଉପାଦାନ-କାରଣ ନକହି କେବଳ ନିମିତ୍ତ-କାରଣ ବୋଲି ହିଁ କହିଯାଇଛନ୍ତି । ବୈଶେଷିକ ଦର୍ଶନ

ଅନୁସାରେ ଚିରସ୍ଥାୟୀ ପରମାଣୁହିଁ ଏହି ସୃଷ୍ଟିର ପ୍ରକୃତ ଉପାଦାନ । ଜୈମିନୀ-ସୂତ୍ରରେ ମଧ୍ୟ ଈଶ୍ୱରଙ୍କର ଉଲ୍ଲେଖ ନାହିଁ । ଶଙ୍କର ଜୀବ ଓ ସଂସାରର ଉତ୍ପତ୍ତିପାଇଁ 'ମାୟା'କୁ ଆଣି ଥୋଇଲେ । ପୁଣି-କୁହାଯାଏ ଯେ ସେହି ମାୟା, ସତ୍ୟ ନୁହେଁ କି ଅସତ୍ୟ ନୁହେଁ; ତାହା ସତ୍ୟାସତ୍ୟ ଏବଂ ଅନିର୍ବଚନୀୟ; ଅର୍ଥାତ୍ 'ମାୟା' କ'ଣ, ତାହା କେହି କେବେ ବର୍ଣ୍ଣନା କରିପାରିବେ ନାହିଁ । ମାୟାର ପ୍ରଭାବରେହିଁ ବ୍ରହ୍ମ ସୀମିତ ହୋଇ ଜୀବରେ ପରିଣତ ହୋଇଯାଇଛି । ବ୍ରହ୍ମ କିନ୍ତୁ ଅକର୍ତ୍ତା ଓ ତଟସ୍ଥ । ସେ କେବଳ ଦେଖିଚାଲେ ମାୟାର ଖେଳ ।

କିନ୍ତୁ ଏସବୁର ବିପରୀତରେ ଗୁରୁ ନାନକଜୀଙ୍କର ଦୃଢ଼ ଘୋଷଣା ଏହି ଯେ, ଜୀବ ଓ ସଂସାର ଏକ ନିରଂକାରଙ୍କ ଆଦେଶରେ ହିଁ ଅସ୍ତିତ୍ୱ ପ୍ରାପ୍ତ ହୋଇଛନ୍ତି ।

ଏବଂ ଏହା ସ୍ପଷ୍ଟ ଯେ, ଯିଏ ଏହି ସଂସାରକୁ ପ୍ରକୃତି ବା ମାୟାର କେବଳ ଏକ ଖେଳ ମାତ୍ର ବୋଲି ମନେକରେ ଏବଂ ସେ ତାହାର ଦୈନନ୍ଦିନ କର୍ମକଳାପରେ ଯେ ପର୍ଯ୍ୟନ୍ତ ସେହି ପ୍ରକୃତିର ମାୟାର ଜାଲରୁ ମୁକ୍ତ ନ ହୋଇଛି ସେ ପର୍ଯ୍ୟନ୍ତ ତାଙ୍କର ଆଧ୍ୟାତ୍ମିକ ଉନ୍ନତି ନାହିଁ ବୋଲି ଧରନ୍ତି; ତେବେ ସେ ନିଜ ବାସ୍ତବରେ କ'ଣ, ତାହା ମଧ୍ୟ ସେ ଆଦୌ ଜାଣିପାରିବ ନାହିଁ । ସେ ଲୋକ ସ୍ୱାଭାବିକ ଭାବରେ ସାଂସାରିକ କର୍ମକୁ ମନେ କରିବ କେବଳ ଏକ ଫନ୍ଦାମାତ୍ର ବୋଲି ଏବଂ ମନେ କରିବ ଯେ ସାମାଜିକ-ପାରିବାରିକ କର୍ମତ୍ୟାଗହିଁ ସତ୍ୟଧର୍ମସାଧନା ଲକ୍ଷ୍ୟରେ ପ୍ରଥମ ପଦକ୍ଷେପ । କିନ୍ତୁ ଗୁରୁଜୀ ଘୋଷଣା କଲେ ଯେ ନିଖିଳ ସଂସାରର ଏହି ଜନ୍ମ-ମୃତ୍ୟୁ-ଚକ୍ର କେବଳ ଏକ ନିରଂକାର ପ୍ରଭୁଙ୍କ ଆଦେଶରେହିଁ ଘଟିଚାଲିଛି । ସେହି ଦିବ୍ୟାଦେଶ ସହିତ ପରିଚିତ ହୋଇ ଯେଉଁ ଲୋକ ସେହି ଅନୁସାରେ ତାର ସାଂସାରିକ କର୍ତ୍ତବ୍ୟ ସବୁ କରିଚାଲିବ, ସେହି ଲୋକର ଆତ୍ମା ସମାଜରେ ରହି ମଧ୍ୟ ଉତ୍ତରୋତ୍ତର ବିକାଶୋନ୍ମୁଖୀ ହେବ । ଯେ ଈଶ୍ୱରଙ୍କ 'ହୁକୁମ' ଉତ୍ତମରୂପେ ଅବଗତ ଓ ହୃଦୟଗତ କରିପାରିବେ, ତା'ର ଅହଂଭାବ ଆପେଆପେ ନଷ୍ଟ ହୋଇଯିବ । ଗୁରୁଜୀଙ୍କ ଉପଦେଶର ମର୍ମ ଏହି ଯେ, ନିଷ୍କାମ ଭାବରେ କର୍ତ୍ତବ୍ୟ-କର୍ମ-ସମ୍ପାଦନ କେବଳ ଏକ ଫନ୍ଦା ମାତ୍ର ନହୋଇ, ଆପେ ଆପେ ଏକ ଧର୍ମ ସାଧନାରେ ପରିଣତ ହୋଇଯାଏ । କେବଳ ଏହିପ୍ରକାର ବିଚାରଧାରା ହେତୁହିଁ ସମଗ୍ର ଭାରତବର୍ଷରେ ଶିଖ୍-ସମାଜ ଏକ ପ୍ରଚଣ୍ଡ କ୍ରିୟାଶୀଳ ଗୋଷ୍ଠୀରୂପେ ଠିଆ ହୋଇପାରିଛି ।

ଗୁରୁଜୀଙ୍କର ସେହି ଏକ ପ୍ରଭୁ ନିରଂଜନ, ନିର୍ଭୟ ଓ ନିର୍ବୈର । ତେଣୁ ଯେ କେହି କେବଳ ତାଙ୍କର ପୂଜାରାଧନା କରେ ସେ ମଧ୍ୟ ନିର୍ଭୟ ଓ ନିର୍ବୈର ହୋଇଉଠିବ । ସେହି ପ୍ରଭୁ ମଧ୍ୟ ଅଯୋନି, ଅର୍ଥାତ୍ ସେ କୌଣସି ନାରୀଠାରୁ ଜନ୍ମଗ୍ରହଣ କରିନାହାନ୍ତି । ଏହା ହିନ୍ଦୁମାନଙ୍କର ଅବତାରବାଦକୁ ଖଣ୍ଡନ କରିବା ସାଥେ ସାଥେ, ସେଥିରୁ ଉତ୍ପନ୍ନ ମୂର୍ତ୍ତିପୂଜାର ମଧ୍ୟ ଘୋର ବିରୋଧ ଘୋଷଣା କରେ । ଗୁରୁ ନାନକଜୀଙ୍କର ଈଶ୍ୱର ସ୍ୱୟଂଭୂ ଓ ସ୍ୱୟଂଆଲୋକିତ । ଅନ୍ୟ କେହି ତାଙ୍କୁ ଗଢ଼ିନାହିଁ ।

ଜୀବାତ୍ମା ପରମାତ୍ମାରୁ ଜାତ । ଜୀବ ପରମରହିଁ ଅଂଶ । ତେଣୁ ପରମାତ୍ମାଙ୍କର 'ହୁକୁମ' ମାନି ଚାଲୁଥିବା ବ୍ୟକ୍ତିଠାରେ ହିଁ ପରମାତ୍ମାଙ୍କର ଜ୍ୟୋତି ମଧ୍ୟ ଫୁଟିଉଠିବା ସ୍ୱାଭାବିକ । କିନ୍ତୁ ଜୀବଜ୍ୟୋତି, ପରମାତ୍ମାଙ୍କ ରୂପ ଧାରଣ କଲେ ମଧ୍ୟ ଏହା କେବେହେଲେ ବ୍ରହ୍ମ (ପରମାତ୍ମା)ରେ ପରିଣତ ହୁଏ ନାହିଁ, ଯାହାକି ଏକ ବୈଦାନ୍ତିକ ସ୍ୱୀକାର । ଏକ ଉଦାହରଣ ଦେଇ "ଜପୁଜୀ"ରେ ଗୁରୁଜୀ ଏହାକୁ ଉତ୍ତମରୂପେ ବୁଝାଇ-ଦେଇଛନ୍ତି । ଏ ପୃଥିବୀରେ ଯେତେ ସବୁ ନଦୀ, ନାଳ, ସେଗୁଡ଼ିକ ସମୁଦ୍ର ପର୍ଯ୍ୟନ୍ତ ଯାଇ ସେଠି ମିଶିଯାନ୍ତି; କିନ୍ତୁ କେହି ସମୁଦ୍ରର ସୀମା ଜାଣନ୍ତି ନାହିଁ । ସେହିପରି ଭକ୍ତଜନ ପ୍ରଭୁଙ୍କ ସହିତ ଏକାତ୍ମ ହେଲାପରେ ମଧ୍ୟ ତାଦେଇ ସେ ଈଶ୍ୱରଙ୍କର ବ୍ୟାପ୍ତି ଜାଣିଯାଇଛନ୍ତି ବୋଲି କହିହେବ ନାହିଁ ।

ସକଳ ଭାରତୀୟ ଧର୍ମସାଧନାରେ ଯୋଗୀଋଷିମାନେ 'ଯୋଗ'ର ସାହାଯ୍ୟ ନେବାପାଇଁ ଉପଦେଶ ଦେଇଯାଇଛନ୍ତି; ଯାହାର କି ଶେଷ ପରିଣତି ହେଲା 'ସମାଧି' । ଏହି 'ସମାଧି' ଲାଭପାଇଁ ଉପନିଷଦ୍ କାଳରୁ ନିର୍ଜନ ସ୍ଥାନକୁ ଯାଇ ଅଭ୍ୟାସ କରିବାର ଉପଦେଶ ବା ଆଦେଶ ଦିଆଯାଇଛି । ସ୍ୱାମୀ ବିବେକାନନ୍ଦ ତାଙ୍କର 'ରାଜଯୋଗ'ର ଇଂରାଜୀ ଅନୁବାଦର ପରିଶିଷ୍ଟରେ ଶ୍ୱେତାଶ୍ୱତର ଉପନିଷଦ୍‌ର ଏକ ଶ୍ଳୋକ ଉଦ୍ଧାର କରିଛନ୍ତି; ଯାହାର ଅର୍ଥ ହେଉଛି—

"ପର୍ବତ-ଗୁହା, ଯେଉଁଠି ଭୂମି ସମତଳ, ଗୋଡ଼ି-ମାଟି ନାହିଁ, ଯେଉଁଠି ମନୁଷ୍ୟ ବା ଜଳପ୍ରପାତ କାହାର ବିହ୍ୱଳକାରୀ ଶବ୍ଦ ଶୁଣାଯାଉ ନ ଥିବ, ଯାହା ମନର ଅନୁକୂଳ ଓ ଚକ୍ଷୁକୁ ଆରାମପ୍ରଦ ଭାବରେ ସୁନ୍ଦର, କେବଳ ସେହିପରି ସ୍ଥାନରେହିଁ ଧ୍ୟାନମଗ୍ନ ହୋଇ ମନକୁ ସ୍ଥିର-ନିୟନ୍ତ୍ରିତ କରିବା ଲକ୍ଷ୍ୟରେ ଯୋଗସାଧନା କରିବା ଉଚିତ ।"

ପ୍ରତ୍ୟେକ ବ୍ୟକ୍ତିର ମନର ଦୁଇ ମୁଖ୍ୟ ଅଂଶ ହେଲା—ଧ୍ୟାନ ଓ ସ୍ମରଣ । କୌଣସି ଏକାନ୍ତ ସ୍ଥାନରେ ବସିରହିଲେଇ ତ ମନ ସ୍ଥିର ହୋଇଯାଇଥାଏ । କିନ୍ତୁ ଆମେ ବାହାରେ ନିଷ୍ଠାର ସହିତ କୌଣସି ଏକ କାମରେ ଲାଗିରହିଲେ ମଧ୍ୟ ଆମେ ଦେଖିବା ଯେ କେବଳ ଯେହି ଗଭୀର ସଂକଳ୍ପ ହେତୁହିଁ ଆମ ମନ ସଂପୂର୍ଣ୍ଣ ସ୍ଥିର ହୋଇଯାଇଛି; ଅବଶ୍ୟ କେବଳ ସେହି ଗୋଟିଏ କାମ ପାଇଁ । ଗୁରୁ ନାନକଜୀ ସାଧାରଣ ସାମାଜିକ ମନୁଷ୍ୟ ଉପରେହିଁ ଆଖି ରଖି, ତେଣୁ ଧ୍ୟାନ ପରିବର୍ତ୍ତିରେ 'ସ୍ମରଣ'କୁ ହିଁ ଧର୍ମସାଧନାରୂପ ବ୍ୟବହାର ପାଇଁ ଉପଦେଶ ଦେଇଛନ୍ତି ।

ମନୁଷ୍ୟ ସକଳ କର୍ମର ପ୍ରକୃତ କର୍ତ୍ତା ପରମାତ୍ମାକୁ ଭୁଲିଯାଏ ଏବଂ ସେଇଥିପାଇଁ ହିଁ ସେ ଭୋଗ କରି ଚାଲେ ବହୁବିଧ ଦୁଃଖ । ପରମାତ୍ମା ସର୍ବବ୍ୟାପୀ । ଲୋକ ଯେଉଁ ସମୟ ତକ 'ସ୍ମରଣ' ସାହାଯ୍ୟରେ ନିଜସ୍ୱ ରହି ତାର ଚେତନାରେ ଏହି ତଥ୍ୟକୁ ପ୍ରତିଷ୍ଠିତ କରି ରଖେ, ସେ ସମୟ ଭିତରେ ସେ ତ ଅନ୍ତତଃ ପାପକର୍ମ କରି ନ ପାରେ । ଅନ୍ୟପକ୍ଷରେ, ତାର ଅନ୍ତର ଆଲୋକିତ ହୋଇଉଠିବ ପରମାତ୍ମାଙ୍କ ଜ୍ୟୋତିରେ । ଯୋଗ-ସାଧନର ଆଠଟା ଅଙ୍ଗ । ଗୁରୁ ନାନକ ମଧ୍ୟ ଧର୍ମ-ସାଧନାର ଅଷ୍ଟ ଅଙ୍ଗ ବିବୃତ କରିଛନ୍ତି । ସେଗୁଡ଼ିକ ହେଲେ ଏହିପରି— (୧) ସନ୍ତୋଷ, (୨) ସେବା, (୩) ଗୁରୁବାଣୀପାଠ ଓ ତଦନୁସାରେ ଆଚାର-ନିର୍ମାଣ, (୪) ସତ୍ସଙ୍ଗ, (୫) ନାମକୀର୍ତ୍ତନ, (୬) ସଙ୍ଗୀତ ଦେଇ ନାମ ଶ୍ରବଣ (୭) ନାମ-ଜପ ଓ (୮) ସର୍ବଦା ନାମସ୍ମରଣ ।

କେବଳ ପବିତ୍ର ଚିତ୍ତରେହିଁ, ଭଗବଦ୍-ନାମ, ଅଧିବାସ କରିପାରନ୍ତି । ତେଣୁ ଗୁରୁ ନାନକଜୀ ଯେଉଁ ଧର୍ମ-ଉପଦେଶ ଦେଇଯାଇଛନ୍ତି, ତାହାର ମୂଳକଥା ହେଲା ସଦାଚାର । ହିନ୍ଦୁଧର୍ମର ବାହ୍ୟ ଆଚାର ଓ କର୍ମ-କାଣ୍ଡ ଯାହା ମନକୁ 'ସତ୍ୟ' ଗ୍ରହଣ ସକାଶେ ଉପଯୁକ୍ତ ପ୍ରସ୍ତୁତ କରିଦେଇ ନ ପାରନ୍ତି, ନାନକଜୀଙ୍କ ମତରେ ସେ ସମସ୍ତହିଁ ଧର୍ମ-ସାଧନା ଭାବରେ ସଂପୂର୍ଣ୍ଣ ନିଷ୍ଫଳ ।

ଈଶ୍ୱର ସକଳର ରଚୟିତା । ସମସ୍ତଙ୍କ ଅଭ୍ୟନ୍ତରରେ ତାଙ୍କର ଜ୍ୟୋତିହିଁ ବିଦ୍ୟମାନ ଏବଂ ସେହି କାରଣରୁ ଆମେ ସମସ୍ତେ ସମାନ । ତେଣୁ ସମାଜରେ ଉଚ୍ଚ-ନୀଚ ଅଛୁଆଁ-ଭାବ ଏକାନ୍ତ ଅଯୌକ୍ତିକ । ସେ ହେତୁ ଗୁରୁ ନାନକଙ୍କର ଉପଦେଶ ସର୍ବ ବ୍ୟକ୍ତି ପ୍ରତି ସମାନଭାବରେ ପ୍ରଯୋଜ୍ୟ । କେବଳ ପୁରୁଷଙ୍କ ପାଇଁ ନୁହେଁ; ସମାନ ଭାବରେ ଏହାର ପ୍ରୟୋଗ କରିପାରିବେ ସ୍ତ୍ରୀଲୋକ ମଧ୍ୟ । ବେଦ-ଉପନିଷଦ୍ କାଳରେ ଭାରତୀୟ ସମାଜରେ ସ୍ତ୍ରୀ-ଜନନଙ୍କର ସ୍ଥାନ ଯେ ଉତ୍ତମ ଥିଲା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଗୁରୁଜୀଙ୍କ ସମୟ ବେଳକୁ ସ୍ତ୍ରୀ ଓ ଶୂଦ୍ର ସମାନ ବିବେଚିତ ହେବା ହେତୁ ଉଭୟେ ସଂପୂର୍ଣ୍ଣଭାବରେ ବିଦ୍ୟାବଞ୍ଚିତ ହୋଇ ରଖାଯାଇଥିଲେ । ନାନକଜୀ

କିନ୍ତୁ ଏହାର ପ୍ରବଳ ବିରୋଧ କରିଥିଲେ । ସେ ସମସ୍ତଙ୍କୁ ସ୍ପଷ୍ଟଭାବରେ କହିଲେ ଯେ ତାଙ୍କର ଧର୍ମମାର୍ଗରେ ଚାଲିବାର ଅଧିକାର ସ୍ତ୍ରୀ ଓ ପୁରୁଷ ଉଭୟଙ୍କ ପାଇଁ ସମାନ । ଗୋରଖନାଥ ସ୍ତ୍ରୀମାନଙ୍କ ସଂପର୍କରେ କଠୋର ଶବ୍ଦ ସବୁ ବ୍ୟବହାର କରିଯାଇଛନ୍ତି । ଗୁରୁ ନାନକ ଏଥିରେ କେବଳ ଯେ ତୀବ୍ର ଅସମ୍ମତି ପ୍ରକାଶ କରି ନ ଥିଲେ, ତା ନୁହେଁ; ସେ ବରଂ କହିଯାଇଛନ୍ତି ଯେ, ଯେଉଁ ସ୍ତ୍ରୀ ପୁରୁଷ ଜାତିର ମା', ସେ କିପରି 'ନୀଚ' ବିବେଚିତ ହେବ ?

ଗୁରୁ ନାନକ ଲୋକଙ୍କୁ ଲୋକଭାଷାରେ ହିଁ ଉପଦେଶ ଦେଇ ସେମାନଙ୍କୁ ସନ୍ମାର୍ଗ-ଚଳନରେ ପ୍ରେରଣା ଯୋଗାଉଥିଲେ ଏବଂ ଜାତି-ବାଦ, ବର୍ଣ୍ଣ-ବ୍ୟବସ୍ଥା ଏବଂ ସନ୍ନ୍ୟାସ-ବାଦର ବିରୋଧ କରି ଏବଂ ସମାଜରେ ବହୁକାଳ ହେପରି ରହିଆସିଥିବା 'ନୀଚ' ଜନମାନଙ୍କୁ ଅଭୂତପୂର୍ବ ସମାନତା ଦିଆଇ, ସେ ଏପରି ଏକ ଦୃଢ଼-ଜନଶକ୍ତି-ସମ୍ପନ୍ନ ଗୋଷ୍ଠୀ ଠିଆକରେଇଗଲେ, ଯାହା ତାର ସମଗ୍ର ଇତିହାସରେ ଅନ୍ୟର ଜୁଲମ-ଜବରଦସ୍ତି ଓ ଅତ୍ୟାଚାରକୁ ବିଫଳ କରିବାରେ ସଂପୂର୍ଣ୍ଣ ସଫଳତା ଲାଭ କରିପାରିଛି ।

ନାନକଜୀ ପ୍ରତି ପ୍ରତ୍ୟେକ ଶ୍ରଦ୍ଧାସଂପନ୍ନ ଅନୁଗାମୀଙ୍କୁ ଏହି ଉପଦେଶ ଦେଇଯାଇଛନ୍ତି ଯେ, ସେ ନିଜ ହାତରେ ହିଁ ଅନ୍ୟ ସକଳର ସେବା କରିବେ, ନିଜର କାୟିକ ଶ୍ରମଦ୍ୱାରା ହିଁ ନିଜର ଜୀବିକା ଅର୍ଜନ କରିବେ, ଏବଂ ଦରକାର ପଡ଼ିଲେ ସେ କ୍ଷେତ୍ରରେ ଅନ୍ୟମାନଙ୍କୁ ସହାୟତା କରିବେ । ପ୍ରକୃତ ଧର୍ମ-ସାଧକ, ସତ୍ୟର ରକ୍ଷା ପାଇଁ, ଅତ୍ୟାବଶ୍ୟକ ହେଲେ, କେବେ ହେଲେ ତରବାରି ଉତ୍ତୋଳନ ପାଇଁ ମଧ୍ୟ ଯେପରି ପଛଘୁଞ୍ଚା ନ ଦିଅନ୍ତି କେବଳ ନୁହେଁ, ଏହି ମାର୍ଗରେ ଯିବା ପାଇଁ, ଯେପରି ଅନ୍ୟମାନଙ୍କୁ ହିଁ ଉତ୍ସାହିତ କରନ୍ତି । ଅର୍ଥାତ୍, ନାନକଜୀ ସମାଜର ପ୍ରତ୍ୟେକଟି ବ୍ୟକ୍ତି ଭିତରେ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣର ମିଳନ ଦେଖିବାକୁ ଚାହିଁ-ଥିଲେ । ନାନକଙ୍କ ପୂର୍ବରୁ କବୀର, ରାମାନନ୍ଦ, ଚୈତନ୍ୟାଦି ଧର୍ମକ୍ଷେତ୍ରରେ ଉଚ୍ଚ-ନୀଚ-ଭାବ ଅବଶ୍ୟ ମାନି ନ ଥିଲେ; କିନ୍ତୁ କେହି ତାଙ୍କ ପରି ସମକାଳୀନ ଶାସନ ବିରୁଦ୍ଧରେ ସ୍ପଷ୍ଟଭାବରେ କିଛି କହିନାହାନ୍ତି, ଯଦିଓ 'ଗୁରୁ ଗ୍ରନ୍ଥ ସାହେବ' ଅନ୍ତର୍ଗତ କବୀର ଓ ନାମଦେବଙ୍କ ବାଣୀରୁ ଏହା ସ୍ପଷ୍ଟ ବୁଝାଯାଉଛି ଯେ, ସେମାନଙ୍କ ଉପରେ ରାଷ୍ଟ୍ରୀୟ ଅତ୍ୟାଚାର ସବୁ ଘଟିଥିଲା । ଗୁରୁ ନାନକ କିନ୍ତୁ ସମସାମୟିକ ଶାସନ ଓ ପ୍ରଜାମାନଙ୍କ ପ୍ରତି ଘଟୁଥିବା ଅନ୍ୟାୟ ବ୍ୟବହାର ଇତ୍ୟାଦି ଉପରେ ସ୍ପଷ୍ଟ ଟିପ୍ପଣୀ ଦେଇ ଯାଇଛନ୍ତି । ସେ ସ୍ପଷ୍ଟଭାବରେ ପ୍ରତ୍ୟେକ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ସେହି ଅକୁତୋଭୟତା ଫଳରେ ହିଁ ଭାରତୀୟ ଜନସାଧାରଣ ନିଜର ଶୋଚନୀୟ ଅବସ୍ଥା ପ୍ରତି କେବଳ ସଚେତନ ହେଲେନି କିଛି କାଳ ପରେ, ସେମାନେ ସେହି ଅତ୍ୟାଚାର ସବୁରୁ ଉଦ୍ଧାର ପାଇବା ପାଇଁ ବଦ୍ଧପରିକର ମଧ୍ୟ ହୋଇଉଠିଲେ । ବାବରଙ୍କ ଆକ୍ରମଣ ବିରୁଦ୍ଧରେ ନାନକଜୀଙ୍କର ସ୍ପଷ୍ଟ ବାଣୀ କୌଣସି ସଂକୀର୍ଣ୍ଣ ସାଂପ୍ରଦାୟିକ ଭେଦଭାବରୁ ନ ଆସି, ଆସିଥିଲା ସମଗ୍ର ଦେଶବାସୀଙ୍କ ପ୍ରତି ତାଙ୍କର ତୀବ୍ର ମମତାରୁ । ବସ୍ତୁତଃ ହିନ୍ଦୁ ଓ ମୁସଲମାନ ଏକ, ଏହି ଭାବ, ଅନ୍ୟ ଏକ ଲୋକ କୃଷ୍ଟିରୁଢ଼ିରେ ତାର ବିରୋଧ କରିବାରୁହିଁ; ଏବଂ କେହି କେହି ତାକୁ ସମର୍ଥନ କରିବାରୁହିଁ ହିନ୍ଦୁ-ମୁସଲମାନ ପରସ୍ପରକୁ କଟାକଟି କରିବାରେ ଲାଗିଗଲେ । କିନ୍ତୁ ନାନକ ଯେଉଁ ସମାଜ ଗଢ଼ିଯାଇଛନ୍ତି ସେ ସମାଜର ଦୈନନ୍ଦିନ ପ୍ରାର୍ଥନାର ଏହି ହେଲା ସମାପ୍ତି—

"ନାନକ ନାମ ଚଢ଼ଦୀ କଲା
ତେରେ ଭାଣେ ସରବତ୍ତ୍ ଦା ଭଲା ।"

ଯାହାର ଭାବାର୍ଥ ହେଲା ଏହିକି—'ହେ ପ୍ରଭୁ, ମତେ ନାମରେହିଁ ସର୍ବଦା ଆଶାନ୍ୱିତ ରହିବାର ଆଶୀର୍ବାଦ ଦିଅ ଏବଂ ତମର ଶୁଭେଚ୍ଛା ଏପରି ପ୍ରଭାବଶାଳୀ ହେଉ ଯେପରିକି ତାହା ସମସ୍ତ ସଂସାରର କଲ୍ୟାଣ କରେ ।'

प्रथम भाग

# परा-भौतिक सिद्धान्त

## ईश्वर

१ ओं कार, सतिनाम्, करता-पुरुख, निरभउ, निरवैरु,
अकाल-मूरति, अजूनी, सैभं, गुरुप्रसाद १ ।।

१ । सेइ परमतत्त्व याहार वाचक ओं, से केवल एक, एकाधिक नुहन्ति । से सत्य अर्थात् चिरस्थित । से सृष्टिर जनक ओ तहिँरे परिव्याप्त । से भयहीन । ताङ्कर काहारि सहित हेले शत्रुता नाहिँ । ताङ्कर अस्तित्व कालप्रभावरु सम्पूर्ण मुक्त । ताङ्कर जन्म नाहिँ, कारण से स्वतः-प्रकाशित । से केवल गुरु-कृपा देइहिँ उपलब्ध होइथान्ति । —मूल मन्त्र, जपु ।।

# ଅକାଳ ପୁରୁଷଙ୍କ ଏକତ୍ୱ

: ୧ :

ଦୂଜୀ ମାଇଆ ଜଗତ ଚିତ ବାସୁ ॥ କାମ କ୍ରୋଧ ଅହଙ୍କାର ବିନାସୁ ॥ ୧ ॥
ଦୂଜା କହଣୁ କହା ନହିଁ କୋଈ ॥ ସଭ ମହି ଏକୁ ନିରଞ୍ଜନୁ ସୋଈ ॥ ରହାଉ ॥
ଦୂଜୀ ଦୁରମତି ଆଖୈ ବୋଇ ॥ ଆବୈ ଜାଇ ମରି ଦୂଜା ହୋଇ ॥ ୨ ॥
ଧରଣି ଗଗନ ନହ ଦେଖଉ ଦୋଇ ॥ ନାରୀ ପୁରଖ ସବାଈ ଲୋଇ ॥ ୩ ॥
ରବି ସସି ଦେଖଉ ଦୀପକ ଉଜିଆଲା ॥ ସରବ ନିରନ୍ତରି ପ୍ରୀତମୁ ବାଲା ॥ ୪ ॥
କରି କିରପା ମେରା ଚିତୁ ଲାଇଆ ॥ ସତିଗୁରି ମୋ କଉ ଏକ ବୁଝାଇଆ ॥ ୫ ॥
ଏକୁ ନିରଞ୍ଜନୁ ଗୁରମୁଖି ଜାତା ॥ ଦୂଜା ମାରି ସବଦି ପଛାତା ॥ ୬ ॥
ଏକୋ ହୁକମୁ ବରତୈ ସଭ ଲୋଈ ॥ ଏକସୁ ତେ ସଭ ଓପତି ହୋଈ ॥ ୭ ॥
ରାହ ଦୋବୈ ଖସମୁ ଏକୋ ଜାଣୁ ॥ ଗୁରକୈ ସବଦି ହୁକମୁ ପଛାଣୁ ॥ ୮ ॥
ସଗଲ ରୂପ ବରନ ମନମାହୀ ॥ କହୁ ନାନକ ଏକୋ ସାଲାହୀ ॥ ୯ ॥

ଗଉଡ଼ୀ ଅସଟପଦୀଆ

: ୨ :

ଏକୋ ଏକ କହୈ ସଭୁ କୋଈ ହଉମୈ ଗରବୁ ବିଆପୈ ॥
ଅଂତରି ବାହରି ଏକୁ ପଛାଣୈ ଇଉ ଘରୁ ମହଲୁ ସିଞ୍ଞାପୈ ॥
ପ୍ରଭୁ ନେଡ଼ୈ ହରି ଦୂରି ନ ଜାଣହୁ ଏକୋ ସ୍ରିସଟି ସବାଈ ॥
ଏକଂକାର ଅବରୁ ନହୀଂ ଦୂଜା ନାନକ ଏକ ସମାଈ ॥

ରାମକଲୀ ଦଖଣୀ, ଓଅଂକାର

: ୩ :

ଏକ ଅଚାରୁ ରଂଗ ଇକୁ ରୂପୁ ॥ ପଉଣ ପାଣୀ ଅଗନୀ ଅସରୂପୁ ॥
ଏକୋ ଭବରୁ ଭବୈ ତିହୁ ଲୋଇ ॥ ଏକୋ ବୁଝୈ ସୁଝୈ ପତି ହୋଈ ॥
ଗିଆନୁ ଧିଆନୁ ଲେ ସମସରି ରହୈ ॥ ଗୁରମୁଖି ଏକୁ ବିରଲା କୋ ଲହୈ ॥
ଜିସନୋ ଦେଇ କିରପା ତେ ସୁଖୁ ପାଏ ॥ ଗୁରୂ ଦୁଆରୈ ଆଖି ସୁଣାଏ ॥ ୭ ॥

ରାମକଲୀ ଦଖଣୀ, ଓଅଂକାର

: ୧ :

ଆମ୍ଭମାନଙ୍କ ଚକ୍ଷୁରେ ଦୃଶ୍ୟୀଭୂତ ହୋଇ ରହିଥିବା ଦ୍ୱୈତଭାବ କେବଳ ମାୟାର ପ୍ରତିଛାୟା ବୋଲି ଜାଣିବାକୁ ହେବ । ଏହି ଦ୍ୱୈତଭାବଜନିତ କାମ-କ୍ରୋଧ-ଅହଂକାରାଦି ମନୁଷ୍ୟନ୍ତର ବିନାଶ ଘଟାଇଥାଏ । ହେ ପ୍ରଭୁ ! ତୁମ ବ୍ୟତୀତ ଆଉ ଦ୍ୱିତୀୟ ପୁଣି ଏ ସଂସାରରେ କ'ଣ ଥାଇପାରେ ? କେହି ନାହିଁ; କିଛି ବି ନାହିଁ । ଏ ଜଗତର ସବୁଠି ସେହି ଏକ ତୁମେହିଁ; ଏକ ନିରଞ୍ଜନ । ଯେ ତୁମ ବ୍ୟତୀତ ଆଉ ଦ୍ୱିତୀୟ ପୁଣି କିଛି ବା କେହି ଥିବାର ପ୍ରଚାର କରେ, ସେ ନିଶ୍ଚୟ ଏକ ମୂର୍ଖ । କେବଳ ଜୀବ ଆସୁଛି, ଯାଉଛି ଓ ପୁଣି ଆସୁଛି ଏବଂ ପ୍ରତ୍ୟେକ ଥର ଭିନ୍ନ ଭିନ୍ନ ରୂପରେ ଦେଖାଦେଉଛି । କିନ୍ତୁ ସମଗ୍ର ଏହି ଧରଣୀ ଓ ଆକାଶରେ ମୁଁ ତୁମ ଛଡ଼ା ଆଉ ଦ୍ୱିତୀୟ ବା ଭିନ୍ନ କିଛି ବା କାହାକୁ ହେଲେ ଦେଖିପାରୁନାହିଁ । ସେହିପରି ମଧ୍ୟ ପ୍ରତ୍ୟେକ ନାରୀ ପୁରୁଷଠାରେ ଓ ସର୍ବଲୋକରେ ମଧ୍ୟ ତୁମ ଛଡ଼ା ଦ୍ୱିତୀୟ କେହି ଥିବାର ମୁଁ ଅନୁଭବ କରିପାରୁନାହିଁ । ଆକାଶର ଉଜ୍ଜ୍ୱଳିତ ପ୍ରଦୀପ୍ତ ସୂର୍ଯ୍ୟ ଓ ଚନ୍ଦ୍ରରେ ମଧ୍ୟ ମୁଁ କେବଳ ସେହି ଏକ ପ୍ରିୟତମଙ୍କୁ ହିଁ ଦେଖିଥାଏ । ମୋର ସଦ୍‌ଗୁରୁ ମତେ ବିଶ୍ୱର ସେହି ଏକକଙ୍କୁ ଚିହ୍ନାଇଦେବା ପରଠାରୁ, ମୋର ଚିତ୍ତ ଗୁରୁଙ୍କର ସେହି କୃପା ଯୋଗୁଁ, ସେହି ଏକକଙ୍କଠାରେ ହିଁ ଲାଗିରହିଛି । ସେହି ଗୁରୂପଦେଶ ବଳରେ ମୁଁ କେବଳ ନିରଞ୍ଜନଙ୍କୁ ଜାଣିଲି ନାହିଁ କେବଳ, ମୁଁ ଜାଣିପାରିଛି ମଧ୍ୟ ଶବ୍ଦ-ବ୍ରହ୍ମଙ୍କୁ ଏବଂ ହତ୍ୟା କରିପାରିଛି ନିଜର ଦ୍ୱୈତ-ଭାବକୁ । ମୁଁ ଜାଣିଛି ଯେ ସେହି ଏକକରୁହିଁ ଏହି ସର୍ବଲୋକର ଉତ୍ପତ୍ତି ଏବଂ ତାଙ୍କରି ଆଜ୍ଞା ହିଁ ସର୍ବଲୋକ ମାନି ଚଳନ୍ତି । ମାର୍ଗ ଦୁଇ ବା ବେଶି ଥାଇପାରେ; କିନ୍ତୁ ସ୍ୱାମୀ କେବଳ ଏକ ବୋଲି ଜାଣି ରଖ । ଗୁରୂପଦେଶ ଦେଇ ତାଙ୍କର ଆଜ୍ଞା ସହିତ ପରିଚିତ ହୁଅ । ନାନକର କଥନ ଏହି କି ଯେ, ସଂସାରରେ ଦେଖାଦେଉଥିବା ଭିନ୍ନ ଭିନ୍ନ ରୂପ ଓ ବର୍ଣ୍ଣ କେବଳ ମନୁଷ୍ୟର ମନର ପ୍ରତିଚ୍ଛାୟା । ସମଗ୍ର ବିଶ୍ୱରେ ସ୍ରଷ୍ଟା କେବଳ ଜଣେ । (୨୨୩)

: ୨ :

ସଂସାରରେ 'ସମସ୍ତେ' ଅଛନ୍ତି ବୋଲି କୁହାଗଲେ ହେଁ, ବସ୍ତୁତଃ ଅଛନ୍ତି କେବଳ ଜଣେ । ଭିନ୍ନତା ଯେଣିହିଁ ମନୁଷ୍ୟର ସକଳ ଗର୍ବ ଓ ଅହଙ୍କାର, ସର୍ବତ୍ର ପରିବ୍ୟାପ୍ତ । ଯେତେବେଳେ ତମର ଅନ୍ତର ଓ ବାହାର ଏକ ହୋଇଯିବ, ସେତେବେଳେ ଯାଇ ଜାଣିପାରିବ, ସେହି ଏକକଙ୍କର ଅଧିବାସ କେଉଁଠି । ସେହି ପ୍ରଭୁଙ୍କୁ ଦୂରବର୍ତ୍ତୀ ବୋଲି ଆଦୌ ଭାବ ନାହିଁ । ସେ ସର୍ବଦା ଆମର ଅତ୍ୟନ୍ତ ନିକଟ । ତାଙ୍କର ପରିବ୍ୟାପ୍ତି ହେତୁରୁ ଏହି ସୃଷ୍ଟି ମଧ୍ୟ ବସ୍ତୁତଃ ଏକ । ଏକ-ଓଁକାର ଛଡ଼ା ଏହି ସମଗ୍ର ସୃଷ୍ଟିରେ ଦ୍ୱିତୀୟ ଧ୍ୱନି ନାହିଁ । ନାନକର କଥନ ଏହି ଯେ, ସେହି ଏକରେ ହିଁ ସମସ୍ତ ଅବସ୍ଥିତ । (୭୩୦)

: ୩ :

ଏହି ସୃଷ୍ଟିରେ ନିୟମ ଓ ରଙ୍ଗ ଓ ରୂପ ଆପାତତଃ ଭିନ୍ନ ଦେଖାଗଲେ ହେଁ ବାୟୁ, ଜଳ, ଅଗ୍ନି ଇତ୍ୟାଦି ସମସ୍ତହିଁ କେବଳ ସେହି ଏକକଙ୍କର ସ୍ୱରୂପ । ସେହି ଗୋଟିଏ ଭ୍ରମର ତିନି ଲୋକରେ ଭ୍ରମିବୁଲୁଛି । ଏହି ଏକତ୍ୱହୃଦୟଙ୍ଗମ କରିଥିବା ଲୋକ ସମାଜରେ ସମ୍ମାନିତ ହୋଇଥାନ୍ତି । କିନ୍ତୁ ସେହି ଏକକର ଜ୍ଞାନ ଓ ଧ୍ୟାନରେ ମଜ୍ଜି ରହିଥିବା ଗୁରୁଦୀକ୍ଷିତ ବ୍ୟକ୍ତି ସମାଜରେ ସର୍ବଦା ବିରଳ ଦେଖାଯାନ୍ତି । କେବଳ ଗୁରୁଙ୍କ ଦେଇହିଁ ସେହି ଏକକର ସମ୍ବାଦ ପାଇପାରିବ ଏବଂ ତାଙ୍କର ଯାହା ଉପରେ କୃପା, ସେହି ହିଁ କେବଳ ଏ ସଂସାରରେ ସୁଖୀ ହୋଇଥାଏ । (୯୩୦)

## ଅକାଳ ପୁରୁଷ ସତ୍ୟ (ସର୍ବଦା ବିରାଜମାନ ଥିବା) ଅଟନ୍ତି

: ୪ :

ଅଲହୁ ଅଲଖୁ ଅଗମ କାଦରୁ କରଣ୍ହାରୁ କରୀମୁ ॥
ସଭ ଦୁନୀ ଆବଣ ଜାବଣୀ ମୁକାମୁ ଏକୁ ରହୀମୁ ॥ ୬ ॥
ମୁକାମୁ ତିସନୋ ଆଖୀଐ ଜିସୁ ସିସି ନ ହୋବୀ ଲେଖୁ ॥
ଅସମାନୁ ଧରତୀ ଚଲସୀ ମୁକାମୁ ଓହୀ ଏକୁ ॥ ୭ ॥
ଦିନ ରବି ଚଲେ ନିସି ସସି ଚଲେ ତାରିକା ଲଖ ପଲୋଇ ॥
ମୁକାମୁ ଓହୀ ଏକୁ ହୈ ନାନକା ସଚୁ ବଗୋଇ ॥ ୮ ॥ ୧୭ ॥

ସିରୀ ରାଗୁ, ଅଷ୍ଟପଦୀଆ

: ୫ :

ସଚୁ ପୁରାଣା ହୋବୈ ନାହୀ ସୀତା କଦେ ନ ପାଟୈ ॥
ନାନକ ସାହିବୁ ସଚୋ ସଚୁ ତିଚରୁ ଜାପୀ ଜାପେ ॥ ୧ ॥

ବାର ରାମକଲୀ, ସଲୋକ ୧, ପଉଡ଼ୀ ୯

: ୬ :

ଧଂନୁ ସୁ କାଗଦୁ କଲମ ଧଂନୁ ଧନୁ ଭାଂଡ଼ା ଧନୁ ମସୁ ॥
ଧନୁ ଲେଖାରୀ ନାନକା ଜିନି ନାମୁ ଲିଖାଇଆ ସଚୁ ॥ ୧ ॥

ବାର ମଲାର, ସଲୋକ ୧, ପଉଡ଼ୀ ୨୮

## ସେ ସମସ୍ତଙ୍କର ସୃଷ୍ଟିକାରୀ ଅଟନ୍ତି ଏବଂ ସ୍ୱୟଂ ନିଜ କୃତିରେ ବ୍ୟାପ୍ତ ଅଟନ୍ତି

: ୭ :

ତୂ କରତା ପୁରଖୁ ଅଂଗମୁ ହୈ ଆପି ସ୍ରିସଟି ଉପାତୀ ॥
ରଙ୍ଗ ପରଙ୍ଗ ଉପାରଜନା ବହୁ ବହୁ ବିଧି ଭାତୀ ॥
ତୂଂ ଜାଣହି ଜିନି ଉପାଈଐ ସଭୁ ଖେଲୁ ତୁମାତୀ ॥

ବାର ମାଝ, ପଉଡ଼ୀ ୧

: ୮ :

ତୁଧୁଆ ବ୍ରହ୍ମା ବିସନୁ ମହେସା ॥ ଦେବୀ ଦେବ ଉପାଏ ବେସା ॥
ଜୋତୀ ଜାତୀ ଗଣତ ନ ଆବୈ ॥ ଜିନ ସାଜୀ ସୋ କୀମତି ପାବୈ ॥
କୀମତି ପାଇ ରହିଆ ଭରପୂରି ॥ କିସୁ ନେଡ଼ୈ କିସୁ ଆଖା ଦୂରି ॥ ୪ ॥

ବଲବଲୁ, ଥିତୀ ପଉଡ଼ୀ ୪

: ୪ :

ଆଲ୍ଲା ଅଲେଖ, ଅଜ୍ଞେୟ ଓ ପ୍ରଚ୍ଛନ୍ନ ହେଲେହେଁ, ସେହିଁ ଏକମାତ୍ର କର୍ମକର୍ତ୍ତା । ସମଗ୍ର ସୃଷ୍ଟି ଆସୁଛି ଓ ଯାଉଛି । ଚିର ବର୍ତ୍ତମାନ କେବଳ ଏକମାତ୍ର ସେହି ଈଶ୍ୱର, କାରଣ, ଯାହାଙ୍କ କପାଳରେ ଭାଗ୍ୟଲେଖା ନାହିଁ, ତାଙ୍କୁହିଁ କେବଳ ସ୍ଥାୟୀ କୁହାଯିବ । ଏହି ଧରଣୀ ଓ ଆକାଶ ମଧ୍ୟ ଦିନେ ଲୁପ୍ତ ହେବେ । ଅଥଚ ଅଚଳ ହୋଇ ରହିବେ କେବଳ ସେହି ଏକ । ଦିନରେ ରବି ଓ ରାତିରେ ଚନ୍ଦ୍ର ଦେଖାଦିଅନ୍ତି ଓ ପୁଣି ଚାଲିଯାନ୍ତି । ସେହିପରି ମଧ୍ୟ ଲକ୍ଷ ଲକ୍ଷ ତାରକା । ନାନକ ଏହି ସତ୍ୟ ପ୍ରଚାର କରେ କି, ଅଚଳ କେବଳ ସେହି ଏକକ । (୬୯)

: ୫ :

ସତ୍ୟ କେବେହେଲେ ପୁରାତନ ହୋଇ ଯାଏନା । ତାହା ଏକ ପଥର ଯାହା କେବେହେଲେ ଫାଟିଯାଏ ନାହିଁ । ନାନକର କଥନ ପୁଣି ଏହି କି ଯେ ସବୁଠାରୁ ପରମତମ ସତ୍ୟ ହେଲେ ଈଶ୍ୱର । ତାଙ୍କର ଧ୍ୟାନ କର । ତାଙ୍କୁ ପାଇଲା ପର୍ଯ୍ୟନ୍ତ ତାଙ୍କର ଧ୍ୟାନ କରି ହିଁ ଚାଲ । (୯୫୫-୧୬)

: ୬ :

ନାନକର ଏହି କଥନ ଯେ, ଧନ୍ୟ ସେହି କାଗଜ, ଧନ୍ୟ ସେହି କଲମ ଓ ଧନ୍ୟ ମଧ୍ୟ ସେହି ଲେଖକ, ଯାହାଙ୍କ ଦ୍ୱାରା ଓ ଯେଉଁଠି ତାଙ୍କର ସତ୍ୟ ନାମ ଲିଖିତ ଓ ପ୍ରଚାରିତ ହୁଏ । (୧୧୯୧)

: ୭ :

ତୁମେ ଏହି ବିରାଟ ସମଗ୍ର ସୃଷ୍ଟିର ଏକକ କର୍ତ୍ତାପୁରୁଷ ହେଲେହେଁ, ତୁମେ ସକଳର ଅଜ୍ଞେୟ । ତୁମେ ସ୍ୱୟଂ ଏହି ସୃଷ୍ଟିକୁ ଉତ୍ପନ୍ନ କରିଛ, ଯାହା ବିବିଧ ଉପାୟରେ ସର୍ବଦା ବହୁରୂପା । ସୃଷ୍ଟିର ଏହି ବିବିଧ ପ୍ରକାର ତୁମରି ଦ୍ୱାରାହିଁ ଉତ୍ପନ୍ନ । ତୁମେ ହିଁ କେବଳ ଏ ସମସ୍ତର ରହସ୍ୟ ଜାଣ । ସୃଷ୍ଟି ତଳେ ଥିବା ସବୁଠାରୁ ଏହି ସାରବାନ ଅଭିନୟ କେବଳ ତୁମରି ହିଁ ଖିଆଲ । (୧୩୬)

: ୮ :

ବ୍ରହ୍ମା, ବିଷ୍ଣୁ ଓ ମହେଶ ଏହି ତ୍ରିତୟ ସହିତ ବହୁବେଶଧାରୀ ଦେବୀ ଓ ଦେବମାନଙ୍କୁ ତୁମେ ହିଁ ଉତ୍ପନ୍ନ କରିଛ । ତୁମର ଜ୍ୟୋତିରୁ ଉଦ୍ଭୂତ ଜୀବଶ୍ରେଣୀ ଅଗଣନୀୟ । ଯିଏ ସ୍ରଷ୍ଟା ସେହି ଯିନା ସେମାନଙ୍କର ମୂଲ୍ୟାଙ୍କନ କରିପାରିବ; ଆଉ କିଏ ? ଯିଏ ସେ ପ୍ରକାର ମୂଲ୍ୟାଙ୍କନ କରିପାରେ, ତାକୁ ନିଶ୍ଚୟ ହେବାକୁ ହେବ ସର୍ବବ୍ୟାପକ । ଯେ ସର୍ବବ୍ୟାପ୍ତ, ତାଙ୍କୁ ତେଣୁ କୌଣସି ଲୋକ ପ୍ରତି ସେ ନିକଟ ଏବଂ ଅନ୍ୟ ପ୍ରତି ସେ ଦୂର ବୋଲି ବା କିପରି କହିବ ?

: ୯ :

କରଣକାରଣ ସମରଥୁ ହୈ କହୁ ନାନକ ବିଚାର ॥
କାରଣୁ କରତେ ବସି ହୈ ଜିନି କଲ ରଖୀ ଧାରି ॥ ୨ ॥

ସହସକୃତୀ ସଲୋକ *

## ସେ ସର୍ବ-ବ୍ୟାପକ କିନ୍ତୁ ନିର୍ଲିପ୍ତ ଅଟନ୍ତି

: ୧୦ :

ସହସ ତବ ନୈନ ନନ ନୈନ ହହି ତୋହି କଉ ସହସ ମୂରତି ନନା ଏକ ତୋହୀ ॥
ସହସ ପଦ ବିମଲ ନନ ଏକ ପଦ ଗଂଧ ବିନୁ ସହସ ତବ ଗଂଧ ଇବ ଚଲତ ମୋହୀ ॥ ୨ ॥
ସଭ ମହି ଜୋତି ଜୋତି ହୈ ସୋଇ ॥ ତିସ କୈ ଚାନଣି ସଭ ମହି ଚାନଣୁ ହୋଇ ॥ ୧ ॥ ୭ ॥ ୯ ॥

ଧନାସରୀ

: ୧୧ :

ବଲିହାରୀ କୁଦରତି ବସିଆ ତେରା ଅଂତୁ ନ ଜାଈ ଲଖିଆ ॥ ରହାଉ ॥
ଜାତି ମହି ଜୋତି ଜୋତି ମହି ଜାତା ଅକଲ କଲା ଭରପୂରି ରହିଆ ॥
ତୂଂ ସଚା ସାହିବୁ ସିଫତି ସୁଆଲ୍ହିଉ ଜିନି କୀତୀ ସୋ ପାରି ପଇଆ ॥

ବାର ଆସା, ସଲୋକ ୧, ପଉଡ଼ୀ ୧୨

## ସେ ନିର୍ଭୟ ଏବଂ ଶତ୍ରୁଶୂନ୍ୟ ଅଟନ୍ତି

: ୧୨ :

ଭୈ ବିଚି ପବଣୁ ବହୈ ସଦ ବାଉ ॥ ଭୈ ବିଚି ଚଲହି ଲଖ ଦରୀଆଉ ॥
ଭୈ ବିଚି ଅଗନି କଢୈ ବେଗାରି ॥ ଭୈ ବିଚି ଧରତୀ ଦବୀ ଭାରି ॥
ଭୈ ବିଚି ଇଂଦୁ ଫିରୈ ସିର ଭାରି ॥ ଭୈ ବିଚି ରାଜା ଧରମ ଦୁଆରୁ ॥
ଭୈ ବିଚି ସୂରଜୁ ଭୈ ବିଚି ଚଂଦୁ ॥ କୋହ କରୋଡ଼ୀ ଚଲତ ନ ଅଂତୁ ॥
ଭୈ ବିଚି ସିଧ ବୁଧ ସୁରନାଥ ॥ ଭୈ ବିଚି ଆଡ଼ାଣେ ଆକାସ ॥
ଭୈ ବିଚି ଜୋଧ ମହାବଲ ସୂର ॥ ଭୈ ବିଚି ଆବହି ଜାବହି ପୂର ॥
ସଗଲିଆ ଭଉ ଲିଖିଆ ସିରି ଲେଖୁ ॥ ନାନକ ନିରଭଉ ନିରଂକାରୁ ସଚୁ ଏକୁ ॥
ନାନକ ନିରଭଉ ନିରଂକାରୁ ହୋରି କେତେ ରାମ ରବାଲ ॥
କେତୀଆ କଂନ୍ହ କହାଣୀଆ କେତେ ବେଦ ବୀଚାର ॥

ବାର ଆସା, ସଲୋକ ୧, ୨, ପଉଡ଼ୀ ୪

: ୯ :

ସବୁ କଥା ବିଚାର କରି ନାନକ ଏହାହିଁ କହିବାକୁ ଚାହେଁ ଯେ, ଏ ସୃଷ୍ଟିର ଏକମାତ୍ର କରଣ-କାରଣ କେବଳ ସେହି ଜଣେ । ସେହି ହିଁ ସକଳ କର୍ମ ପଛରେ ଥିବା ଶକ୍ତି । ଜଗତରେ ଦେଖାଯାଉଥିବା ଯେତେ ସବୁ ଘଟଣା ଘଟିଚାଲିଛି, ସେ ସମସ୍ତର କାରଣ ସେହି ଏକକ କର୍ତ୍ତାଙ୍କର ହିଁ ବଶୀଭୂତ । ସେହି ହିଁ ସମ୍ପୃକ୍ତ ଲୋକମାନଙ୍କ-ଠାରେ ସେହି ଆପାତ-କର୍ତ୍ତୃତ୍ୱର କଳା ରଖାଇ ଦେଇଥାନ୍ତି । (୧୫୫୩)

: ୧୦ :

ହେ ପ୍ରଭୁ ! ତମର ଗୋଟିଏ ହେଲେ ଚକ୍ଷୁ ଅଛି ବୋଲି କେହି କହିପାରିବ ନାହିଁ; ଅଥଚ ତୁମେ ସହସ୍ରାକ୍ଷ । ସହସ୍ର ତମର ରୂପ, ଯଦବା ତମେ ଅମୂର୍ତ୍ତି । ତମର ଗୋଟିଏ ହେଲେ ପାଦ ଅଛି ବୋଲି କୁହାଯାଇ ପାରିବ ନାହିଁ; ଅଥଚ କୁହା ମଧ୍ୟ ଯିବ ଯେ, ତମେ ସହସ୍ର-ନିର୍ମଳ-ପାଦ-ଯୁକ୍ତ । ତମେ ଏକାଧାରେ ଗନ୍ଧହୀନ ଓ ସହସ୍ର-ଗନ୍ଧବିଶିଷ୍ଟ । ତମର ଏହି ରହସ୍ୟମୟ ଲୀଳାରେ ମୁଁ ମୁଗ୍ଧ । ଜଗତରେ ଦେଖୁଥିବା ସକଳ ଜ୍ୟୋତି, କେବଳ ଏକ ତୁମରି ଜ୍ୟୋତି । ସେହି ତୁମରି ଆଲୋକରେ ହିଁ ନିଖିଳ ଏହି ବିଶ୍ୱ ଆଲୋକିତ । (୧୩)

: ୧୧ :

ନିଖିଳ ଏହି ପ୍ରକୃତିରେ ତୁମେ ହିଁ ପରିବ୍ୟାପ୍ତ । ତୁମର ଅନ୍ତ କିଏ ଜାଣିପାରିବ ? ଜଗତର ନିଖିଳ ଜୀବଶ୍ରେଣୀ ତୁମରି ଜ୍ୟୋତିରୁ ଜାତ । ସେ ପ୍ରତ୍ୟେକଙ୍କଠାରେ ତୁମରି ଜ୍ୟୋତି ହିଁ ପ୍ରତିଫଳିତ । ତୁମର ଅକଳନୀୟ କଳା ସର୍ବତ୍ର ପରିବ୍ୟାପ୍ତ । ତୁମେହିଁ ଜଗତର ଏକମାତ୍ର ସତ୍ୟ ସ୍ୱାମୀ । ତୁମର ସ୍ତବନ-କର୍ମ ସୁନ୍ଦର ଓ ମଧୁର । ଯେ ଯେ ତୁମର ସ୍ତବନ କରିଛନ୍ତି, ସେ ଭବ-ବନ୍ଧନରୁ ପାର ହୋଇପାରିଛନ୍ତି । (୪୬୯)

: ୧୨ :

ହେ ପ୍ରଭୁ ! ତୁମରି ଭୟରେହିଁ ପବନ ସଦା ବହମାନ ଓ ଲକ୍ଷ ସମୁଦ୍ର ସଦା ଚଞ୍ଚଳ । ତୁମରି ଭୟରେ ହିଁ ଅଗ୍ନି ସେବା-ତତ୍ପର । ତୁମରି ଭୟରେ ହିଁ ଏହି ଧରିତ୍ରୀ ଆମ୍ଭମାନଙ୍କର ଭାରରେ ମଧ୍ୟ ବିନୀତ ହୋଇ ଦବିଯାଉଛି । ସେହି ଭୟରେ ଦେବରାଜ ଇନ୍ଦ୍ର ମଧ୍ୟ ମୁଣ୍ଡରେ ବୋଝ ନେଇ ଚିର ଭ୍ରମିତ ଓ ଚନ୍ଦ୍ର ସୂର୍ଯ୍ୟ ଗତାଗତ ହୋଇ ଚାଲିଛନ୍ତି ଅହୋରାତ୍ର । ଏମାନେ କୋଟି କୋଟି କୋଶ ଅଶ୍ରାନ୍ତ ଭାବରେ ଚାଲିଲା ପରେ ମଧ୍ୟ, ଏମାନଙ୍କର ଭ୍ରମଣର ଅନ୍ତ ନାହିଁ । ସିଦ୍ଧ, ବୁଦ୍ଧ, ସୁର ଓ ନାଥମାନେ ମଧ୍ୟ ତୁମକୁ ସର୍ବଦା ଭୟ କରି ଚାଲିଥାନ୍ତି । ସେହି ଭୟରେହିଁ ଏହି ଆକାଶ ଆମ ଉପରେ ସର୍ବଦା ଠିଆ ହୋଇ ରହିଛି । ପୃଥିବୀର ମହାବଳୀ ଯୋଦ୍ଧା ମଧ୍ୟ ତୁମକୁ ଭୟ କରେ । ଭୟରେ ବ୍ରହ୍ମାଣ୍ଡସବୁ ଆସୁଛନ୍ତି ଓ ଯାଉଛନ୍ତି । ଏ ସୃଷ୍ଟିରେ ସମସ୍ତଙ୍କ କପାଳରେ ତୁମ ପ୍ରତି ଭୟର ରେଖା ଅଙ୍କିତ ରହିଛି । ନାନକ ତେଣୁ ଏହାହିଁ କହିବାକୁ ଚାହେଁ ଯେ, ଏହି ନିଖିଳ ସୃଷ୍ଟିରେ ନିର୍ଭୟ, ନିରହଙ୍କାର ଓ ସତ୍ୟ କେବଳ ଜଣେ ଏବଂ ସେହି ଏକକଙ୍କର ଚରଣଧୂଳିରେ କେତେ ରାମ, କେତେ କୃଷ୍ଣ ଓ କେତେ କୃଷ୍ଣଲୀଳା । କେତେ ବା ବେଦ ଓ ଦର୍ଶନ । (୪୬୪)

: ୧୩ :

ଜୁଗି ଜୁଗି ଆପି ସଦା ନିରବୈରୁ ॥
ଜନମି ମରଣି ନହୀଂ ଧଂଧା ଧୈରୁ ॥

ରାମକଲୀ ଦଖଣୀ, ଓଅଁକାର ପଉଡ଼ୀ ୧୫

## ଏହାଙ୍କ ଅସ୍ତିତ୍ୱ କାଳ-ରହିତ

: ୧୪ :

ଜଗୁ ତପ କା ଗୁଇଆ ଜିସୁ ବାପୁ ନ ମାଇଆ ॥
ନା ତିସୁ ଭୈଣ ନ ଭରାଉ କମାଇଆ ॥
ନା ତିସୁ ଓପତି ଖପତି କୁଲ ଜାତି ଓହୁ ଅଜରାବରୁ ମନି ଭାଇଆ ॥ ୨ ॥
ତୂ ଅକାଲ ପୁରଖୁ ନାହୀ ସିରି କାଲୁ ॥
ତୂ ପୁରଖୁ ଅଗମ ଅଲେଖ ନିରାଲୁ ॥
ସତ ସନ୍ତୋଖି ସବଦି ଅତି ସୀତଲୁ ସହଜ ଭାଇ ଲିବ ଲାଇଆ ॥ ୩ ॥

ମାରୂ ସୋଲହେ

## ସେ ଅଜନ୍ମା

: ୧୫ :

ଅଲଖ ଅପାର ଅଗମ ଅଗୋଚର ନା ତିସୁ କାଲୁ ନ କରମା ॥
ଜାତି ଅଜାତି ଅଜୋନୀ ସଂଭଉ ନା ତିସୁ ଭାଉ ନା ଭରମା ॥ ୧ ॥
ସାଚେ ସଚିଆର ବିଟହୁ କୁରବାଣୁ ॥
ନା ତିସୁ ରୂପ ବରନୁ ନହୀ ରେଖିଆ ସାଚେ ସବଦି ନୀସାଣୁ ॥ ରହାଉ ॥
ନା ତିସୁ ମାତ ପିତା ସୁତ ବନ୍ଧପ ନା ତିସୁ କାମୁ ନ ନାରୀ ॥
ଅକୁଲ ନିରଞ୍ଜନ ଅପର ପରଂପରୁ ସଗଲୀ ଜୋତି ତୁମାରୀ ॥ ୨ ॥

ସୋରଠି

: ୧୬ :

ନ ତିସୁ ବାପୁ ନ ମାଇ କିନି ତୂ ଜାଇଆ ॥
ନା ତିସୁ ରୂପୁ ନ ରେଖ ବରନ ସବାଇଆ ॥
ନା ତିସୁ ଭୁଖ ପିଆସ ରଜା ଧାଇଆ ॥

ବାର ମଲାର ପଉଡ଼ୀ ୨

: ୧୩ :

ସେହି ପ୍ରଭୁ ଯୁଗ-ଯୁଗ ଧରି ଏହି ବିପୁଳ ସୃଷ୍ଟିର ସ୍ଥାପନକର୍ତ୍ତା ହେଲେହେଁ ସେ ସମ୍ପୂର୍ଣ୍ଣ ବୈରଶୂନ୍ୟ । ସେ ଜନ୍ମ-ମୃତ୍ୟୁର କର୍ତ୍ତା ହୋଇ ମଧ୍ୟ ଜନ୍ମ-ମରଣରୁ ନିଜେ ସମ୍ପୂର୍ଣ୍ଣ ମୁକ୍ତ । ନିଖିଳ ଜଗତର ସ୍ରଷ୍ଟା ହୋଇ ମଧ୍ୟ ସେ ସମ୍ପୂର୍ଣ୍ଣ ଧନାଶୂନ୍ୟ ।

( ୯୩୧ )

: ୧୪ :

ସେ ନିଜେ ପିତାମାତା ବା ଭ୍ରାତାଭଗ୍ନୀଶୂନ୍ୟ । ଏ ଜଗତ୍ ତାଙ୍କର ସୃଷ୍ଟି ମାତ୍ର । ତାଙ୍କର ଜନ୍ମ ନାହିଁ ଓ ମରଣ ନାହିଁ; ସେ କୌଣସି ଶ୍ରେଣୀଗତ ନୁହନ୍ତି । ସେ ଅଜର, ଅମର ଓ ଚିର ପ୍ରୀତିକର । ହେ ଅକାଳପୁରୁଷ । ଏ ସୃଷ୍ଟିରେ ତୁମେହିଁ ଏକମାତ୍ର ବ୍ୟକ୍ତିତ୍ୱ ଯାହାର ମସ୍ତକୋପରି କାଳର ଗ୍ରାସ ନାହିଁ । ତମେ ଅଲେଖ, ଅଗମ୍ୟ ଓ ଏକକ । ସତ୍ ସନ୍ତୋଷ ଶବ୍ଦ ଅତି ଶୀତଳ । ଶବ୍ଦବ୍ରହ୍ମ ଦେଇହିଁ ସହଜଭାବରେ ତୁମଠାରେ ଚିତ୍ତକୁ ଲଗ୍ନ କରାଯାଇପାରେ ।

( ୧୦୩୮ )

: ୧୫ :

ସେହି ପ୍ରଭୁ ଅଲେଖ, ଅପାର, ଅଗମ୍ୟ ଓ ଅଗୋଚର । ସେ କାଳରହିତ ଓ କର୍ମରହିତ । ସେ ଅଜାତ, ଅଯୋନିଜ ଓ ସ୍ୱୟମ୍ଭୂ । ସେ ମଧ୍ୟ ଭାବଶୂନ୍ୟ ଓ ଭ୍ରମଣଶୂନ୍ୟ । କେବଳ ସେହି ଚିରସତ୍ୟ ପାଇଁ ଉତ୍ସର୍ଗୀକୃତ ହୁଅ । ତାଙ୍କର କୌଣସି ରୂପ, ବର୍ଣ୍ଣ ବା ଏପରିକି ରେଖା ମଧ୍ୟ ନାହିଁ । କେବଳ ସତ୍ୟ-ଶବ୍ଦ ଦ୍ୱାରାହିଁ ତାଙ୍କର ପରିଚୟ ମିଳେ । ତାଙ୍କର ପିତା, ମାତା ବା ସ୍ତ୍ରୀ ପୁତ୍ର ବୋଲି କେହି ନାହିଁ; ସେ ଅକୁଳ, ନିରଞ୍ଜନ ଓ ଅପରମ୍ପର । ହେ ପ୍ରଭୁ ! ଏହି ନିଖିଳ ସଂସାର କେବଳ ତୁମର ପ୍ରକାଶ ମାତ୍ର ।

( ୫୯୭ )

: ୧୬ :

ସେ କେଉଁ ପିତାମାତାଠାରୁ ଜାତ ବୋଲି କୁହାଯିବ ? ସେ ରୂପରେଖଶୂନ୍ୟ ହେଲେହେଁ, ଏ ଜଗତରେ ଦୃଶ୍ୟମାନ ସକଳ ବର୍ଣ୍ଣ ତାଙ୍କର ବୋଲି ହିଁ କହିବାକୁ ହେବ । ସେ କ୍ଷୁଧାପିପାସାହୀନ; ଅଥଚ ସେ ସର୍ବଦା ପୂର୍ଣ୍ଣ ଭୋଜନର ସନ୍ତୋଷ ଲାଭ କରୁଛନ୍ତି ବୋଲି କହିବାକୁ ହେବ ।

( ୧୨୭୧ )

## ସେ ସ୍ୱୟଂଭୂ

: ୧୭ :

ଆପୀନ୍ହୈ ଆପୁ ସାଜଓ ଅପୀନ୍ହୈ ରଚଓ ନାଉ ॥
ଦୁଯୀ କୁଦରତ ସାଜୀଏ କର ଆସଣୁ ଡଠୋ ଚାଉ ॥
ଦାତା କରତା ଆପି ତୂଂ ତୁସି ଦେବହି କରହି ପସାଉ ॥

ବାର ଆସା, ପଉଡ଼ୀ ୧

## ସେ ଚିତ୍-ସ୍ୱରୂପ

: ୧୮ :

ପଢେ ପାତସାହୁ ପରମେସରୁ ଵେଖଣ କଉ ପରପଞ୍ଚୁ କୀଆ ॥
ଦେଖୈ ବୂଝୈ ସଭ କିଛୁ ଜାଣୈ ଅନ୍ତରି ବାହରି ରବି ରହିଆ ॥ ୨୪ ॥

ଆସା ପଟୀ

## ୧

## କେହି ତାଙ୍କର ପାର କରିପାରିବ ନାହିଁ

: ୧୯ :

ତୂଂ ଦରୀଆଉ ଦାନା ବୀନା ମୈ ମଛୁଲୀ କୈସେ ଅନ୍ତୁ ଲହା ॥
ଜହ ଜହ ଦେଖା ତହ ତହ ତୂ ହୈ ତୁଝ ତେ ନିକସୀ ଫୂଟି ମରା ॥
ନ ଜାଣା ମେଉ ନ ଜାଣା ଜାଲୀ ॥ ଜା ଦୁଖୁ ଲାଗୈ ତା ତୁଝୈ ସମାଲୀ ॥ ୧ ॥ ୩୧ ॥ ରହାଉ ॥

ସିରୀ ରାଗୁ

: ୨୦ :

ସାଲାହୀ ସାଲାହି ଏତୀ ସୁରତି ନ ପାଇଆ ॥
ନଦୀଆ ଅତୈ ବାହ ପଵହି ସମୁନ୍ଦି ନ ଜାଣୀଅହି ॥
ସମୁନ୍ଦ ସାହ ସୁଲତାନ ଗିରହା ସେତୀ ମାଲୁ ଧନୁ ॥
କୀଡ଼ୀ ତୁଲି ନ ହୋବନୀ ଜେ ତିସୁ ମନହୁ ନ ବୀସରହି ॥ ୨୩ ॥

ଜପୁ ପଉଡ଼ୀ ୨୩

: ୧୭ :

ସେ ଆତ୍ମସୃଜିତ ଓ ସେହିହିଁ ନାମର ରଚକ । ସେହିହିଁ ପ୍ରକୃତିର ସ୍ରଷ୍ଟା । ସେ ପ୍ରକୃତିରେ ହିଁ ଅଧିଷ୍ଠିତ ରହି ଚତ୍ପ୍ରେ ସବୁ ଦେଖୁଛନ୍ତି । ହେ ପ୍ରଭୁ ! ତୁମେ ହିଁ ଏକମାତ୍ର ଦାତା ଓ କର୍ତ୍ତା । ତୁମେ ହିଁ ନିଜ ସନ୍ତୋଷରେ ସମସ୍ତଙ୍କୁ କୃପାଦାନ କରି ଚାଲିଛ ।

( ୪୬୩ )

: ୧୮ :

ତାଙ୍କର ଦୃଷ୍ଟି-ସୁଖ ପାଇଁହିଁ ଏହି ଜଗତ୍-ପ୍ରପଞ୍ଚ ରଚିତ ହୋଇ ଯାଇଛି । ସେ ପରମପିତା ଓ ପରମେଶ୍ୱର । ସେ ସମସ୍ତ ଦେଖୁଛନ୍ତି, ବୁଝୁଛନ୍ତି ଓ ଜାଣୁଛନ୍ତି । ସେହିହିଁ ଆମ ସମସ୍ତଙ୍କର ଅନ୍ତର ଓ ବାହାର ପରିବ୍ୟାପ୍ତ ।

( ୪୩୩ )

: ୧୯ :

ହେ ପ୍ରଭୁ ! ତୁ ବିରାଟ ସମୁଦ୍ର । ତୁ ସବୁ କିଛି ଦେଖୁଛୁ, ଜାଣୁଛୁ । ମୁଁ ତ ଏକ ସାମାନ୍ୟ ମୀନ । ମୁଁ କିପରି ତୋର କୂଳ ଜାଣିପାରିବି ? ମୁଁ ଯେଉଁଆଡ଼େ ଚାହେଁ, ଦେଖେ କେବଳ ତୁମ୍ଭଙ୍କୁ । ତୁମଠୁ ଅଲଗା ହୋଇଗଲେ ମୁଁ ଫୁଟି ମରିଯିବି । ମୁଁ କିପରି ଜାଣିବି କିଏ କେଉଁଠି ଓ କିସ ତାର ଜାଲ । କେବଳ, ହେ ପ୍ରଭୁ, ଦୁଃଖ-ଯାତନା ବେଳେ ତୁମକୁ ମନେ ମନେ ଡାକେ ।

( ୨୫ )

: ୨୦ :

ସ୍ତୁତିକାରୀ ତୋର ସ୍ତୁତି କରୁଛି, ତେବେ ସୁଦ୍ଧା ସେ ତୋର ସୀମା ଜାଣିଛି ବୋଲି କହି ହେବ କି ? ଯଦିଓ ନଦୀ-ନାଳ-ସବୁ ସମୁଦ୍ରରେ ପଡ଼ନ୍ତି, କିନ୍ତୁ ପାରାବାରର ପାର ସେମାନେ ଜାଣିବେ ବା କିପରି ? ସାଗରପତି ଧନୀ ଓ ସୁଲତାନ ତାଙ୍କ ପାଖରେ ଏକ ଏକ କୀଟ ମାତ୍ର । ଯାହାଙ୍କ ଚିତ୍ତରୁ ଏପରି ପ୍ରଭୁ କେତେବେଳେ ହେଲେ ବିସ୍ମୃତ ହୋଇ ନ ଯାନ୍ତି, ଏମାନେ ସେପରି ଭକ୍ତର ତୁଲ୍ୟ ନୁହନ୍ତି ।

( ୫ )

# ଜଗତ୍ ଉତ୍ପତ୍ତି

ହୁକମୀ ହୋବନ ଆକାର, ହୁକମୁ ନ କହିଆ ଜାଈ ।
ହୁକମୀ ହୋବନ ଜୀଅ, ହୁକମି ମିଲୈ ବଡ଼ିଆଈ ॥ ୧

ଜପୁ ପଉଡ଼ୀ ୨

୧ । ତାଙ୍କର ଆଜ୍ଞାରେ ହିଁ ଏ ଜଗତରେ ଦେଖାଯାଉଥିବା ସକଳ ଆକାରର ଆବିର୍ଭାବ, ଯଦିବା ସେହି ଆଜ୍ଞାର ଉଚ୍ଚାରଣ କେହି ଶୁଣି ପାରନ୍ତି ନାହିଁ । ସକଳ ଜୀବର ଉତ୍ପତ୍ତି ସେହି ଆଜ୍ଞାବଳରେ । ଜୀବ-ମାନଙ୍କର ଯାହାକିଛି ମହିମା ତା' ମଧ୍ୟ କେବଳ ତାଙ୍କର ଆଜ୍ଞାରେ ହିଁ ଘଟିଥାଏ ।

: ୨୧ :

ଅରବଦ ନରବଦ ଧୁଂଧୂକାରା ॥ ଧରଣି ନ ଗଗନା ହୁକମୁ ଅପାରା ॥
ନା ଦିନୁ ରୈନି ନ ଚନ୍ଦୁ ନ ସୂରଜୁ ସୁଁନ ସମାଧି ଲଗାଇଦା ॥ ୧ ॥

ଖାଣୀ ନ ବାଣୀ ପଉଣ ନ ପାଣୀ ॥ ଓପତି ଖପତି ନ ଆବଣ ଜାଣୀ ॥
ଖଣ୍ଡ ପତାଲ ସପତ ନହୀଁ ସାଗର ନଦୀ ନ ନୀରୁ ବହାଇଦା ॥ ୨ ॥

ନା ତଦି ସୁରଗୁ ମଛୁ ପଇଆଲା ॥ ଦୋଜକୁ ଭିସତୁ ନହୀଁ ଖୈ କାଲା ॥
ନରକୁ ସୁରଗୁ ନହୀଁ ଜମଣୁ ମରଣା ନା କୋ ଆଇ ନ ଜାଇଦା ॥ ୩ ॥

ବ୍ରହମା ବିସନୁ ମହେସୁ ନ କୋଈ ॥ ଅବରୁ ନ ଦୀସୈ ଏକୋ ସୋଈ ॥
ନାରି ପୁରଖୁ ନହୀଁ ଜାତି ନ ଜନମା ନା କୋ ଦୁଖୁ ସୁଖୁ ପାଇଦା ॥ ୪ ॥

ନା ତଦି ଜତୀ ସତୀ ବନବାସୀ ॥ ନା ତଦି ସିଧ ସାଧିକ ସୁଖବାସୀ ॥
ଜୋଗୀ ଜଙ୍ଗମ ଭେଖୁ ନ କୋଈ ନା କୋ ନାଥୁ କହାଇଦା ॥ ୫ ॥

ଜପ ତପ ସଞ୍ଜମ ନା ବ୍ରତ ପୂଜା ॥ ନା କୋ ଆଖି ବଖାଣୈ ଦୂଜା ॥
ଆପେ ଆପି ଉପାଇ ବିଗସୈ ଆପେ କୀମତି ପାଇଦା ॥ ୬ ॥

ନା ସୁଚି ସଞ୍ଜମୁ ତୁଲସୀ ମାଲା ॥ ଗୋପୀ କାନୁ ନ ଗଊ ଗୋଆଲା ॥
ତନ୍ତୁ ମନ୍ତୁ ପାଖଣ୍ଡୁ ନ କୋଈ ନା କୋ ବଂସୁ ବଜାଇଦା ॥ ୭ ॥

କରମ ଧରମ ନହୀ ମାଇଆ ମାଖୀ ॥ ଜାତି ଜନମୁ ନହୀଁ ଦୀସୈ ଆଖୀ ॥
ମମତା ଜାଲୁ କାଲୁ ନହୀଁ ମାଥୈ ନା କୋ କିସୈ ଧିଆଇଦା ॥ ୮ ॥

...

ନା କୋ ମୁଲା ନା କୋ କାଜୀ ॥ ନା କୋ ସେଖୁ ମସାଇକୁ ହାଜୀ ॥
ରଈଅତି ରାଉ ନ ହଉମୈ ଦୁନୀଆ କୋ କହଣୁ କହାଇଦା ॥ ୧୧ ॥

...

ବେଦ କତେବ ନ ସିଂମ୍ରିତି ସାସତ ॥ ପାଠ ପୁରାଣ ଉଦୈ ନହୀଁ ଆସତ ॥
କହତା ବକତା ଆପି ଅଗୋଚରୁ ଆପେ ଅଲଖୁ ଲଖାଇଦା ॥ ୧୩ ॥

ଜା ତିସୁ ଭାଣା ତା ଜଗତୁ ଉପାଇଆ ॥ ବାଝୁ କଲା ଆଡାଣୁ ରହାଇଆ ॥
ବ୍ରହମା ବିସନୁ ମହେସୁ ଉପାଏ ମାଇଆ ମୋହୁ ବଧାଇଦା ॥ ୧୪ ॥

ବିରଲେ କଉ ଗୁରି ସବଦୁ ସୁଣାଇଆ ॥ କରି କରି ଦେଖୈ ହୁକମୁ ସବାଇଆ ॥
ଖଣ୍ଡ ବ୍ରହମଣ୍ଡ ପାତାଲ ଅରମ୍ଭେ ଗୁପତହୁ ପରଗଟୀ ଆଇଦା ॥ ୧୫ ॥

ତା କା ଅନ୍ତୁ ନ ଜାଣୈ କୋଈ ॥ ପୂରେ ଗୁର ତେ ସୋଝୀ ହୋଈ ॥
ନାନକ ସାଚି ରତେ ବିସମାଦୀ ବିସମ ଭଏ ଗୁଣ ଗାଇଦା ॥ ୧୬ ॥

—ମାରୁ ସୋଲହେ

ଅର୍ବୁଦ ଅର୍ବୁଦ ଯୁଗ ଧରି ଏ ସୃଷ୍ଟି କେବଳ ଗାଢ଼ ଅନ୍ଧକାରରେ ଆଚ୍ଛନ୍ନ ଥିଲା, ଯେତେବେଳେ ନାହିଁ ନଥିଲା ଏହି ଧରଣୀ ବା ନାହିଁ ନଥିଲା ଏହି ଆକାଶ । ପରିବ୍ୟାପ୍ତ ରହିଥିଲା କେବଳ ସ୍ରଷ୍ଟାର ଆଜ୍ଞା । ଦିବା ବା ରାତ୍ରିରେ ସୂର୍ଯ୍ୟ ବା ଚନ୍ଦ୍ରର ଦେଖା ନଥିଲା; ପ୍ରଭୁ ଶୂନ୍ୟ-ସମାଧିରେ ବିରାଜିତ ଥିଲେ । ସେକାଳରେ ଖଣି, ବାଣୀ, ପାଣି ବା ପବନ କିଛି ହିଁ ନଥିଲା, ନଥିଲା ମଧ୍ୟ ଜନ୍ମ ଓ ମରଣର ଆତଯାତ । ନଥିଲା ଏହି ନବଖଣ୍ଡ ମେଦିନୀ ବା ସପ୍ତ ସାଗର ବା ପାତାଳ । ନଥିଲେ ଜଳପୂର୍ଣ୍ଣ ଏହି ସ୍ରୋତସ୍ୱତୀ ସକଳ । ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଏହି ତ୍ରିତଳସମନ୍ୱିତ ତ୍ରିଲୋକର ଚିହ୍ନ ନଥିଲା ସେତେବେଳେ ଏବଂ ନଥିଲା ସ୍ୱର୍ଗ ନରକ ବା ବିନାଶର କୌଣସି ସଙ୍କେତ । ନଥିଲା ଜନ୍ମ-ମରଣ ବା ସ୍ୱର୍ଗ-ନରକ । କେହି ଆସୁ ନଥିଲେ ବା ଯାଉ ନଥିଲେ । ଏପରି କି ନଥିଲେ ବ୍ରହ୍ମା, ବିଷ୍ଣୁ ବା ମହେଶ୍ୱର । ଥିଲେ କିନ୍ତୁ ସେହି ଏକମେବାଦ୍ୱିତୀୟ । ଦ୍ୱିତୀୟ କେହି ଦୃଷ୍ଟିଗୋଚର ହେଉ ନଥିଲେ । ସେକାଳରେ ନାରୀ ଓ ପୁରୁଷଙ୍କର ଜନ୍ମ ଯେହେତୁ ଆଦୌ ନଥିଲା, ତେଣୁ କେହି ଦୁଃଖ ବା ସୁଖ ଭୋଗୁଛି କହିବା ଥିଲା ଏକାନ୍ତ ଅବାନ୍ତର । ଏପରିକି ନଥିଲେ ମଧ୍ୟ ଯତି, ସତୀ, ବନବାସୀ ବା ନଥିଲେ ସିଦ୍ଧ ବା ସାଧକ ବା ସୁଖବାସୀ ନାଗରିକ । ଯୋଗୀ ବା ଜଙ୍ଗମ ବା କୌଣସି ବେଶଧାରୀ କେହି ନଥିଲେ । କିଏ କହିବ ସେ କାହାର ପ୍ରଭୁ ବା ଅନ୍ୟ କେହି ତାର ଅଧୀନସ୍ଥ ଲୋକ ? ଜପ, ତପ, ସଂଯମ, ପୂଜା ବ୍ରତ ଇତ୍ୟାଦି କିଛିହିଁ ନଥିଲା ସେକାଳରେ; ତେଣୁ ସେ କାଳରେ କେବଳ ତାଙ୍କର ବିରାଜମାନତା ଛଡ଼ା ଆଉ କ'ଣ ବର୍ଣ୍ଣନା କରିଯାଇପାରେ ବା ତାଙ୍କ ଛଡ଼ା ଅନ୍ୟ କିଏ ବା ଥିଲା ତାଙ୍କୁ ବର୍ଣ୍ଣନା କରିବାକୁ ? ଏବଂ ଯେହେତୁ ସେ ସ୍ୱୟଂପ୍ରକାଶ, ତେଣୁ ସେ କେବଳ ନିଜେହିଁ ନିଜର ବର୍ଣ୍ଣନା କରିବାକୁ ଯୋଗ୍ୟ ଥିଲେ । ସେତେବେଳେ ଜଣା ନଥିଲା ଶୁଚି, ସଂଯମ, ତୁଳସୀମାଳା ଇତ୍ୟାଦି ଏବଂ ନଥିଲେ ଗୋରୁ ବା ଗୋପାଳକ କାହ୍ନୁ ବା ଗୋପିନୀମାନେ । ନଥିଲା ମଧ୍ୟ ତନ୍ତ୍ରମନ୍ତ୍ର ବା ନଥିଲେ ନାସ୍ତିକ ଇତ୍ୟାଦି କେହି ବା କେହି ବଂଶୀବାଦକ । ନଥିଲା କିଛି ଧର୍ମକର୍ମ । ଜନ୍ମ ଯେନ ସମାଜର ଜାତିବିଚାର ସେତେବେଳେ ଶୁଣାଇ ନଥିଲା । ନଥିଲା ଏବର ମମତ୍ୱ-ଜାଲ; କାହାରି କପାଳରେ ଲିଖିତ ନଥିଲା କାଳରେଖା, କେହି ନଥିଲେ ଧ୍ୟାନରତ । ନଥିଲେ କାଜି ବା ମୁଲ୍ଲା ବା ହାଜି, ନଥିଲେ ରାଜା, ପ୍ରଜା ବା ଏହି ଅହଂମୟ ସଂସାର । କହିବା ବା ବୁଝାଇବାବାଲା କେହି ନଥିଲେ । ସେତେବେଳେ ବେଦ, ପୁରାଣ, କୋରାଣ, ସ୍ମୃତି ଓ ଶାସ୍ତ୍ର ଇତ୍ୟାଦି କିଛିହିଁ ନଥିଲା; ନଥିଲା ଜ୍ଞାନଚର୍ଚ୍ଚା ବା ରବିର ଉଦୟ ଓ ଅସ୍ତ । ଥିଲେ କେବଳ ସେହି ଅଗୋଚର ବଚନ ଓ ତାର ବକ୍ତା । ସେ ଅଲେଖ । ତାଙ୍କୁ ବର୍ଣ୍ଣିବାପାଇଁ ସମର୍ଥ କେବଳ ସେହି ନିଜେ । ଯେତେବେଳେ ଏହି ଜଗତ ସୃଷ୍ଟି କରିବାକୁ ତାଙ୍କର ଇଚ୍ଛା ହେଲା, ସେ ସେତେବେଳେ ଏହି ନିରାଧାର ଆକାଶକୁ ଠିଆକଲେ; ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ସୃଷ୍ଟି କଲେ ଏବଂ ସୃଜିଲେ ମଧ୍ୟ ମାୟାର ମୋହ । ସେପରି ଗୁରୁ ବିରଳ, ଯେ ସେହି ଶବ୍ଦକୁ ଶୁଣାଇପାରନ୍ତି, ଯେଉଁ ଆଜ୍ଞାରେହିଁ ଘଟିଚାଲିଛି ଏହି ସୃଷ୍ଟିର ସର୍ଜନା ଓ ପାଳନ-ପୋଷଣ । ତାଙ୍କର ହୁକୁମରେ ବ୍ରହ୍ମାଣ୍ଡଖଣ୍ଡ ଓ ପାତାଳର ଆରମ୍ଭ । ତାଙ୍କର ହୁକୁମରେହିଁ ଯାହା କିଛି ଗୁପ୍ତ ଥିଲା ସେ ସମସ୍ତହିଁ ପ୍ରକଟିତ ହୋଇଉଠିଲା । ତାଙ୍କର ଅନ୍ତ କାହାରିକୁ ହେଲେ ଅଗୋଚର, ଯଦିବା ପୂର୍ଣ୍ଣ ଗୁରୁଙ୍କଠାରୁ ସାମାନ୍ୟ କିଛି ଜ୍ଞାନ ମିଳିପାରେ । ନାନକର କହିବା କଥା ଏହି ଯେ ସତ୍ୟାନୁରକ୍ତ, ବିସ୍ମୟ-ଉନ୍ମାଦ ଦଶାରେ ହିଁ ତାଙ୍କର ଯଥୋପଯୁକ୍ତ ଗୁଣଗାନ ଘଟିଥାଏ ।

(୧୦୩୫-୩୬)

## ସୃଷ୍ଟି ଅନନ୍ତ

: ୨୨ :

ପାତାଲା ପାତାଲ ଲଖ ଅଗାସା ଆଗାସ ॥
ଓଡ଼କ ଓଡ଼କ ଭାଲ୍ ଥକେ ବେଦ କହନି ଇକ ବାତ ॥
ସହସ ଅଠାରହ କହନି କତେବା ଅସୁଲୁ ଇକୁ ଧାତୁ ॥
ଲେଖା ହୋଇ ତ ଲଖୀଐ ଲେଖୈ ହୋଇ ବିଣାସୁ ॥
ନାନକ ବଡ଼ା ଆଖୀଐ ଆପେ ଜାଣୈ ଆପୁ ॥ ୨୨ ॥

ଜପୁ, ପଉଡ଼ୀ ୨୨

: ୨୩ :

କେତେ ପବଣ ପାଣୀ ବୈସଂତର କେତେ କାନ ମହେସ ॥
କେତେ ବରମେ ଘାଡ଼ତ ଘଡ଼ୀଅହି ରୂପ ରଙ୍ଗ କେ ବେସ ॥
କେତୀଆ କରମ ଭୂମୀ ମେର କେତେ କେତେ ଧୂ ଉପଦେସ ॥
କେତେ ଇଂଦ ଚଂଦ ସୂର କେତେ କେତେ ମଂଡ଼ଲ ଦେସ ॥
କେତେ ସିଧ ବୁଧ ନାଥ କେତେ କେତେ ଦେବୀ ବେସ ॥
କେତେ ଦେବ ଦାନବ ମୁନି କେତେ କେତେ ରତନ ସମୁଂଦ ॥
କେତୀଆ ଖାଣୀ କେତୀଆ ବାଣୀ କେତେ ପାତ ନରିଂଦ ॥
କେତୀଆ ସୁରତୀ ସେବକ କେତେ ନାନକ ଅଂତୁ ନ ଅଂତୁ ॥ ୩୫ ॥

ଜପୁ, ପଉଡ଼ୀ ୩୫

## ସୃଷ୍ଟି-କାଳ

: ୨୪ :

କବଣୁ ସୁ ବେଲା ବଖତୁ କବଣୁ କବଣ ଥିତି କବଣୁ ବାରୁ ॥
କବଣି ସି ରୁତୀ ମାହୁ କବଣୁ ଜିତୁ ହୋଆ ଆକାରୁ ॥
ବେଲ ନ ପାଈଆ ପଂଡ଼ତୀ ଜିନ ହୋବୈ ଲେଖୁ ପୁରାଣୁ ॥
ବଖତୁ ନ ପାଇଓ କାଦୀଆ ଜି ଲିଖନି ଲେଖୁ କୁରାଣୁ ॥
ଥିତି ବାରୁ ନା ଜୋଗୀ ଜାଣୈ ରୁତି ମାହୁ ନା କୋଈ ॥
ଜା କରତା ସିରଠୀ କଉ ସାଜେ ଆପେ ଜାଣୈ ସୋଈ ॥
କିବ କରି ଆଖା କିବ ସାଲାହୀ କିଉ ବରନୀ କିବ ଜାଣା ॥
ନାନକ ଆଖଣି ସଭୁ କୋ ଆଖୈ ଇକଦୂ ଇକୁ ସିଆଣା ॥

ଜପୁ, ପଉଡ଼ୀ ୨୧

## ସୃଷ୍ଟି ମିଥ୍ୟା ନୁହେଁ; ସତ୍ୟ ଅଟେ

: ୨୫ :

ସଚେ ତେରେ ଖଂଡ଼ ସଚେ ବ୍ରହମଂଡ଼ ॥ ସଚେ ତେରେ ଲୋଅ ସଚେ ଆକାର ॥
ସଚେ ତେରେ କରଣେ ସରବ ବୀଚାର ॥ ସଚୁ ତେରା ଅମରୁ ସଚୁ ଦୀବାଣୁ ॥

: ୨୨ :

ବେଦ ଅନୁସାରେ ପାତାଳର ତଳେ ଲକ୍ଷେ ପାତାଳ ଓ ଆକାଶ ଉପରେ ଆକାଶ । ତେଣୁ ମୁଁ ସୀମା ଖୋଜି ଥକି ହୋଇଗଲିଣି । କେହି କେହି ସ୍ୱାମୀ କହୁଥାନ୍ତି ଅଠର ସହସ୍ର ବିଶ୍ୱର କଥା । ଏହି ସୃଷ୍ଟିର ଯେଉଁ ଗଣନୀୟତା ଅଛି ବୋଲି କେହି ଭାବୁଥାନ୍ତି, ତେବେ ସେ ଠିକ୍ ସଂଖ୍ୟା ଲେଖିଦିଅନ୍ତୁ । କିନ୍ତୁ ସେହି ଲେଖାଲେଖିରେ କେତେ ଜୀବନ ନଷ୍ଟ ହୋଇଯିବ । ତେଣୁ ନାନକ କହେ ଯେ ସେ ଗଣନା ଅତୀବ ଦୀର୍ଘ । ସେ ଦୈର୍ଘ୍ୟ କେବଳ ଏକା ତାଙ୍କୁ ହିଁ ଜଣା । (୫)

: ୨୩ :

କେତେ ଯେ ପବନ, ପାଣି ଓ ମାଟି, ପୁଣି କେତେ କୃଷ୍ଣ, କେତେ ମହେଶ ସୃଷ୍ଟି ହେଉଛନ୍ତି । ବିଭିନ୍ନ ରୂପ ଓ ବର୍ଣ୍ଣର କେତେ ବ୍ରହ୍ମା କେତେ ଯେ ବ୍ରହ୍ମାଣ୍ଡ ଯେ ସୃଷ୍ଟି କରୁଛନ୍ତି । ତହିଁରେ ଅଗଣିତ କର୍ମଭୂମି ସହ ଅକଳିତ ସତ୍ୟ ଉପଦେଶ ନିହିତ । ଅଗଣିତ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଓ ସୌର-ଜଗତ । ଅସଂଖ୍ୟ ସିଦ୍ଧ, ବୁଦ୍ଧ, ନାଥ ଓ ବିଭିନ୍ନ ଦେବାଦେବୀ ଓ ଦାନବ ପ୍ରକାଶିତ । ଆଉ ମଧ୍ୟ ଅଗଣିତ ମୁନି ଓ ଅକଳନୀୟ ରତ୍ନାକର, ଅଗଣିତ ଜୀବଜଗତ, ବହୁ ଭାଷା, ଅଗଣିତ ନରେନ୍ଦ୍ର ସମ୍ରାଟ, ଅପରିମିତ ଧର୍ମଶାସ୍ତ୍ର ଓ ଅଗଣିତ ପୁଣି ସେମାନଙ୍କର ଅନୁଶାସନରେ ଚାଲୁଥିବା ଜନଗଣ । ନାନକ ତେଣୁ କହୁଛି ଯେ—ଏ ସୃଷ୍ଟିରେ କାହାର ହେଲେ ଅନ୍ତ ନାହିଁ । (୭)

: ୨୪ :

ପରମେଶ୍ୱର ଯେତେବେଳେ ଆବିର୍ଭୂତ ହୋଇଥିଲେ, ସେ ସମୟଟି କେଉଁ ମାହେନ୍ଦ୍ର ବେଳା, କେଉଁ ତିଥି ବା ବାର, କେଉଁ ଋତୁ ବା ମାସ, କିଏ ଏହା କହିପାରିବ ? ଯେଉଁ ପଣ୍ଡିତମାନେ ପୁରାଣମାନ ଲେଖିଯାଇଛନ୍ତି ସେମାନେ କିମ୍ବା କୋରାଣ ଲେଖିଥିବା କାଜୀ ମଧ୍ୟ ଏଇ ଶୁଭ ବେଳାଟି ଜାଣିପାରିନାହାନ୍ତି । ସେହିପରି ଯୋଗୀମାନେ ମଧ୍ୟ ଭଗବାନଙ୍କର ଆବିର୍ଭାବର ଦିବସ-ତିଥି ଜାଣନ୍ତି ନାହିଁ । ଏହାର ଋତୁ ଓ ମାସର କଥା ମଧ୍ୟ କେହି ଜାଣନ୍ତି ନାହିଁ । ସେହିହିଁ କେବଳ ଜାଣନ୍ତି, ଯେଉଁ କର୍ତ୍ତା ଏହି ସୃଷ୍ଟି ସର୍ଜନା କରିଛନ୍ତି । ତେଣୁ ତାଙ୍କୁ କି ସ୍ତୁତି କରିବ ? କଣ କହିବ ? କିପରି ବର୍ଣ୍ଣନା କରିବ ? ମୁଁ ଅବା କିପରି ତାଙ୍କୁ ଚିହ୍ନିବ ? କିନ୍ତୁ ଚତୁରପଣରେ ଅଧିକରୁ ଅଧିକ ଗୁଣୀ ବ୍ୟକ୍ତି ଏସବୁ ବିଷୟ ପ୍ରକାଶ କରିବାକୁ କହୁଛନ୍ତି । (୪)

: ୨୫ :

ସତ୍ୟ ଏହି ଖଣ୍ଡ, ସତ୍ୟ ଏହି ବ୍ରହ୍ମାଣ୍ଡ, ସତ୍ୟ ଏହି ଲୋକ, ସତ୍ୟ ଦୃଷ୍ଟିବ୍ୟାପୀ ରୂପଗ୍ରାମ । ହେ ପ୍ରଭୁ, ସତ୍ୟ ତୁମର କାର୍ଯ୍ୟ, ସତ୍ୟ ତୁମର ସକଳ ବିଚାର, ସତ୍ୟ ତୁମର ଶାସନ, ସତ୍ୟ ତୁମର ଦରବାର, ସତ୍ୟ ତୁମର ଆଜ୍ଞା, ସତ୍ୟ

ସଚୁ ତେରା ହୁକମୁ ସଚୁ ଫୁରମାଣୁ ॥ ସଚୁ ତେରା କରମୁ ସଚୁ ନୀସାଣୁ ॥
ସଚେ ତୁଧୁ ଅଖିଅହି ଲଖ କରୋଡ଼ି ॥ ସଚୈ ସଭି ତାଣି ସଚୈ ସଭି ଜୋର ॥
ସଚୀ ତେରୀ ସିଫଂତ ସଚୀ ସାଲାହ ॥ ସଚୀ ତେରୀ କୁଦରତ ସଚେ ପାତସାହ ॥
ନାନକ ସଚୁ ଧିଆଇନ ସଚୁ ॥ ଜୋ ମରି ଜଂମେ ସୁ କଚୁ ନିକଚୁ ॥ ୧ ॥ ମଂ, ୧ ॥

ବାର ଆସା ପଉଡ଼ୀ ୨, ସଲୋକ ୧

## ଏ ସୃଷ୍ଟି କିପରି ହେଲା ?

: ୧୬ :

କିତୁ କିତୁ ବିଧ ଜଗୁ ଉପଜୈ ପୁରଖା କିତୁ କିତୁ ଦୁଖି ବିନସି ଜାଈ ॥
ହଉମୈ ବିଚି ଜଗୁ ଉପଜୈ ପୁରଖା ନାମି ବିସରିଐ ଦୁଖୁ ପାଈ ॥
ଗୁରମୁଖି ହୋବୈ ସୁ ଗିଆନୁ ତତୁ ବୀଚାରୈ ହଉମୈ ସବଦି ଜଲାଏ ॥
ତନୁ ମନୁ ନିରମଲୁ ନିରମଲ ବାଣୀ ସାଚୈ ରହୈ ସମାଏ ॥
ନାମେ ନାମି ରହୈ ବୈରାଗୀ ସାଚୁ ରଖିଆ ଉରି ଧାରେ ॥
ନାନକ ବିନୁ ନାବୈ ଜୋଗୁ କଦେ ନ ହୋବୈ ଦେଖହୁ ରିଦୈ ବୀଚାରେ ॥ ୬୮ ॥

ରାମକଲୀ ସିଧ ଗୋସଟି, ପଉଡ଼ୀ ୬୮

## କାହାର ଏ ସୃଷ୍ଟି ?

: ୧୭ :

ଆପେ ଛିଂଝ ପବାଇ ମଲାଖାଡ଼ା ରଚିଆ ॥
ଲଥେ ଭଡ଼ଥୂ ଗାଇ ଗୁରମୁଖି ମଚିଆ ॥
ମନମୁଖ ମାରେ ପଛାଡ଼ି ମୂରଖ କଚିଆ ॥
ଆପି ଭିଡ଼ୈ ମାରେ ଆପି ଆପି କାରଜୁ ରଚିଆ ॥

ବାର ମଲାର, ପଉଡ଼ୀ ୪

: ୧୮ :

ଗୁରମୁଖି ଧରତୀ ସାଚୈ ସାଜୀ ॥ ତିସ ମହି ଓପତି ଖପତି ସୁ ବାଜୀ ॥
ଗୁର କୈ ସବଦି ରପୈ ରଂଗୁ ଲାଇ ॥ ସାଚି ରତଉ ପତି ସିଉ ଘରି ଜାଇ ॥
ସାଚ ସବଦ ବିନୁ ପତି ନହୀଂ ପାବୈ ॥ ନାନକ ବିନୁ ନାବୈ କିଉ ସାଚି ସମାବୈ ॥ ୩୦ ॥

ରାମକଲୀ ସିଧ ଗୋସଟି, ପଉଡ଼ୀ ୩୦

: ୧୯ :

ସଂତ ହେତି ପ୍ରଭି ତ୍ରିଭବଣ ଧାରେ ॥ ଆତମୁ ଚୀନୈ ସୁ ତତୁ ବୀଚାରେ ॥ ୮ ॥
ସାଚୁ ରିଦୈ ସଚୁ ପ୍ରେମ ନିବାସ ॥ ପ୍ରଣବତି ନାନକ ହମ ତା କେ ଦାସ ॥ ୯ ॥ ୮ ॥

ଗଉଡ଼ୀ ଅସଟପଦୀଆ

ତୁମର ଅନୁଶାସନ, ସତ୍ୟ ତୁମର କଥା, ସତ୍ୟ ତୁମର ପ୍ରତୀକ । ଲକ୍ଷ କୋଟି ଲୋକ ତୁମକୁ ସତ୍ୟ ବୋଲିହିଁ କହନ୍ତି । ସତ୍ୟ ତୁମର ସର୍ବ ଜୀବୋଦ୍ଧାରଣ, ସତ୍ୟ ତୁମର ସକଳ ଶକ୍ତି । ତୁମର ଗୁଣଗାନହିଁ ଏକମାତ୍ର ସତ୍ୟ । ସତ୍ୟ ତୁମର ସ୍ତୁତି । ତୁମେ ସତ୍ୟରାଜ୍ୟର ବାଦଶା ଓ ସତ୍ୟହିଁ ତୁମର ବଳ । ନାନକ କହେ ଯେ, ଯେ ସତ୍ୟରେ ଲୀନ, ସେ ମଧ୍ୟ ସତ୍ୟ । ଯେଉଁ ଲୋକ ମାୟାରେ ଜଡ଼ିତ ହୋଇ ବାରମ୍ବାର ଜନ୍ମ-ମୃତ୍ୟୁରେ ଭ୍ରମିହେଉଥାଏ, ନାନକ କହେ ଯେ, ଅସତ୍ୟ କେବଳ ସେହି ଲୋକ । (୪୬୩)

: ୨୬ :

ହେ ମନୁଷ୍ୟ, ଏ ଜଗତର ସର୍ଜନା କପରି ହେଲା ? ଏହି ଜଗତରେ ଏତେ ଯେ ଦୁଃଖ ତାହା ବା ନଷ୍ଟ ହେବ କପରି ? ହେ ପୁରୁଷ, ମନେରଖ ଏ ଅହଂ ଭିତରେହିଁ ଏ ଜଗତର ସୃଷ୍ଟି ଏବଂ ମନୁଷ୍ୟ ଅହଂମତ୍ତ ହୋଇ ତାଙ୍କର ନାମ ଭୁଲିଯାଏ, ଦୁଃଖର ଆଗମ ହୁଏ । ଯେ ଗୁରୁଙ୍କଠାରୁ ଦୀକ୍ଷା ନେଇ ନାମ-ତତ୍ତ୍ୱର ବିଚାର କରନ୍ତି, ତାହାର ଦ୍ୱାରାହିଁ ତାଙ୍କର ଅହଂର ବିନାଶ ଘଟିଥାଏ । ଯେ ସତ୍ୟଲୀନ, ତାଙ୍କର ତନ-ମନ ନିର୍ମଳ ରହେ । ନିର୍ମଳ ତାଙ୍କର ବାଣୀ । ଯେ ନାମ ଭିତରେ ବୁଡ଼ିରହିଥାନ୍ତି ଏବଂ ହୃଦୟରେ ସତ୍ୟକୁ ସୁପ୍ରତିଷ୍ଠିତ କରି ରଖନ୍ତି, ସେହିହିଁ ସତ୍ୟ ବୈରାଗୀ । ନାନକ କହେ ଯେ, ନିଜ ଅନ୍ତରରେ ସତ୍ୟକୁ ଉତ୍ତମରୂପେ ବୁଝିନିଅ । ବିନା ନାମ-ଜପରେ ଯୋଗ କଦାପି ସମ୍ଭବ ନୁହେଁ । (୯୪୬)

: ୨୭ :

ସେହିହିଁ ଏହି ମାୟାର ଆଖଡ଼ା ତିଆରିଛନ୍ତି ଏବଂ ଆୟୋଜନ କରିଛନ୍ତି ଏହି ମାୟା-ଯୁଦ୍ଧର । ଉତ୍ତେଜିତ କାମାଦି ରିପୁ ସର୍ବଦା ଲଢ଼ିବାକୁ ତିଆର । ଗୁରୁଦୀକ୍ଷିତ ସାଧକ ମଧ୍ୟ ସେମାନଙ୍କର ସେପରି ଅବସ୍ଥାରେ ସମ୍ମୁଖୀନ ହୋଇ ନିଜେ-ଜଳସାଉଥିବା ଅନୁଭବ କରନ୍ତି । ଯେ କନ୍ତୁ ଗୁରୁଦୀକ୍ଷିତ, ସେ ସ୍ୱେଚ୍ଛାଚାରୀ ମୂର୍ଖକୁ ମଲ୍ଲ-ଯୁଦ୍ଧରେ କଚାଡ଼ି ପକେଇଥାଏ । ଆମ ଭିତରେ ଥିବା ସ୍ୱାର୍ଥପର ଅହଂଭାବକୁ ପ୍ରଭୁ ନିଜେ ମାରନ୍ତି । ଜଗତର ସକଳ କାର୍ଯ୍ୟ ସେ ସ୍ୱୟଂ ହିଁ କରିଥାନ୍ତି । (୧୨୮୦)

: ୨୮ :

ଗୁରୁଦୀକ୍ଷିତର ପ୍ରୟୋଜନ ମେଣ୍ଟାଇବା ପାଇଁ ହିଁ ସତ୍ୟ ଏହି ସୃଷ୍ଟି ସର୍ଜନା କଲେ । ଉତ୍ପତ୍ତି ଓ ବିନାଶ ତାଙ୍କର ନିଜର ଖେଳ । ଗୁରୁଙ୍କ ଉପଦେଶରେ ଯେଉଁ ଲୋକ ନିଜକୁ ରଞ୍ଜିତ କରି ନିଏ, ସେହି ସତ୍ୟଲୀନ ମହାତ୍ମା ସମ୍ମାନର ସହିତ ଘରକୁ ଫେରିଯାନ୍ତି । ସତ୍ୟ ବିନା କାହାକୁ ସମାଜରେ ମଧ୍ୟ ମାନ୍ୟତା ମିଳି ନ ପାରେ । ନାନକର କଥନ ଏହିକି, ତାଙ୍କର ନାମ-ଜପ ବିନା କିଏ ବା ସତ୍ୟକୁ ନିଜର ଆୟତ୍ତକୁ ଆଣିପାରିବାର ଆଶା କରିବ ?

(୯୪୧)

: ୨୯ :

କେବଳ ସନ୍ଥଜନମାନଙ୍କ ପାଇଁ ହିଁ ପ୍ରଭୁ ତ୍ରିଭୁବନ୍ ଧାରଣ କରି ରହିଛନ୍ତି ଏବଂ ସେହିହିଁ ପ୍ରକୃତ ସନ୍ଥ ଯେ ଆତ୍ମୋପଲବ୍ଧି କରି ସୃଷ୍ଟିର ତତ୍ତ୍ୱ ଅବଗତ ହୋଇପାରିଛନ୍ତି । ଯେଉଁ ହୃଦୟ ସତ୍ୟମୟ, ସେହିଠାରେ କେବଳ ସତ୍ୟପ୍ରେମର ଅଧିବାସ ହୁଏ ଏବଂ ପ୍ରଣତିପୂର୍ବକ ନାନକ ଏହା ଘୋଷଣା କରେ ଯେ, ନାନକ ସେପରି ମହାତ୍ମାର ଦାସ ମାତ୍ର । (୨୨୪)

# ଜୀବାତ୍ମା, ଅହଂକାର, କର୍ମ-ସିଦ୍ଧାନ୍ତ ଓ ଆବାଗମନ

ହୁକମୀ ହୋବନ ଜୀଅ, ହୁକମି ମିଲୈ ବଡ଼ିଆଈ ।୧

ଜପୁ ପଉଡ଼ୀ ୨

୧ । ଈଶ୍ୱରଙ୍କ ଆଦେଶରେହିଁ ସର୍ବଜୀବର ଉତ୍ପତ୍ତି,
କେବଳ ତାଙ୍କର ଆଜ୍ଞାରେହିଁ ପ୍ରାପ୍ତ ହୋଇଥାଏ ମହିମା ।

## ଜୀବାତ୍ମା ଅମର

: ୩୦ :

ପଉଣ ପାଣୀ ଅଗନୀ କା ମେଲୁ ।। ଚଂଚଲ ଚପଲ ବୁଧି କା ଖେଲୁ ।।
ନଉ ଦରବାଜେ ଦସବା ଦୁଆରୁ ।। ବୁଝୁ ରେ ଗିଆନୀ ଏହୁ ବୀଚାରୁ ।। ୧ ।।
କଥତା ବକତା ସୁନତା ସୋଈ ।। ଆପୁ ବୀଚାରେ ସୁ ଗିଆନୀ ହୋଈ ।। ୧ ।। ରହାଉ ।।
ଦେହୀ ମାଟୀ ବୋଲୈ ପଉଣୁ ।। ବୁଝୁ ରେ ଗିଆନୀ ମୂଆ ହୈ କଉଣୁ ।।
ମୂଈ ସୁରତି ବାଦୁ ଅହଂକାରୁ ।। ଓହୁ ନ ମୂଆ ଜୋ ଦେଖଣହାରୁ ।। ୨ ।।
ଜୈ କାରଣି ତଟି ତୀରଥ ଜାହୀ ।। ରତନ ପଦାରଥ ଘଟ ହୀ ମାହୀ ।।
ପଢ଼ି ପଢ଼ି ପଂଡିତୁ ବାଦୁ ବଖାନୈ ।। ଭୀତରି ହୋଦୀ ବସତୁ ନ ଜାନୈ ।। ୩ ।।
ହଉ ନ ମୂଆ ମେରୀ ମୁଈ ବଲାଇ ।। ଓହୁ ନ ମୂଆ ଜୋ ରହିଆ ସମାଈ ।।
କହୁ ନାନକ ଗୁରି ବ୍ରହମୁ ଦିଖାଇଆ ।। ମରତା ଜାତା ନଦରି ନ ଆଇଆ ।। ୪ ।। ୪ ।।

ଗଉଡ଼ୀ

## ଜୀବାତ୍ମାର ଆତ୍ମା, ରାମ

: ୩୧ :

ଆତମ ମହି ରାମୁ ରାମ ମହି ଆତମୁ ଚୀନସି ଗୁର ବୀଚାରା ।।
ଅମ୍ରିତ ବାଣୀ ସବଦି ପଛାଣୀ ଦୁଖ କାଟୈ ହଉ ମାରା ।। ୧ ।।
ନାନକ ହଉମୈ ରୋଗ ବୁରେ ।।
ଜହ ଦେଖାଂ ତହ ଏକା ବେଦନ ଆପେ ବଖସୈ ସବଦି ଧୁରେ ।। ରହାଉ ।।

ଭୈରଉ ଅସଟପଦୀଆ

## ଅହଂ ଓ ଅହଂକାର

: ୩୨ :

ହଉମୈ କରତ ଭେଖୀ ନହୀ ଜାନିଆ ।। ଗୁରମୁଖି ଭଗତି ବିରଲେ ମନୁ ମାନିଆ ।। ୧ ।।
ହଉ ହଉ କରତ ନହୀ ସଚୁ ପାଈଐ ।। ହଉମୈ ଜାଇ ପରମ ପଦୁ ପାଈଐ ।। ୧ ।। ରହାଉ ।।
ହଉମୈ କରି ରାଜେ ବହୁ ଧାବହି ।। ହଉମୈ ଖପହି ଜନମି ମରି ଆବହି ।। ୨ ।।
ହଉମୈ ନିବରୈ ଗୁର ସବଦୁ ବୀଚାରୈ ।। ଚଂଚଲ ମତି ତିଆଗୈ ପଂଚ ସଂଘାରୈ ।। ୩ ।।
ଅଂତରି ସାଚୁ ସହଜ ଘରି ଆବହି ।। ରାଜନୁ ଜାଣି ପରମ ଗତି ପାବହି ।। ୪ ।।
ସଚୁ କରଣୀ ଗୁରୁ ଭରମୁ ଚୁକାବୈ ।। ନିରଭଉ କୈ ଘରି ତାଡ଼ୀ ଲାବୈ ।। ୫ ।।
ହଉ ହଉ କରି ମରଣା କିଆ ପାବୈ ।। ପୂରା ଗୁରୁ ଭେଟୈ ସୋ ଝଗରୁ ଚୁକାବୈ ।। ୬ ।।
ଜେତୀ ହୈ ତେତୀ କିହୁ ନାହୀ ।। ଗୁରମୁଖି ଗିଆନ ଭେଟି ଗୁଣ ଗାହୀ ।। ୭ ।।
ହଉମୈ ବଂଧନ ବଂଧି ଭବାବୈ ।। ନାନକ ରାମ ଭଗତି ସୁଖୁ ପାବୈ ।। ୮ ।। ୧୩ ।।

ଗଉଡ଼ୀ ଅସଟପଦୀଆ

: ୩୦ :

ଏହି ଶରୀର କେବଳ ଜଳ, ବାୟୁ ଓ ଅଗ୍ନିର ସମାହାର ମାତ୍ର । ଏହାର ଭିତରେ ଖେଳ ଖେଳୁଛି ଚଞ୍ଚଳ, ଚପଳ ବୁଦ୍ଧିର । ନବଦ୍ୱାର ଓ ଦଶ କବାଟ । ବୁଝ ରେ ଜ୍ଞାନୀ, ଏହାର ବାର୍ତ୍ତା । ସେହି ସେ ବକ୍ତା, ସେହି ବ୍ୟାଖ୍ୟାତା ଆତ୍ମବସ୍ତୁରେ ହୁଏ ସେ ଜ୍ଞାତା । ମାଟିର ଏ ଦେହ, ତା' ଭିତରେ କଥା କହେ ବାୟୁ । ତେଣୁ, ବୁଝ ରେ ଜ୍ଞାନୀ, କିଏ ତେବେ ମରେ, କିଅବା ତୋର ଆୟୁ । ମରେ କେବଳ ପ୍ରବୃତ୍ତି ଓ ବୃଥା ଅହଂକାର, ଯେ ସେ ସବୁକୁ ଦେଖିଥାଏ, ମୃତ୍ୟୁ କିନ୍ତୁ ନାହିଁ ତାର । କାହିଁକି କରୁ ବୁଲେ ତୀର୍ଥାଟନ ? ତୋର ଭିତରେ ଅଛି ପତ୍ରରେ ସେ ମହତ ରତନ ? ପଣ୍ଡିତ ପଢ଼େ ଶାସ୍ତ୍ର ଓ କରେ ବିବାଦ କିନ୍ତୁ ଯେ ରତ୍ନ ଅଛି ତା ନିଜ ଭିତରେ, ରଖିଛି କି ସେ ତାର ସଂବାଦ ? ମୁଁ ତ ମରେନି, ମରେ ମୋର ପିଣ୍ଡଟା । ଯେ ନିମର ରହିଯାଏ, ସେ ବିରାଜିତ ରୋମେ ରୋମେ । ନାନକ କହେ ଯେ, ଗୁରୁ ମତେ ବ୍ରହ୍ମ ସହିତ ପରିଚିତ କଲା ପରେ, ମୁଁ ଦେଖି ପାରୁନି, କେହି ହେଲେ ପ୍ରକୃତରେ ମରେ ।

: ୩୧ :

ଆତ୍ମାରେ ରାମ, ରାମରେ ଆତ୍ମା··· ଗୁରୁ ଉପଦେଶରେ ଏହି ଆତ୍ମ-ପରିଚୟ ପ୍ରାପ୍ତ ହୁଅ । ଗୁରୁଙ୍କ ଅମୃତ ବାଣୀର ମର୍ମ ବୁଝ, ମନ୍ତ୍ର-ଜପ ଦେଇ, ଯାହା କାଟି ପକାଇବ ତମର ଦୁଃଖ, କାଟି ନେବ ତମର ଅହଂକାର । ନାନକ ଘୋଷଣା କରେ ଯେ, ଅହଂକାରଠୁ ବଳି ମନ୍ଦ ବ୍ୟାଧି ମନୁଷ୍ୟର ଦ୍ୱିତୀୟ ନାହିଁ । ଯୁଆଡ଼େ ନେତ୍ରପାତ କରୁଛି, ସେଠି ମୁଁ ଦେଖୁଛି କେବଳ ସେହି ବେଦନା । କେବଳ ନିରହଙ୍କାର-ଭାବ ହିଁ ମୁକ୍ତି ଦେଇପାରେ, ଅନ୍ତରରୁ ନିଃସୃତ ନାଦ-ବ୍ରହ୍ମ ଦେଇ ।

: ୩୨ :

ଅହଙ୍କାରର ପ୍ରରୋଚନାରେ ବହୁ ବେଶ ଧରିଲି, କିନ୍ତୁ ତାଙ୍କୁ ଜାଣି ପାରିଲି ନାହିଁ । କେବଳ ବିଶୁଦ୍ଧ-ଭକ୍ତିରେ ହିଁ ସନ୍ତୁଷ୍ଟ ଗୁରୁ-ଦୀକ୍ଷିତ ସାଧକ, ଜଗତରେ ବିରଳ । ଯେ ପର୍ଯ୍ୟନ୍ତ ଅଛି ତମର ଅହଙ୍କାର, ସେ ପର୍ଯ୍ୟନ୍ତ ସତ୍ୟ ଅନୁଭବ ଅସମ୍ଭବ । ଅହଂକାରର ବିନାଶ ହେଲେ ଯାଇ, ମିଳିବ ପରମ ପଦ । ଅହଂକାର-ବଶୀଭୂତ ହୋଇ ମନୁଷ୍ୟମାନେ ଏକ ଆରେକକୁ ଆକ୍ରମଣ କରନ୍ତି, ଅହଂକାର-ବଶରୁ ସେମାନେ ସର୍ବଦା ଜଞ୍ଜାଳରେ ପଡ଼ିଥାନ୍ତି ଏବଂ ଜନ୍ମ-ମରଣ ଦେଇ କ୍ରମାଗତ ଗତାଗତ ହେଉଥାନ୍ତି । ଗୁରୂପଦେଶ-ବିସ୍ତାର ହିଁ ଅହଂକୁ ଦୂରିଷ୍ଠ କରି ରଖେ, ଚଞ୍ଚଳ ମନର ବଶ୍ୟତା ଫଳରେ ହିଁ ହୁଏ ପଞ୍ଜର ବିନାଶ । ସତ୍ୟମୟ ଅନ୍ତର ଓ ସହଜ ସରଳ ଜୀବନ ଦେଇ ଅନ୍ତଃସ୍ଥ ସେହି ମହାରାଜଙ୍କୁ ଜାଣିଲେ ପରମଗତି ମିଳିଥାଏ । ଗୁରୁ ସକଳ ଭ୍ରମକୁ ଲୁଟାଇ ଦିଅନ୍ତି, ଯା' ଫଳରେ, କର୍ମରେ ସତ୍ୟ ପ୍ରକଟିତ ହୋଇ ଉଠେ, ଯା ଫଳରେକି, ନିର୍ଭୟ ପଦରେ ମନ ସ୍ଥିର କରାହୋଇ ପାରେ । କିନ୍ତୁ ଯେ ଅହଙ୍କାର-କଳୁଷିତ ହୋଇ ମରେ ସେ କଣ ପାଇବ ବୋଲି ଆଶା କରିପାରେ ? ସଦ୍‌ଗୁରୁ ଭେଟ ହେଲେ ଏ ସମସ୍ତ ଜଞ୍ଜାଳରୁ ରକ୍ଷା ମିଳେ । ଏ ଜଗତରେ ଯାହା କିଛି ଆମେ ଦେଖୁ, ସେହି ପ୍ରତ୍ୟେକଟି ନାଶଶୀଳ, ପ୍ରକୃତ ଗୁରୁ-ଜ୍ଞାନ ସହିତ ଭେଟ ଯଦି ଘଟେ ତେବେ କେବଳ ତାଙ୍କର ଗୁଣଗାନ କର । ଅହଂକାର କେବଳ ବନ୍ଧନ, ମନୁଷ୍ୟ ସେହି ବନ୍ଧନରେ କେବଳ ଭ୍ରମୁଥାଏ । ନାନକ କହେ ଯେ, ପ୍ରକୃତ ସୁଖ କେବଳ ମିଳିପାରେ, ରାମ-ଭକ୍ତି ଦେଇ । (୨୨୬-୨୭)

: ୩୩ :

ହଉମୈ କରତା ତା ତୂ ନାହୀ ତୂ ହୋବହି ହଉ ନାହି ॥
ବୂଝହୁ ଗିଆନୀ ବୂଝଣା ଏହ ଅକଥ କଥା ମନ ମାହି ॥
ବିନୁ ଗୁର ତତୁ ନ ପାଈଐ ଅଲଖୁ ବସୈ ମଲ ମାହି ॥
ସତିଗୁରୁ ମିଲୈ ତ ଜାଣୀଐ ଜାଂ ସବଦୁ ବସୈ ମନ ମାହି ॥
ଆପୁ ଗଇଆ ଭ୍ରମ୍ ଭଉ ଗଇଆ ଜନମ ମରନ ଦୁଖ ଜାହି ॥
ଗୁରମତି ଅଲଖୁ ଲଖାଈଐ ଉତମ ମତି ତରାହି ॥
ନାନକ ସୋହଂ ହଂସା ଜପୁ ଜାପହୁ ତ୍ରିଭବଣ ତିସୈ ସମାହି ॥ ୧ ॥ ମଂ ୩ ॥

ବାର ମାରୂ : ସଲୋକ ୧, ପଉଡ଼ୀ ୧୯

## କର୍ମ ସିଦ୍ଧାନ୍ତ

: ୩୪ :

ଦଦୈ ଦୋସୁ ନ ଦେଊ କିସୈ ଦୋସୁ କରଂମା ଆପଣିଆ ॥
ଜୋ ମୈ କୀଆ ସୋ ମୈ ପାଇଆ ଦୋସୁ ନ ଦୀଜୈ ଅବର ଜନା ॥ ୨ ॥
ଧଧୈ ଧାରି କଲା ଜିନି ଛୋଡ଼ୀ ହରି ଚୀଜୀ ଜିନି ରଂଗ କୀଆ ॥
ତିସ ଦା ଦୀଆ ସଭନୀ ଲୀଆ କରମୀ କରମୀ ହୁକମୁ ପଇଆ ॥ ୨୨ ॥

ଆସା ପଟୀ

: ୩୫ :

ନାନକ ଜୀଅ ଉପାଇ କୈ ଲିଖି ନାବୈ ଧରମୁ ବହାଲିଆ ॥
ଓଥୈ ସଚେ ହୀ ସଚି ନିବଡ଼ୈ ଚୁଣି ବଖି କଢେ ଜଜମାଲିଆ ॥
ଥାଉ ନ ପାଇନି କୂଡ଼ିଆର ମୁହ କାଲ୍ହୈ ଦୋଜକି ଚାଲିଆ ॥
ତେରୈ ନାଇ ରତେ ସେ ଜିଣି ଗଏ ହାରି ଗଏ ସି ଠଗଣ ବାଲିଆ ॥
ଲିଖି ନାବୈ ଧରମୁ ବହାଲିଆ ॥ ୨ ॥
ଆପୀନ୍ହୈ ଭୋଗ ଭୋଗି କୈ ହୋଇ ଭସମଡ଼ି ଭଉରୁ ସିଧାଇଆ ॥
ବଡ଼ା ହୋଆ ଦୁନୀଦାରୁ ଗଲି ସଗଲୁ ଘତି ଚଲାଇଆ ॥
ଅଗୈ କରଣୀ କୀରତି ବାଚୀଐ ବହି ଲେଖା କରି ସମଝାଇଆ ॥
ଥାଉ ନ ହୋଵୀ ପଉଦୀଈ ହୁଣି ସୁଣୀଐ କିଆ ରୂଆଇଆ ॥
ମନି ଅଂଧୈ ଜନମୁ ଗଵାଇଆ ॥ ୩ ॥
ପଡ଼ିଆ ହୋବୈ ଗୁନହଗାରୁ ତା ଓମୀ ସାଧୁ ନ ମାରୀଐ ॥
ଜେହା ଘାଲେ ଘାଲଣା ତେବେହୋ ନାଉ ପଚାରୀଐ ॥
ଐସୀ କଲା ନ ଖେଡ଼ୀଐ ଜିତୁ ଦରଗହ ଗଇଆ ହାରୀଐ ॥
ପଡ଼ିଆ ଅତୈ ଓମୀଆ ବୀଚାରୁ ଅଗୈ ବୀଚାରୀଐ ॥
ମୁହି ଚଲୈ ସୁ ଅଗୈ ମାରୀଐ ॥ ୧୨ ॥

ବାର ଆସା, ପଉଡ଼ୀ ୨, ୩ ବ ୧୨

: ୩୩ :

ହେ ପ୍ରଭୁ ମୁଁ ଏତିକି ଜାଣିଛି ଯେ, "ମୁଁ" ଥିଲାଯାଏ ତୁମେ ନାହିଁ ଏବଂ ତୁମେ ମୋ ଭିତରେ ବିରାଜିତ ହେଲେ "ମୁଁ"ର ଅସ୍ତିତ୍ୱ କାହିଁ ? ହେ ଜ୍ଞାନୀ, ବିଚାର କରିରେ ତୋ ମନରେ, ଏହି ଅନିର୍ବଚନୀୟ ତଥ୍ୟକୁ । ସେହି ଅଲେଖ ସବୁ ମଣିଷର ଭିତରେ ବିରାଜିତ; କିନ୍ତୁ ବିନା ଗୁରୁରେ, ତାଙ୍କର ତତ୍ତ୍ୱ ମିଳେନା । ସଦ୍‌ଗୁରୁ ମିଳିଲେ ଓ ସଦ୍‌ଗୁରୁଙ୍କଠାରୁ ପ୍ରାପ୍ତ ଉପଦେଶରେ ଚିତ୍ତ ରଂଜିତହୋଇ ଉଠିଲେ ଯାଇ ସତ୍ୟ ଜ୍ଞାନର ଆବିର୍ଭାବ ହୋଇଥାଏ । ଯାହା ଫଳରେ କି ଅହଂର ବିନାଶ ଘଟେ, ଭ୍ରମ-ପ୍ରମାଦ ଦୂରୀଭୂତ ହୁଏ ଏବଂ ଏପରି କି ଜନ୍ମ-ମରଣ-ଦୁଃଖ ମଧ୍ୟ ବିଲୁପ୍ତ ହୁଏ । ଗୁରୂପଦେଶକୁ ନିଷ୍ଠାର ସହିତ ପାଳନ କଲେ ଅଲେଖଙ୍କ ଲେଖା ଦିଶିଯାଏ, ଏବଂ ସେହି ଉତ୍ତମ ମତି ହିଁ ସାଧକକୁ ଜନ୍ମ-ମରଣର ପାରକୁ ନେଇଯାଏ । ନାନକ ଘୋଷଣା କରେ ଯେ, ସୋଽହଂ ଜପକରି ଚାଲ, ନିଖିଳ ତ୍ରିଭୁବନରେ ସେହି ସୋଽହଂ ହିଁ ପରିବ୍ୟାପ୍ତ ।

: ୩୪ :

କାହିଁକି ଅନ୍ୟକୁ ଦୋଷ ଦିଅ ? ଦୋଷତ ତୁମ ନିଜ କର୍ମରେ ? ମୁଁ ଯାହା କରିଛି 'ତା'ର ଫଳହିଁ ମୁଁ ଭୋଗୁଛି । ସେ ଦୋଷ ଅନ୍ୟଂଠି ଲାଗିବ କିପରି ? ଯେ ନିଜର କଳା ଦେଇ, ସମଗ୍ର ସୃଷ୍ଟିକୁ ଧରି ରଖିଛନ୍ତି, ଏ ଜଗତରେ ପ୍ରତ୍ୟେକଟି ବସ୍ତୁ ବା ଜୀବର ବର୍ତ୍ତି ଯାହାଙ୍କଠୁ ଆସିଛି, ଆପଣା ଆପଣା କର୍ମାନୁସାରେ, ସେ ଯାହା ହୁକୁମ କରନ୍ତି, ତାହା ହିଁ ଆମ ପ୍ରତ୍ୟେକର ପ୍ରାପ୍ୟ, ତାହାହିଁ ଆମର ଜୀବନ ।

: ୩୫ :

ନାନକ ଏହା ଘୋଷଣା କରେ କି, ସେହି ଏକ ପ୍ରଭୁ ହିଁ ସକଳ ଜୀବଙ୍କୁ ସୃଷ୍ଟି କରି, ସେମାନଙ୍କର କର୍ମର ବିଚାର ପାଇଁ ହିଁ, ଏ ଜଗତରେ ଧର୍ମକୁ ପ୍ରତିଷ୍ଠିତ କଲେ । ସେଠାରେ ସତ୍ୟର ପରୀକ୍ଷା ହୁଏ, ପାପୀ ଓ ପୁଣ୍ୟବାନଙ୍କୁ ଅଲଗା ଅଲଗା କରି ଦିଆଯାଏ । ତାଙ୍କର ସେଠି ମିଥ୍ୟାଚାରୀର ସ୍ଥାନ ନାହିଁ, ମିଥ୍ୟାଚାରୀ ଜୀବନର ଆରପଟେ ମୁହଁରେ କଳାବୋଳି ହୋଇ ନରକ ଆଡ଼କୁ ଗତି କରେ । ସେଠି ସେହିମାନଙ୍କର କେବଳ ଜୟ, ଯେଉଁମାନେ ତାଙ୍କରି ନାମରେ ଲୀନ, ଏବଂ ଇହଜୀବନରେ ଆପାତ ସିଦ୍ଧିପ୍ରାପ୍ତ ଠକ ବଜାତମାନଙ୍କର ସେପଟେ ହୁଏ ପରାଜୟ । ଏହି ପ୍ରକାର ହିସାବ-ନିକାଶ ପାଇଁ ହିଁ ସେ ଏ ଜଗତରେ ଧର୍ମକୁ ବସାଇଛନ୍ତି । ନିଜ କର୍ମଫଳ ଭସ୍ମୀଭୂତ ହେଲେ ଯାଇ, ଜୀବର ଏଠୁ ଶେଷଯାତ୍ରା ସମ୍ଭବ ହୁଏ । ବିଷୟାସକ୍ତ ଲୋକ ମଲାପରେ ମୃତ୍ୟୁ ଦୂତମାନେ ତା ବେକରେ ଜଂଜିର ଲଗାଇ ଟାଣିଟାଣି ନେଇଥାନ୍ତି । ପ୍ରଭୁଙ୍କ ସେଠାରେ ନିଜ କର୍ମ ବଳରେ ହିଁ କୀର୍ତ୍ତି ସୁଖ ମିଳିଥାଏ । ସେଠି ବସି ଆମକୁ ଆମ ନିଜ ନିଜର କର୍ମର ହିସାବ-ଫର୍ଦ୍ଦ ବୁଝାଇବାକୁ ପଡ଼ିବ । ସେଠି ଅପକର୍ମ ପାଇଁ ଦଣ୍ଡ ନିଶ୍ଚିତ, ଦଣ୍ଡରୁ ପଳାଇଯିବା ପାଇଁ ସେଠି ଅବକାଶ ନାହିଁ, ରୋଦନ ସେଠି ଅର୍ଥହୀନ । କାରଣ ଦୁରାତ୍ମାକୁ ସବୁ ସ୍ମରଣ କରିବା ଉଚିତ କିପରି ଅଜ୍ଞ ଭାବରେ ଜୀବନକୁ ସେମାନେ ନଷ୍ଟ କରିଯାଇଛନ୍ତି, ପୃଥିବୀରେ । ତେଣୁ ଯଦି ସାକ୍ଷର ଲୋକ ହିଁ ପାପ କର୍ମ କରେ, ତାର ଫଳ, ନିରକ୍ଷର ସାଧୁ ଲୋକ କିପରି ଭୋଗିବ ? ଯାହାର କର୍ମ ଯେପରି ସେହି ଅନୁଯାୟୀ ତାକୁ ଖ୍ୟାତି ମିଳିଥାଏ । ତେଣୁ ହେ ଭାଇ, ଏ ସଂସାରରେ ଏପରି ଖେଳ ଖେଳିନା ଯାହା ତୁମକୁ ପରାଭବ ଆଣିବ ପରଲୋକରେ । ସେଠି ସାକ୍ଷର ଓ ନିରକ୍ଷରର ସମାନ ବିଚାର ହୁଏ; ସେଚ୍ଛାଚାରୀ ଦଣ୍ଡପ୍ରାପ୍ତ ହୁଏ ।

## କର୍ମ-ଚକ୍ରର ଦୁଃଖ ନାମ-ସ୍ମରଣରେ ଦୂର ହୁଏ ନାହିଁ

: ୩୬ :

କରଣୀ କାଗଦୁ ମନୁ ମସବାଣୀ ବୁରା ଭଲା ଦୁଇ ଲେଖ ପଏ ॥
ଜିଉ ଜିଉ କିରତୁ ଚଲାଏ ତିଉ ଚଲୀଐ ତଉ ଗୁଣ ନାହୀ ଅନ୍ତୁ ହରେ ॥ ୧ ॥
ଚିତ ଚେତସି କୀ ନହୀଁ ବାବରିଆ । ହରି ବିସରତ ତେରେ ଗୁଣ ଗଲିଆ ॥ ରହାଉ ॥
ଜାଲୀ ରୈନି ଜାଲୁ ଦିନୁ ହୂଆ ଜେତୀ ଘଡ଼ୀ ଫାହୀ ତେତୀ ॥
ରସି ରସି ଚୋଗ ଚୁଗହି ନିତ ଫାସହି ଛୂଟସି ମୂଢ଼େ କବନ ଗୁଣୀ ॥ ୨ ॥
କାଇଆ ଆରଣୁ ମନୁ ବିଚି ଲୋହା ପଞ୍ଚ ଅଗନି ତିତୁ ଲାଗି ରହୀ ॥
କୋଇଲେ ପାପ ପଡ଼େ ତିସୁ ଊପରି ମନୁ ଜଲିଆ ସଂନୀ ଚିଂତ ଭଈ ॥ ୩ ॥
ଭଇଆ ମନୂରୁ କଞ୍ଚନୁ ଫିରି ହୋବୈ ଜେ ଗୁରୁ ମିଲୈ ତିନେହା ॥
ଏକୁ ନାମୁ ଅଂମ୍ରିତ ଓହୁ ଦେବୈ ତଉ ନାନକ ତ୍ରିସଟସି ଦେହା ॥ ୪ ॥ ୩ ॥

ମାରୁ

॥ ୩୭ ॥

ଘର ଦର ଫିରି ଥାକୀ ବହୁତେରେ ॥ ଜାତି ଅସଂଖ ଅନ୍ତ ନହୀଁ ମେରେ ॥
କେତେ ମାତ ପିତା, ସୁତ ଧୀଆ ॥ କେତେ ଗୁର ଚେଲେ ଫୁନି ହୂଆ ॥
କାଚେ ଗୁର ତେ ମୁକତି ନ ହୂଆ ॥
କେତୀ ନାରି ବରୁ ଏକୁ ସମାଲି ॥ ଗୁରମୁଖି ମରଣୁ ଜୀବଣୁ ପ୍ରଭ ନାଲି ॥
ଦହଦିସ ଢୂଢ଼ି ଘରୈ ମହି ପାଇଆ ॥ ମେଲୁ ଭଇଆ ସତିଗୁରୂ ମିଲାଇଆ ॥ ୨୧ ॥

ରାମକଲୀ ଦଖଣୀ, ଓଁକାର, ପଉଡ଼ୀ ୨୧

: ୩୮ :

ଜୁଡ଼ି ଜୁଡ଼ି ବିଛୁଡ଼େ ବିଛୁଡ଼େ ଜୁଡ଼େ ॥ ଜୀବି ଜୀବି ମୁଏ ମୁଏ ଜୀବେ ॥
କେତିଆ କେ ବାପ କେତିଆ କେ ବେଟେ କେତେ ଗୁର ଚେଲେ ହୁଏ ॥
ଆଗୈ ପାଛୈ ଗଣତ ନ ଆବୈ କିଆ ଜାତୀ କିଆ ହୁଣି ହୁଏ ॥
ସଭୁ କରଣା କିରତୁ କରି ଲିଖୀଐ କରି କରି କରତା କରେ କରେ ॥
ମନମୁଖି ମରୀଐ ଗୁରମୁଖି ତରୀଐ ନାନକ ନଦରୀ ନଦରି କରେ ॥ ୨ ॥

ବାର ସାରଙ୍ଗ, ସଲୋକ ୨, ପଉଡ଼ୀ ୬

: ୩୬ :

କର୍ମ ହେଲା କାଗଜ, ମନ ହେଲା ସିହାଇ, ଆମେ ସେଥିରେ ଲେଖି ଚାଲିଛେ ଭଲ ଓ ମନ୍ଦ ଦୁଇକଥା । କିନ୍ତୁ ହେ ପ୍ରଭୁ, ତୁମେ ଯେପରି ମୋ କର୍ମଜାଲକୁ ଚଳାଇଛ ମୁଁ ସେହିପରି ହିଁ ଜୀବନ ପଥରେ ଗତି କରି ଚାଲିଛି; ତୁମର ଗୁଣ ଅନନ୍ତ । ଅପଚିନ୍ତା ବା ଅପକର୍ମବେଳେ, ହେ ପ୍ରଭୁ, ଏହି ପାଗଳ ମନକୁ ଚେତାଇ ନଦେଲ କାହିଁକି ? ହେ ଚଣ୍ଡ, ତୁ କି ଜାଣୁନୁ ଯେ ହରିଙ୍କ ବିସ୍ମରଣ ମାନେ ତୋର ସକଳ ଗୁଣର ବିନାଶ ? ସେପରି ଅବସ୍ଥାରେ, ଦିନଟି ତୋପ୍ରତି ଏକ ଜାଲ 'ରାତି, ତୋପ୍ରତି ଏକ ଜାଲ । ଦିନରାତିର ଯେତେ ଯେତେ ଘଡ଼ି ସେତେ ସେତେ ଫାଶ । ଅନ୍ୟର ଚୁଗୁଲି କରି ଆନନ୍ଦିତ ହେଉଛୁ ଓ ନିଜେ ଝୁଣ୍ଟି ମରୁଛୁ ବାରମ୍ବାର । ରେ ମୂଢ଼, ତୋର କେଉଁ ଗୁଣ ଅଛି, ତୁ ପଳାଇଯିବୁ କଦେଶ ? ତୋର କାୟା ଭାଟିରେ ମନଲୌହ ଧକ୍ ଧକ୍ ହୋଇ ଜଳୁଛି । ତୋର ପାପର କୋଇଲା ସେ ନିଆଁକୁ ଜଳେଇ ରଖୁଛି । ରେ ମନ, ସେହି କ୍ରମେ ତୁ ବି ଜଳୁଛୁ, ଚିନ୍ତାରୂପକ ସଣ୍ଢାଶି ସେ ନିଆଁକୁ ପୁଣି ବରାବର ତେଜାଇ ରଖୁଛି । କିନ୍ତୁ ଜାଣିରଖ ଯେ ତୋର ଚିତ୍ତର ସମସ୍ତ ଲୌହ ଭସ୍ମୀଭୂତ ହୋଇଗଲା ପରେ ତାହା ହିଁ ହୋଇଉଠିବ ସୁବର୍ଣ୍ଣ । ନାନକ ଏହା କହନ୍ତି ଯେ, ଦେହାଗ୍ନିର ପିପାସା କେବଳ ସେତେବେଳେ ଯାଇ ମେଣ୍ଟିବ, ଯେତେବେଳେ ଏପରି ସଦ୍‌ଗୁରୁ ମିଳିଯିବେ । ଯେକି ନାମାମୃତ ପିଆଇବାକୁ ସକ୍ଷମ ।

: ୩୭ :

ମୁଁ ଘର ଘର ଦ୍ୱାର ଦ୍ୱାର ବୁଲି ଚାଲିଛି, ବୁଲି ବୁଲି ଥକି ବି ଗଲିଣି ବହୁତ । ଅଗଣିତ ମୋର ଜନ୍ମ । ସେସବୁର ହିସାବ ପୁଣି ମତେ ଅଜ୍ଞାତ । କେତେ ଯେ ମୋର ପିତା, ମାତା, ପୁତ୍ର, କନ୍ୟା; ଭକ୍ତ ଗୁରୁଠାରୁ ମୁକ୍ତି ନ ପାଇ କେତେ ଗୁରୁର ଯେ ମୁଁ ଶିଷ୍ୟ ହୋଇଆସିଛି, ତାର ହିସାବ କିପରି ଦେବି ? ଜଗତରେ ନାରୀ ଅଗଣିତ, ସେମାନେ ଜୀବନ ଜୀବନେ ଏକ ଏକ ବରକୁ ଆଶ୍ରୟ କରି ଚାଲିଛନ୍ତି; କିନ୍ତୁ ସେଠାରେ ଏକ ସ୍ୱାମୀହିଁ ସେମାନଙ୍କର ଆଶ୍ରୟ । ଗୁରୁ ଭକ୍ତଜନର ଜୀବନ ଓ ମରଣରେ ମଧ୍ୟ ପ୍ରଭୁ ହିଁ ଏକ ସାଥୀ ହୋଇ ରହିଥାନ୍ତି । ଦିଗ ଦିଗ ଭ୍ରମି ଭ୍ରମି ଶେଷରେ ତାଙ୍କର ଅଧିଷ୍ଠାନରେ ତାଙ୍କର ସାକ୍ଷାତ ହୁଏ । ସଦ୍‌ଗୁରୁଙ୍କ ଭେଟ ହେଲେ ସେହି ହିଁ ପ୍ରଭୁଙ୍କ ସାଥିରେ ଭେଟ କରାଇ ଦେଇଥାନ୍ତି ।

: ୩୮ :

ଆମେ ସବୁ ଏକାଠି ହେଉ, ପୁଣି ହୋଇଯାଉ ଅଲଗା ଅଲଗା, ଅଲଗା ଅଲଗା ରହି ପୁଣି ଆସି ମିଳିତ ହେଉ । ଜିଇଁ ଜିଇଁ ଆମେ ମରୁ, ମରି ପୁଣି ପୁନଃ ପୁନଃ ଜନ୍ମ ନେଉ । ଏହି କ୍ରମରେ ଆମେ ପ୍ରତ୍ୟେକେ କେତେ ଲୋକର ପିତା ଓ କେତେ ଲୋକର ପୁତ୍ର-କନ୍ୟା ହୋଇଆସୁଛୁ କିଏ କହିବ ? କିଏ କହିବ କେତେ ଗୁରୁଙ୍କର ଆମେ ଶିଷ୍ୟ ହୋଇଛୁ ? ଆଗ, ପଛ ଓ ଏବକୁ ମିଶାଇ କିଏ ନିଜର ଜନ୍ମ ଜାତର ଗଣନା କରି ପାରିବ ? ଯାହା ଯାହା କର୍ମ ଆମେ କରିସାରିଛୁ ଏବଂ ଯାହା ବା କରିଚାଲିଛୁ ସେ ସମସ୍ତହିଁ ଆମର ଭାଗ୍ୟଲିଖିତ । ଆମକୁ ବାରମ୍ବାର କର୍ତ୍ତା ଦାମ ହେଉଛି; କାରଣ, ଯେ ସ୍ୱେଚ୍ଛାଚାରୀ ସେହି ବାରମ୍ବାର ଜନ୍ମେ ଓ ମରେ । କିନ୍ତୁ ଗୁରୁମୁଖୀ ସାଧକ ମୃତ୍ୟୁକୁ ଅତିକ୍ରମ କରି ଯାଏ । ନାନକ କହନ୍ତି ଯେ ଏହିପରି ସାଧକଙ୍କୁ ହିଁ କୃପାଳୁ ଭଗବାନ କୃପା କରିଥାନ୍ତି ।

(୧୨୩୮)

# ମୁକ୍ତି ଓ ଅଭୟ

କରମୀ ଆବେ କପଡ଼ା, ନଦଶ୍ର ମୋଖ୍ ଦୁଆରୁ ॥ ୧ ॥

କପୁ ପଦ୍ଧଡ଼ୀ ୪

୧ । କର୍ମଫଳରୁ ଆମେ ଏହି ଶରୀର ପ୍ରାପ୍ତ ହେଉ,
ମୁକ୍ତି କିନ୍ତୁ ମିଳେ ପ୍ରଭୁଙ୍କ ପ୍ରସାଦରୁ । (୨)

: ୩୯ :

ଅଧ୍ୱଆତମ କରମ କରେ ତା ସାଚୁ ॥ ମୁକତ ଭେଦୁ କିଆ ଜାଣୈ କାଚୁ ॥
ଐସା ଜୋଗୀ ଜୁଗତ ବୀଚାରେ ॥ ପଞ୍ଚ ମାର ସାଚୁ ଉରଧାରେ ॥ ୧ ॥
ଜିସ କୈ ଅନ୍ତର ସାଚୁ ବସାବୈ ॥ ଜୋଗ ଜୁଗତ କୀ କୀମତ ପାବୈ ॥ ୨ ॥
ରବ ସସି ଏକୋ ଗ୍ରିହ ଉଦଆନୈ ॥ କରଣୀ କୀରତ କରମ ସମାନୈ ॥ ୩ ॥
ଏକ ସବଦ ଇକ ଭିଖିଆ ମାଗୈ ॥ ଗିଆନୁ ଧିଆନୁ ଜୁଗତ ସଚୁ ଜାଗୈ ॥ ୪ ॥
ଭୈ ରଚ ରହୈ ନ ବାହର ଜାଇ ॥ କୀମତ କଉଣ ରହୈ ଲିବ ଲାଇ ॥ ୫ ॥
ଆପେ ମେଲେ ଭରମୁ ଚୁକାଏ ॥ ଗୁର ପରସାଦ ପରମ ପଦୁ ପାଏ ॥ ୬ ॥
ଗୁର କୀ ସେବା ସବଦୁ ବୀଚାରୁ ॥ ହଉମୈ ମାରେ କରଣୀ ସାରୁ ॥ ୭ ॥
ଜପ ତପ ସଞ୍ଜମ ପାଠ ପୁରାଣୁ ॥ କହୁ ନାନକ ଅପରଂପର ମାନୁ ॥ ୮ ॥ ୬ ॥

ଗଉଡ଼ୀ ଅସଟପଦୀଆ

: ୪୦ :

ଲେଖ ଅସଂଖ ଲିଖି ଲିଖି ମାନୁ ॥ ମନ ମାନିଐ ସଚୁ ସୁରତ ବଖାନୁ ॥
କଥନୀ ବଦନୀ ପଡ଼ି ପଡ଼ି ଭାରୁ ॥ ଲେଖ ଅସଙ୍ଖ ଅଲେଖୁ ଅପାରୁ ॥ ୧ ॥
ଐସା ସାଚୁ ତୂ ଏକୋ ଜାଣୁ ॥ ଜଂମଣୁ ମରଣା ହୁକମୁ ପଛାଣୁ ॥ ରହାଉ ॥
ମାଇଆ ମୋହି ଜଗୁ ବାଧା ଜମକାଲି ॥ ବାଧା ଛୁଟୈ ନାମୁ ସମ୍ହାଲି ॥
ଗୁରୁ ସୁଖଦାତା ଅବରୁ ନ ଭାଲି ॥ ହଲତି ପଲତି ନିବହୀ ତୁଧୁ ନାଲି ॥ ୨ ॥
ସବଦି ମରୈ ତାଂ ଏକ ଲିବ ଲାଏ ॥ ଅଚରୁ ଚରୈ ତ ଭରମୁ ଚୁକାଏ ॥
ଜୀବନ ମୁକତ ମନ ନାମୁ ବସାଏ ॥ ଗୁରମୁଖି ହୋଇ ତ ସଚି ସମାଏ ॥ ୩ ॥
ଜିନ ଧର ସାଜୀ ଗଗନୁ ଅକାସୁ ॥ ଜିନ ସଭ ଥାପୀ ଥାପି ଉଥାପି ॥
ସରବ ନିରନ୍ତର ଆପେ ଆପି ॥ କିସୈ ନ ପୂଛେ ବଖସେ ଆପି ॥ ୪ ॥

ଆସା ଅସଟପଦୀଆ

: ୩୯ :

ସଚ୍ଚା ଲୋକ ହିଁ ସ୍ୱାଭାବିକ ଭାବରେ ଅଧର୍ମ କର୍ମ କରିଚାଲେ, ଭ୍ରାନ୍ତ ଅନଭିଜ୍ଞ ଲୋକ ମୁକ୍ତି-ଭେଦର କଥା କି ଜାଣେ ? ସତ୍ୟ ଯାହାର ଚିତ୍ତରେ ପ୍ରତିଷ୍ଠିତ, ଯେ ଅନ୍ତରର ପଞ୍ଚକୁ ଧ୍ୱଂସ କରିପାରିଛି, ସେହି ହିଁ ସିନା ଯୋଗ-ମୁକ୍ତିର ମୂଲ୍ୟ ଜାଣିବ ? ଏପରି ଲୋକ ପକ୍ଷରେ ଘର ଓ ବନ ସମାନ, ଦିନ ଓ ରାତିର ଭେଦ-ଜ୍ଞାନ ସେ ହରାଇଥାଏ । ସେ ଲୋକ ସତ୍କର୍ମ ଓ ପ୍ରଭୁଙ୍କ ସ୍ତୁତିରେହିଁ ବରାବର ମଗ୍ନ ରହିଛନ୍ତି । ସତ୍ୟ ତାଙ୍କର ଜ୍ଞାନ, ଧ୍ୟାନ ଓ ମୁକ୍ତିକୁ ରଖିଥାଏ ସଦା ପ୍ରଜ୍ୱଳିତ । ସେ ସଂସାରୀ ଲୋକଙ୍କ ଭୟରେ ଘରୁ ବାହାରକୁ ନ ଯାଇ ପାରନ୍ତି; କାରଣ ନିତ୍ୟ ପ୍ରଭୁଠାରେ ଯେ ଲୀନ ହୋଇ ଯାଇଛି, ଏ ସଂସାର ତାର ମୂଲ୍ୟାଙ୍କନ କିପରି କରିବ ? କିନ୍ତୁ ସ୍ୱୟଂ ପ୍ରଭୁ ହିଁ ତାଙ୍କର ସକଳ ଭ୍ରମ ଦୂର କରିଦିଅନ୍ତି, ସେ ତାଙ୍କୁ ନିକେଇ ନିଜ ଆଡ଼କୁ ଟାଣି ଆଣନ୍ତି, ଏବଂ କେବଳ ଗୁରୁ ମାଧ୍ୟମରେ ହିଁ ଏ ପ୍ରକାର ପରମପଦ ମିଳିଥାଏ । ଗୁରୁଙ୍କ ଉପଦେଶର ବିଚାର ଓ ପାଳନ ହିଁ ଶ୍ରେଷ୍ଠ ଗୁରୁସେବା, ଅହଂ-ନାଶ ସର୍ବୋତ୍ତମ କର୍ମ, ନାନକ ଏହାହିଁ କହିବାକୁ ଚାହେଁ ଯେ, ଅସୀମ ପ୍ରଭୁଙ୍କଠାରେ ହିଁ ସଂପୂର୍ଣ୍ଣ ଭରସା ଓ ବିଶ୍ୱାସ ରଖ, ଏବଂ ତାହା ହିଁ ହେଉ ତମର ଜପ, ତପ, ସଂଯମ ଓ ପୁରାଣ ପାଠ ।

: ୪୦ :

ଶାସ୍ତ୍ର ଅସଂଖ୍ୟ, ସେ ସବୁ ଲେଖି ଲେଖି ଓ ପ୍ରଚାର କରି ମନରେ ଗର୍ବ ଆସିଯାଏ, ଯଦି କେବଳ ପ୍ରଭୁ-ଦର୍ଶନ ଆଶା, ତେବେ ବୁଦ୍ଧିକୁ ଆଗେ ସତ୍ୟମୟ କର । ଶାସ୍ତ୍ର ଅସଂଖ୍ୟ, ତେଣୁ ସେ ସବୁର କଥନ, ପଠନ ଦୁର୍ବହ କର୍ମ । ପୁଣି ଅଗଣିତ ଶାସ୍ତ୍ର ପଢ଼ିଲେ ହେଁ ଅଲେଖଙ୍କର ପାର କିଏ ଦେଖିପାରେ ? ଜାଣି ରଖ ଯେ ସତ୍ୟ ଏକ ଏବଂ ଜନ୍ମ-ମରଣ ଦେଇ ତାଙ୍କରି ଆଜ୍ଞା ହିଁ ପ୍ରଚଳିତ । ଏ ଜଗତ୍ ମାୟା-ମୋହରେ ବଶୀଭୂତ; ଯମ-ଦଣ୍ଡରେ ସମସ୍ତେ ବନ୍ଧା । ହେ ମନୁଷ୍ୟ, ଏ ବନ୍ଧନରୁ ସେ ମୁକ୍ତ କରି ପାରିବ, ସେହି ନାମକୁ ସ୍ମରଣ କର । ଗୁରୁ ହିଁ ସୁଖଦାତା, ଅନ୍ୟ-କେହି ତାହା ଦେଇପାରେ ବୋଲି ଖୋଜିବୁଥିନା । ଇହଲୋକ ଓ ପରଲୋକରେ କେବଳ ସେହି ଗୁରୂପଦେଶ ହିଁ ତୁମ ସାଥିରେ ଥିବ ଓ ଯିବ । ଶବ୍ଦଦ୍ୱାରା ଅହଂକୁ ଧ୍ୱଂସ କର, ଏବଂ ଅଦ୍ୱିତୀୟ ଏକଙ୍କଠାରେ ଲକ୍ଷ୍ୟ ସ୍ଥିର କର । ମନକୁ ସେହିପରି ଅଚଳ ରଖିପାରିଲେ ସକଳ ଭ୍ରମ ଓ ଅବିଶ୍ୱାସ ତୁଟିଯିବ । ମନରେ ନାମ ପ୍ରତିଷ୍ଠିତ ହୋଇଗଲେ, ଜୀବନମୁକ୍ତ ଲାଭ ହେବ । ନିଷ୍ଠାରେ ଗୁରୁପଦେଶ ପାଳିଲେ, ସତ୍ୟ ଆପେଆପେ ଆସିବ । ଯେ ଏହି ଧରଣୀ ଏ ଗଗନକୁ ସୃଷ୍ଟି କରିଛନ୍ତି, ସୃଷ୍ଟି କରିଛନ୍ତି ନିଖିଳ ବିଶ୍ୱକୁ ଏବଂ ସୃଷ୍ଟି କରି କରି ନିଜ ସୃଷ୍ଟିକୁ ଧ୍ୱଂସ କରିଥାନ୍ତି; ସେ ସ୍ୱୟଂଭୂ ଓ ଶାଶ୍ୱତ । କାହାକୁ କିଛି ନ ପଚାରି, ନିଜ ଇଚ୍ଛାନୁସାରେ ହିଁ ସେ ତୁମର ସକଳ ଦୋଷ କ୍ଷମା କରିପାରନ୍ତି ।

(୪୧୭)

: ୪୧ :

ଝୁଠେ କଉ ନାହୀ ପତ ନାଉ ॥ କବହୁ ନ ସୂଚୁ କାଲ କାଉ ॥
ପିଞ୍ଜର ପଂଖି ବଂଧିଆ କୋଇ ॥ ଛେଗ୍ରାଂ ଭଟ଼ମୈ ମୁକତ ନ ହୋଇ ॥
ତଉ ଛୁଟେ ଜା ଖସମୁ ଛଡ଼ାଏ ॥ ଗୁରମତ ମେଲେ ଭଗତ ଦ୍ରିଡ଼ାଏ ॥ ୭ ॥

ବଲ୍ବଲ ଥିତୀ

: ୪୨ :

ସପତମୀ ସତୁ ସଂତୋଖ ସରୀର ॥ ସାତ ସମୁଂଦ ଭରେ ନିରମଲ ନୀର ॥
ମଜନୁ ସୀଲୁ ସଚୁ ରିଦୈ ବୀଚାର ॥ ଗୁର କୈ ସବଦ ପାବୈ ସଭ ପାର ॥
ମନ ସାଚୁ ମୁଖି ସାଚଉ ଭାଇ ॥ ସଚୁ ନୀସାଣୈ ଠାକ ନ ପାଇ ॥ ୯ ॥

ବଲ୍ବଲ ଥିତୀ

: ୪୩ :

ଜୋତ ସବାଇଡ଼ୀଏ ଜିଭଵଣ ସାରେ ରାମ ॥ ଘଟି ଘଟି ରବ ରହିଆ ଅଲଖ ଅପାରେ ରାମ ॥
ଅଲଖ ଆପାର ଅପାରୁ ସାଚୁ ଆପୁ ମାର ମିଲାଈଐ ॥
ହଉମୈ ମମତା ଲୋଭୁ ଜାଲହୁ ସବଦ ମୈଲୁ ଚୁକାଈଐ ॥
ଦର ଜାଇ ଦରସନୁ କୀଆ ଭାଣୈ ତାର ତାରହାରିଆ ॥
ହର ନାମୁ ଅଂମ୍ରିତୁ ଚାଖି ତ୍ରିପତା ନାନକା ଉରଧାରିଆ ॥ ୪ ॥

ବଲ୍ବଲୁ ଛନ୍ତ ଦଖଣୀ

୪୪ :

ସଭନା ଧନୀ ସହୁ ବସୈ ସହ ଘଟୁ ନ କୋଇ ॥
ନାନକ ତେ ସୋହାଗଣୀ ଜିନ୍ହା ଗୁରମୁଖି ପରଗଟୁ ହୋଇ ॥ ୧୯ ॥

ସଲୋକ ବାରାଂ ତେ ବଧୀକ

: ୪୫ :

ଅଠୀଂ ପହରୀ ଜେ ଫିରାଁ ଦେଖାଁ ସଭୁ ଆକାରୁ ॥
ପୁଛା ଗିଆନୀ ପଂଡିତାଁ ପୁଛାଁ ବେଦ ବୀଚାର ॥
ପୁଛାଁ ଦେବାଁ ମାଣସାଁ ଜୋଧ କରହି ଅବତାର ॥
ସିଧ ସମାଧୀ ସଭ ସୁଣୀ ଜାଇ ଦେଖାଁ ଦରବାରୁ ॥
ଅଗୈ ସଚୁ ସଚ ନାଇ ନିରଭଉ ଭୈ ବିଣୁ ସାରୁ ॥
ହୋର କଚୀ ମତୀ କଚୁ ପିଚୁ ଅଂଧିଆ ଅଂଧୁ ବୀଚାରୁ ॥
ନାନକ କରମୀ ବଂଦଗୀ ନଦରି ଲଘାଏ ପାରୁ ॥ ୨ ॥

ବାର ସାରଙ୍ଗ ସଲୋକ ୨, ପଉଡ଼ୀ ୧୧

: ୪୧ :

ମିଥ୍ୟାଗ୍ରସ୍ତ ଜନ କେବେହେଲେ ନାମର ତତ୍ତ୍ୱ ଜାଣି ନ ପାରେ । କଳା କାଉ କ କେବେ ଶୁକ୍ଳ ହୋଇପାରେ ? ପକ୍ଷୀ ପିଞ୍ଜରାରେ ବନ୍ଦୀ ହୋଇ ଏପଟ-ସେପଟ ହେଉଛୁ; ମୁକ୍ତ ପାଇପାରୁନ । ସେ ସେତେବେଳେ ମୁକ୍ତ ହେବ, ଯେତେବେଳେ ତାର ପ୍ରଭୁ ତାକୁ ପିଞ୍ଜରାରୁ ଖୋଲି ଦେବ, ସଦ୍‌ଗୁରୂପଦେଶ ମିଳିଗଲେ ପ୍ରଭୁଙ୍କଠାରେ ଭକ୍ତି ଦୃଢ଼ ହୋଇରହିବ ।

: ୪୨ :

ସତ୍ୟ, ସନ୍ତୋଷରେ ନିଜର ଶରୀରକୁ ଯଦି ଭରିରଖ, ଧରିନିଅ ଯେ ସାତସମୁଦ୍ର ତମ ପାଇଁ ନିର୍ମଳ ନୀରରେ ଭରି-ରହିଛି । ଶୀଳରେ ହିଁ ନିଜକୁ ନିଷ୍କଳଙ୍କିତ କରିରଖ, ହୃଦୟରେ ସଦା ଗ୍ରଥିତ କରି ରଖ କେବଳ ସତ୍ୟର ବିଚାର, ଗୁରୂପଦେଶ ଦ୍ୱାରା ଯାହା ଜ୍ଞେୟ ତାହା ଜାଣି ରଖ । ମନ ତମର ସତ୍ୟମୟ ହେଉ, ସତ୍ୟମୟ ହେଉ ତୁମର ମୁଖ, ମସ୍ତକରେ ଦେଖାଯାଉ ସତ୍ୟର ମୋହର, କିଏ ତେବେ ତମର ଅଗ୍ରଗତିକ ରୋଧ କରିବ ?

: ୪୩ :

ତାଙ୍କର ଜ୍ୟୋତିହିଁ ତ୍ରିଭୁବନ ଧରି ପରିବ୍ୟାପ୍ତ ଅଲେଖ ଓ ଅପାର ହୋଇ ମଧ୍ୟ ସେ ଘଟେ ଘଟେ ବିରାଜିତ । ନିଜକୁ ଧ୍ୱଂସ କଲେ ଯାଇ, ତାଙ୍କ ସହ ମିଳନ ସମ୍ଭବ । ତେଣୁ ଅହଙ୍କାର, ମମତା ଓ ଲୋଭକୁ ପୋଡ଼ି ଜାଳି ଦିଅ, ମନ୍ତ୍ର-ଜପଦ୍ୱାରା ଚିତ୍ତରୁ ସକଳ ମଳକୁ ବିଦୂରିତ କର, ହେ ପ୍ରଭୁ ତାରଣକାରୀ ! ଆପଣଙ୍କ କୃପା ଦେଇ ହିଁ ମୋତେ ତାରଣ କର, ମତେ ତମର ମନ୍ଦିରଦ୍ୱାରେ ପହଞ୍ଚିବାକୁ ଦିଅ, ତମକୁ କିପରି ଟିକିଏ ଦର୍ଶନ କରେଁ; ନାନକଙ୍କର ବକ୍ଷରେ କେବଳ ସେହି ଭାବନା, ହରିନାମାମୃତ ପାନ ପରେ ତାର ମନ କେବଳ ସେଇଥିରେ ତୃପ୍ତି ପାଏ ।

: ୪୪ :

ସବୁ ଘଟରେ ସେହି ସ୍ୱାମୀ ଅଧିଷ୍ଠିତ, ସେହି ସ୍ୱାମୀଙ୍କ ଅଧିଷ୍ଠାନ ବିନା କୌଣସି ଘଟ ସମ୍ଭବ ନୁହେଁ । ନାନକଙ୍କର କଥନ ଏହିକି, ସେ ନିଶ୍ଚୟ ଏକ ସୌଭାଗ୍ୟବତୀ ନାରୀପରି ଗୁରୁଙ୍କ ଉପଦେଶ ଦେଇ, ଯାହାନିକଟରେ ସେହି ସ୍ୱାମୀ ନିଜକୁ ପ୍ରକଟିତ କରି ଦେଇଥାନ୍ତି ।

: ୪୫ :

ଆମେ ଆଖି ବୁଲେଇଲା ମାତ୍ରେ ଦେଖୁଁ ଅଗଣିତ ଆକାର, ହେ ମନୁଷ୍ୟ, ଜ୍ଞାନୀ ଓ ପଣ୍ଡିତ ଲୋକଙ୍କୁ ସେ ସବୁର ତାତ୍ପର୍ଯ୍ୟ ପଚାରି ତ । ପୁଣି ପଚାରି ମଧ୍ୟ ବେଦବିଦ୍‌ମାନଙ୍କୁ, ପଚାରି ସେହି ସେହି ବେଦ ଓ ମନୁଷ୍ୟମାନଙ୍କୁ, ଯେ ଯୋଦ୍ଧାମାନଙ୍କୁ ଅବତାର ବୋଲି ଧରିନିଅନ୍ତି । ପଚାରି ଭାଇ, ସିଦ୍ଧଯୋଗୀମାନଙ୍କୁ ସମାଧିର ସମ୍ବାଦ, ଯାହା ବଳରେ ତୁମେ ପ୍ରଭୁଙ୍କର ଦରବାରରେ ପହଞ୍ଚି ପାରିବ ଓ ତାଙ୍କୁ ଦେଖିପାରିବ । କିନ୍ତୁ ହେ ଭାଇ ! ସେଠାରେ ତୁମେ ଦେଖିବ ଯେ, ସେହିଠାରେ କେବଳ ସେହିମାନେ ଗୃହୀତ, ଯେଉଁମାନେ ସତ୍ୟନାମକୁ ନିଜ ଅନ୍ତରରେ ବସାଇ ରଖିଥିଲେ । ତେଣୁ, ହେ ଭାଇ, ସେହି ନିର୍ଭୟ ପୁରୁଷଙ୍କର ନାମକୁ ଜପ କର, ଯାହା ଫଳରେ ଭୟ ହୁଏ ପରାଜିତ ଏବଂ ଭୀତିଜାତ ଜନହିଁ ଏ ଜଗତରେ ସତ୍ୟ ଶ୍ରେଷ୍ଠ ପୁରୁଷ । ଯେ ନିଜେ ଅଜ୍ଞ, ତାର ବିଚାର ତ ଅନ୍ଧ ପରି ହେବ, ଉପଦେଶ ହେବ କଞ୍ଚା । ନାନକ ତେଣୁ କହେକି, କେବଳ ସତ୍କର୍ମ, ଭକ୍ତି ଓ ତାଙ୍କର କୃପାହିଁ ମନୁଷ୍ୟକୁ ଭବସାଗର ପାରି କରାଇପାରେ ।

## ଦ୍ୱିତୀୟ ଭାଗ

# ଜୀବନର ଲକ୍ଷ୍ୟ

ଜିନୀ ନାମୁ ଧିଆଇଆ, ଗଏ ମସକତି ଘାଲି ।
ନାନକ ତେ ମୁଖ ଉଜଲେ, କେତୀ ଛୁଟୀ ନାଲି ॥ ୧

ଜପୁ, ଅନ୍ତିମ ସଲୋକ

୧ । ଯେଉଁମାନେ ପରମାତ୍ମାଙ୍କଠାରେ ଚିତ୍ତକୁ ଲଗ୍ନ କରି, ଶ୍ରମପୂର୍ବକ ନିଜ କର୍ତ୍ତବ୍ୟ ନିର୍ବାହ କରିଥାନ୍ତି, ନାନକ କହନ୍ତି ଯେ, ସେମାନଙ୍କର ମୁଖ ଉଜ୍ଜ୍ୱଳ ଏବଂ ସେ କାରଣରୁ ଅନେକେ ଜୀବନ୍ମୁକ୍ତ ହୋଇଯାଇଥାନ୍ତି ।

ସମସ୍ତ ମାନବ-ଜାତି ପାଇଁ ମୁକ୍ତିର ମାର୍ଗ କେବଳ ଗୋଟିଏ ଅଛି ।

: ୪୬ :

ଦରସନ କୀ ପିଆସ ଜିସୁ ନର ହୋଇ ॥ ଏକତୁ ରାଚୈ ପରହରି ଦୋଇ ॥
ଦୂରି ଦରଦୁ ମଥି ଅଂମ୍ରିତୁ ଖାଇ ॥ ଗୁରମୁଖି ବୁଝୈ ଏକ ସମାଇ ॥ ୧ ॥
ତେରେ ଦରସନ କଉ କେତୀ ବିଲଲାଇ ॥
ବିରଲା କୋ ଚୀନସି ଗୁର ସବଦି ମିଲାଇ ॥ ୧ ॥ ରହାଉ ॥
ବେଦ ବଖାଣି କହହି ଇକୁ କହୀଐ ॥ ଓହୁ ବେଅଂତ ଅଂତୁ କିନି ଲହୀଐ ॥
ଏକୋ କରତା ଜିନି ଜଗୁ କୀଆ ॥ ବାଝୁ କଲା ଧରି ଗଗନୁ ଧରୀଆ ॥ ୨ ॥
ଏକୋ ଗିଆନୁ ଧିଆନୁ ଧୁନି ବାଣୀ ॥ ଏକୁ ନିରାଲମୁ ଅକଥ କହାଣୀ ॥
ଏକୋ ସବଦୁ ସଚୁ ନୀସାଣୁ ॥ ପୂରେ ଗୁର ତେ ଜାଣୈ ଜାଣୁ ॥ ୩ ॥
ଏକୋ ଧରମୁ ଦ୍ରିଡୈ ସଚୁ କୋଈ ॥ ଗୁରମତି ପୂରା ଜୁଗି ଜୁଗି ସୋଈ ॥
ଅନହଦି ରାତା ଏକ ଲିବ ତାର ॥ ଓହୁ ଗୁରମୁଖି ପାବୈ ଅଲଖ ଅପାର ॥ ୪ ॥
ଏକୋ ତଖତୁ ଏକୋ ପାତିସାହୁ ॥ ସରବୀ ଥାଈ ବେପରବାହୁ ॥
ତିସ କା କୀଆ ତ୍ରିଭବଣ ସାରୁ ॥ ଓହୁ ଅଗମୁ ଅଗୋଚରୁ ଏକଂକାରୁ ॥ ୫ ॥
ଏକା ମୂରତି ସାଚା ନାଉ ॥ ତିଥୈ ନିବଡୈ ସାଚୁ ନିଆଉ ॥
ସାଚୀ କରଣୀ ପତି ପରବାଣୁ ॥ ସାଚୀ ଦରଗହ ପାବୈ ମାଣୁ ॥ ୬ ॥
ଏକା ଭଗତି ଏକୋ ହୈ ଭାଉ ॥ ବିନୁ ଭୈ ଭଗତୀ ଆବଉ ଜାଉ ॥
ଗୁର ତେ ସମଝି ରହୈ ମିହମାଣୁ ॥ ହରି ରସି ରାତା ଜନୁ ପରବାଣୁ ॥ ୭ ॥
ଇତ ଉତ ଦେଖଉ ସହଜେ ରାବଉ ॥ ତୁଝ ବିନୁ ଠାକୁର କିସୈ ନ ଭାବଉ ॥
ନାନକ ହଉମୈ ସବଦି ଜଲାଇଆ ॥ ସତିଗୁରି ସାଚା ଦରସୁ ଦିଖାଇଆ ॥ ୮ ॥ ୩ ॥

ବସନ୍ତୁ ଅସଟପଦୀଆ

: ୪୭ :

ବଦଫୈଲୀ ଗୈବାନା ଖସମୁ ନ ଜାଣଈ ॥ ସୋ କହୀଐ ଦେବାନା ଆପୁ ନ ପଛାଣଈ ॥
କଲହି ବୁରୀ ସଂସାରି ବାଦେ ଖପୀଐ ॥ ବିଣୁ ନାବୈ ବେକାରି ଭରମେ ପଚୀଐ ॥
ରାହ ଦୋବୈ ଇକୁ ଜାଣୈ ସୋଈ ସିଝସୀ ॥ କୁଫର ଗୋଅ କୁଫରାଣୈ ପଇଆ ଦଝସୀ ॥
ସଭ ଦୁନୀଆ ସୁବହାନୁ ସଚି ସମାଈଐ ॥ ସିଝୈ ଦରି ଦୀବାନି ଆପୁ ଗବାଈଐ ॥ ୯ ॥

ବାର ମାଝ ପଉଡ଼ୀ ୯

: ୪୬ :

ଯିଏ ତାଙ୍କର ଦର୍ଶନ ପାଇଁ ପିପାସୀ, ସେ ଦ୍ୱିତୀୟ କାହାରିକୁ ପ୍ରେମ ନକରି କେବଳ ସେହି ଏକକଙ୍କୁ ହିଁ ପ୍ରେମ କରିବା ଉଚିତ । ଦୁଃଖ ଦୁର୍ଦ୍ଦଶାର ମନ୍ଥନ ପରେ ଯେ ସେହି ଶାନ୍ତିର ଅମୃତପାନ କରେ, ତାହାର ଜୀବନର ସବୁ ଦରିଦ୍ର କଟିଯାଏ । ଯେ ସଦ୍‌ଗୁରୁ ଦୀକ୍ଷିତ, ସେ ସେହି ଏକକଦ୍ୱାରା ହିଁ ସଦା ଆବୃତ ରହନ୍ତି, ଅଥଚ ଅନ୍ୟେ ତାଙ୍କର ଦର୍ଶନପାଇଁ ବୃଥା ବିଳାପ କରି ଚାଲିଥାନ୍ତି । କେବଳ ଗୁରୁପଦେଶ ନିଷ୍ଠାସହ ଅନୁସରଣ କରି ପ୍ରଭୁଙ୍କ ସାକ୍ଷାତ ଯେ ମିଳେ ଏକଥା ଭଲଭାବେ ହୃଦୟଙ୍ଗମ କରିବା ଲୋକ ଏ ସଂସାରରେ ବିରଳ । ସମସ୍ତ ବେଦ ଘୋଷଣା କରେ ଯେ ସେ ଏକ, ତେଣୁ ସେହି ଏକକଙ୍କୁ ହିଁ କେବଳ ଭଜନ କର । ସେ ଅନନ୍ତ, ତାଙ୍କର ଅନ୍ତ ମୁଁ ବା ଜାଣିବି କିପରି ? କେବଳ ଏତିକି ମୁଁ ଜାଣେ ଯେ, ଏ ଜଗତକୁ ଯେ ରଚନା କରିଛନ୍ତି ସେ କର୍ତ୍ତା କେବଳ ଜଣେ । ତାଙ୍କ ଆଜ୍ଞାରେ ନିରାଧାର ହୋଇ ମଧ୍ୟ ଧରିତ୍ରୀ ଓ ଆକାଶ ଅବସ୍ଥିତ । ଏକ ହେଉଛି ଜ୍ଞାନ, ଧ୍ୟାନ, ଧ୍ୱନି, ବାଣୀ—କେବଳ ତାଙ୍କର କେବଳ ଏକକ ସେହି ନିରବଲମ୍ବ ସ୍ୱରୂପ ନିଖିଳ ବିଶ୍ୱରେ ପରିବ୍ୟାପ୍ତ, ତାଙ୍କର ଚରିତ୍ର ସତ୍ୟରେ ଅକଥନୀୟ । ପୂର୍ଣ୍ଣଗୁରୁଙ୍କର ଆଶ୍ରୟନେଇ ସେହି ରହସ୍ୟମୟ ଏକକଂକୁ ଜାଣିବାକୁ ଚେଷ୍ଟାକର । ସତ୍ୟ ହିଁ ସେହି ଏକକଙ୍କର ଏ ଜଗତରେ ଏକମାତ୍ର ସତ୍ୟ ନିଶାଣ । ତେଣୁ, ସତ୍ୟ ଉପରେ ହିଁ ନିଜକୁ ଦୃଢ଼ ରଖିବା ସମସ୍ତଙ୍କର ଏକମାତ୍ର ଧର୍ମ, ସକଳ ଯୁଗରେ ସତ୍ୟଗୁରୁଙ୍କ ବାଣୀ ମଧ୍ୟ ଏହି ଯେ, ଏ ସୃଷ୍ଟିରେ ସେହି ହିଁ କେବଳ ଏକମାତ୍ର ପୂର୍ଣ୍ଣ ବସ୍ତୁ । ଅନାହତକୁ ନିଷ୍ଠାର ସହିତ ଆଶ୍ରୟ କରି, ଯିଏ ଅତଳରେ ନିଜକୁ ଲୀନ କରି ପାରେ, ସେହି ଗୁରମୁଖୀ ସାଧକ ହିଁ ଜାଣିପାରେ ଅଲେଖ ଓ ଅପାରଙ୍କୁ । ଏ ସୃଷ୍ଟିରେ ରାଜସିଂହାସନ କେବଳ ଗୋଟିଏ ଏବଂ ରାଜା ମଧ୍ୟ ଏକ,—ଦୁଇ ନୁହେଁ, ସର୍ବସ୍ଥାନରେ ସେହି ଏକ ହିଁ ବେପରବାରେ ବିରାଜିତ । ସେହି ଏକହିଁ ଏହି ତ୍ରିଭୁବନ ରଚନା କରିଛନ୍ତି । ଏବଂ ସେହିହିଁ ପୁଣି ତ୍ରିଭୁବନରେ ଧ୍ୱନିତ ଅଗମ୍ୟ ଅଗୋଚର ଏକ ଓଁକାର । ସତ୍ୟନାମ ହିଁ ତାଙ୍କର ଏକମାତ୍ର ମୂର୍ତ୍ତି ଏବଂ ତାଙ୍କ ସମ୍ମୁଖରେ ନିର୍ଭୟରେ ଠିଆହୋଇ ପାରିବେ କେବଳ ସେହି ଯାହାଙ୍କ କର୍ମରେ ଥିବ ସଦ୍‌ନ୍ୟାୟ । ପ୍ରଭୁଙ୍କ ଧାମରେ କେବଳ ସତ୍ୟମୟ କର୍ମ ଓ ବିଶ୍ୱାସର ନିଷ୍ଠା ସମ୍ମାନିତ ହୋଇଥାଏ, ସତ୍ୟର ଦରବାରରେ କେବଳ ସେହିପ୍ରକାର ସାଧକ ହିଁ ମାନ୍ୟତା ଲାଭ କରିଥାନ୍ତି । ତେଣୁ ସେହି ଏକକଙ୍କୁ ହିଁ ଭାବ ଓ ଭକ୍ତି ଦିଅ, ନିଷ୍ଠାପର ଭକ୍ତ ଭୟବିନା ତମର ଜନ୍ମମୃତ୍ୟୁ ଦେଇ ଯିବା ଆସିବା କେବେହେଲେ କଟିବ ନାହିଁ । କେବଳ ସେହିପରି ସଜ୍ଜନହିଁ ସମାଜରେ ସ୍ୱୀକାର୍ଯ୍ୟ ହେବେ, ଯେ ଗୁରୂପଦିଷ୍ଟ, ଯେ ଅତିଥିଙ୍କପ୍ରତି ସଶ୍ରଦ୍ଧ ଓ ଯେ ହରିରସରେ ମସ୍ତ । ତୁମେ ପ୍ରଭୁ, ସହଜରେ ଲବ୍‌ଧହେବା ସ୍ଥଳେ ଆମେ ବୃଥାରେ ଏଣେ ତେଣେ ଦଉଡ଼ ଧାପଡ଼ କରି ଚାଲୁ । ତୁମ ବିନା ପ୍ରଭୁ ମୋର ଦ୍ୱିତୀୟ ପ୍ରେମ କେଉଁଠି ନରହୁ । ନାନକ କହେ ଯେ ସତ୍‌ଶବ୍ଦ ଜପକରି ମୋର ଅହଙ୍କାର ବିଲୁପ୍ତ ହୋଇଛି ଏବଂ ସଦ୍‌ଗୁରୁ ମତେ ସତ୍ୟର ଦର୍ଶନ କରାଇ ଦେଇଛନ୍ତି । (୧୧୮୮—୮୯)

: ୪୭ :

ଯେଉଁ ମନ୍ଦଭାଗ୍ୟ ଲୋକ ସର୍ବଦା ଲୁଚାଇ ଚୋରାଇ ମନ୍ଦ କାମ କରିବାରେ ଅଭ୍ୟସ୍ତ ସେ ସତ୍ୟମୟ ପ୍ରଭୁଙ୍କୁ ଜାଣିବ କିପରି ? ଯେଉଁମାନେ ନିଜକୁ ଚିହ୍ନି ନାହାନ୍ତି, ସେମାନେ ନିଶ୍ଚୟ ପାଗଳ । ଏହି କଳହପୂର୍ଣ୍ଣ ମନ୍ଦମୟ ସଂସାରରେ ଆମେ ବୃଥାରେ ନାନା ବିବାଦରେ ନିଜକୁ ନଷ୍ଟ କରୁଛେ । ଏବଂ ହରିନାମରେ ନମ୍ର ତ ଭ୍ରମରେ ବୃଥା ଏପଟ-ସେପଟ ହେଉଛେ ? ଦୁଇ ରାସ୍ତା ଭିତରୁ ଯେଉଁ ଲୋକ ଠିକ୍ ଏକ ରାସ୍ତାକୁ ବାଛିନିଏ ସେହିଲୋକ ହିଁ ଜୀବନରେ ସଫଳତା ଲାଭ କରିଥାଏ । ଯେ କାଫେର (ଅବିଶ୍ୱାସୀ, ନାସ୍ତିକ) ର କଥାରେ ଚାଲେ ସେ ମୃତ୍ୟୁପରେ କାଫେରାଗ୍ନିରେ ଜଳେ । ଅଥଚ ଯେ ସତ୍ୟଂଲୀନ ହୋଇପାରେ ସମଗ୍ର ଜଗତର ସେ ହୋଇଉଠେ ସ୍ତୁତ୍ୟ, ଯେତେବେଳେ ଅହଂର ସମୂଳ ବିନାଶ ଘଟେ ସେତେବେଳେ ଜୀବନର ସକଳ ସାଫଲ୍ୟ ମିଳିଯାଏ ସ୍ୱୟଂ ପ୍ରଭୁଙ୍କ ଚରଣ-ପ୍ରାନ୍ତରେ । (୧୪୨)

: ୪୮ :

ସୋ ବ୍ରହ୍ମଣୁ ଜୋ ବିଂଦୈ ବ୍ରହ୍ମୁ ॥ ଜପୁ ତପୁ ସଂଜମୁ କମାବୈ କରମୁ ॥
ସୀଲ ସଂତୋଖ କା ରଖୈ ଧରମୁ ॥ ବନ୍ଧନ ତୋଡୈ ହୋବୈ ମୁକତୁ ॥
ସୋଈ ବ୍ରହ୍ମଣୁ ପୂଜଣ ଜୁଗତୁ ॥ ୧୬ ॥

ସଲୋକ ବାରାଂ ତେ ବଧୀକ

: ୪୯ :

ଖତ୍ରୀ ସୋ ଜୁ କରମା କା ସୂରୁ ॥ ପୁଂନ ଦାନ କା କରୈ ସରୀରୁ ॥
ଖେତୁ ପଛାଣୈ ବୀଜୈ ଦାନୁ ॥ ସୋ ଖତ୍ରୀ ଦରଗହ ପରବାଣୁ ॥
ଲବୁ ଲୋଭୁ ଜେ କୂଡୁ କମାବୈ ॥ ଅପଣା କୀତା ଆପେ ପାବୈ ॥ ୧୭ ॥

ସଲୋକ ବାରାଂ ତେ ବଧୀକ

: ୫୦ :

କାଇଆ କାଗଦୁ ମନୁ ପରବାଣା ॥ ସିର କେ ଲେଖ ନ ପଢୈ ଇଆଣା ॥
ଦରଗହ ଘଡୀଅହି ତୀନେ ଲେଖ ॥ ଖୋଟା କାମି ନ ଆବୈ ଵେଖୁ ॥ ୧ ॥
ନାନକ ଜେ ବିଚି ରୁପା ହୋଇ ॥ ଖରା ଖରା ଆଖୈ ସଭୁ କୋଇ ॥ ରହାଉ ॥
କାଦୀ କୂଡୁ ବୋଲି ମଲୁ ଖାଇ ॥ ବ୍ରାହ୍ମଣୁ ନାବୈ ଜୀଆ ଘାଇ ॥
ଜୋଗୀ ଜୁଗତି ନ ଜାଣୈ ଅନ୍ଧୁ ॥ ତୀନେ ଓଜାଡେ କା ବଂଧୁ ॥ ୨ ॥
ସୋ ଜୋଗୀ ଜୋ ଜୁଗତି ପଛାଣୈ ॥ ଗୁରୁ ପରସାଦୀ ଏକୋ ଜାଣୈ ॥
କାଜୀ ସୋ ଜୋ ଉଲଟୀ କରୈ ॥ ଗୁର ପରସାଦୀ ଜୀବତୁ ମରୈ ॥
ସୋ ବ୍ରାହ୍ମଣୁ ଜୋ ବ୍ରହ୍ମୁ ବୀଚାରୈ ॥ ଆପି ତରୈ ସଗଲେ କୁଲ ତାରୈ ॥ ୩ ॥
ଦାନସବଂଦୁ ସୋଈ ଦିଲ ଧୋବୈ ॥ ମୁସଲମାଣୁ ସୋଈ ମଲୁ ଖୋବୈ ॥
ପଢିଆ ବୂଝୈ ସୋ ପରବାଣୁ ॥ ଜିସୁ ସିରି ଦରଗହ କା ନୀସାଣୁ ॥ ୪ ॥ ୫ ॥ ୭ ॥

ଧନାସରୀ

## ସବୁ ମାନବ ସମାନ ଅଟନ୍ତି ।

: ୫୧ :

ସଭୁ କୋ ଊଚା ଆଖୀଐ ନୀଚୁ ନ ଦୀସୈ କୋଇ ॥
ଇକନୈ ଭାଂଡେ ସାଜିଐ ଇକୁ ଚାନଣୁ ତିହୁ ଲୋଇ ॥
କରମି ମିଲୈ ସଚୁ ପାଈଐ ଧୁରି ବଖସ ନ ମେଟୈ କୋଇ ॥ ୭ ॥

ସିରୀ ରାଗୁ, ଅସଟପଦୀଆ

: ୪୮ :

ଯେ ବ୍ରହ୍ମଜ୍ଞାନୀ, ସେହି ହିଁ ପ୍ରକୃତ ବ୍ରାହ୍ମଣ, ଯାହାଙ୍କର ଦୈନନ୍ଦିନ କର୍ମ କେବଳ ଜପ-ତପ-ସଂଯମାଦି କର୍ମ, ଶୀଳ ଓ ସନ୍ତୋଷହିଁ ତାହାଙ୍କର ପ୍ରକୃତ ଧର୍ମ। ସେ କେବଳ ସେହି ସବୁକୁ ଆଶ୍ରା କରିହିଁ ସହଜରେ ବନ୍ଧନ ଖଣ୍ଡି ମୁକ୍ତ ହୋଇଯିବେ । ଏହି ପ୍ରକାର ବ୍ରାହ୍ମଣ ସର୍ବଦା ପୂଜନୀୟ ।

: ୪୯ :

ଯେ କର୍ମବୀର ସେହି ହିଁ ପ୍ରକୃତ କ୍ଷତ୍ରିୟ, ପ୍ରକୃତ କ୍ଷତ୍ରିୟ ପୁଣି ପୁଣ୍ୟଦାନର ପ୍ରତିମୂର୍ତ୍ତି । କିନ୍ତୁ, ଯଥାର୍ଥ କ୍ଷେତ୍ରରେ ସେ ଅଯାଚିତ ଭାବରେ ଦାନର ବୀଜ ବପନ କରନ୍ତି, ସେହିପରି କ୍ଷତ୍ରିୟ ହିଁ ପ୍ରଭୁଚରଣରେ ସର୍ବଦା ସ୍ୱୀକାର୍ଯ୍ୟ । କିନ୍ତୁ ଯେଉଁ କ୍ଷତ୍ରିୟ ଅଯଥା ଅଭିଳାଷ, ଲୋଭ ଓ ଅସତ୍ୟରେ ମାତି ରହନ୍ତି, ସେ ସେସବୁର ସେହିପ୍ରକାର ପରିଣାମ ଭୋଗିଥାନ୍ତି ।

: ୫୦ :

ଆମର ଏହି କାୟା କାଗଜ ଓ ମନ ପରଓ୍ୱାନା ଏବଂ ତାହା ଆମ ସମସ୍ତଙ୍କର କପାଳରେ ମସ୍ତହୋଇ ରହିଛି, ଅଥଚ ମୂର୍ଖ ତାକୁ କେବେ ସାବଧାନ ହୋଇ ପଢ଼େନା । ସେହି ଲେଖା ଆସିଥାଏ ପ୍ରଭୁଙ୍କ ଚରଣରୁ ଯେଉଁଠି କୌଣସି ଖାଦ-ଟଙ୍କା ଆଦୌ ଚଳିବ ନାହିଁ । ନାନକ କହେ ଯେ, ଟଙ୍କା ଯଦି ଖାଣ୍ଟି ରୂପାରେ ତିଆରି, ତେବେ ସମସ୍ତେହିଁ ଡାକଦେବେ 'ଖାଣ୍ଟି ଖାଣ୍ଟି' ବୋଲି । କିନ୍ତୁ କାଜୀ ମିଥ୍ୟା କଥା କହି ମଳ-ଭକ୍ଷଣ କରୁଛି, ବ୍ରାହ୍ମଣ ଜୀବହତ୍ୟା ରୂପକ ନିଷ୍ଠୁର କର୍ମ କରି ସ୍ନାନରେ ତାହା ଧୋଇ ହୋଇଗଲା ବୋଲି ଭାବୁଛି । ଯୋଗୀ ବୋଲାଉଥିବା ବହୁ ବ୍ୟକ୍ତି ମଧ୍ୟ ଅଛନ୍ତି ଅନ୍ଧ, ଯାହାକୁହିଁ ସଦ୍‌ଯୁକ୍ତି ଜଣାନାହିଁ । ଏ ତିନିହେଁ ହେଲେ ସମାଜ-ଧ୍ୱଂସର ଏକ ଏକ ଦୃଢ଼ବନ୍ଧ । ଅନ୍ୟ ପକ୍ଷରେ ସେହି ପ୍ରକୃତ ଯୋଗୀ ଯେ ଯୋଗ-ଯୁକ୍ତି ଜାଣେ, ଏବଂ ଗୁରୁପଦସ୍ଥ ହୋଇ କେବଳ ଏକର ଭଜନ କରେ । ପ୍ରକୃତ କାଜୀ ସେହି ଯେ ବିଷୟାସକ୍ତିରୁ ନିଜକୁ ଓଟାରି ଆଣିପାରିଛି, ଏବଂ ଗୁରୁପ୍ରସାଦରୁ ଜୀବିତ ଥାଇ ମଧ୍ୟ ବିଷୟସ୍ୱାଦ ଲାଗି ମୃତ ବୋଲି ଅନୁଭବ କରେ । ସେହିହିଁ ପ୍ରକୃତ ବ୍ରାହ୍ମଣ ଯେ କେବଳ ବ୍ରହ୍ମ-ବିଚାରରେ ବ୍ୟସ୍ତ । ଏପରି ବ୍ରାହ୍ମଣ ନିଜେ ତ ଭବ-ସାଗର ପାରି ହୁଏ, ତା ଯୋଗୁଁ ତାର ସମଗ୍ର କୁଳ ମଧ୍ୟ ଉଦ୍ଧାର ପାଆନ୍ତି । ତାକୁଇ କୁହାଯିବ ଯେ ଆମର ଚିତ୍ତକୁ ଧୋଇ ନିର୍ମଳ କରିପାରେ, ସେହି ପୁଣି ପ୍ରକୃତ ମୁସଲମାନ, ଯେ ନିଜକୁ ସବୁପ୍ରକାର ଦୁଷ୍କୃତିର ମଳଠାରୁ ଦୂରରେ ରଖିଥାଏ । ଯେ ପଠିତ ବସ୍ତୁର ମର୍ମ ଜାଣେ, ତାକୁଇ କୁହାଯିବ ପ୍ରକୃତ ପାଠୁଆ, ତାର କପାଳରେ ପ୍ରଭୁଙ୍କ ଚରଣ-ଚିହ୍ନ ସ୍ପଷ୍ଟ ଅଙ୍କିତ ରହିଥାଏ ।

(୬୨୨)

: ୫୧ :

ଏ ଜଗତରେ ନୀଚ କିଏ ମୁଁ ଦେଖି ପାରୁନାହିଁ; ତେଣୁ ସଭିଂକୁ ଉଚ୍ଚ ବୋଲିହିଁ ଭାବେ ଓ ବ୍ୟବହାର କରେ, ସେହି ଏକକ ରୂପକ ଉପାଦାନରେ ହିଁ ସକଳ ପାତ୍ର ଗଢ଼ା, ସମଗ୍ର ତ୍ରିଭୁବନରେ କେବଳ ସେହି ଏକକହିଁ ପ୍ରକାଶିତ । କେବଳ ତାଙ୍କର କୃପାରେ ହିଁ ସତ୍ୟ ପ୍ରାପ୍ତ ହୋଇଥାଏ । ସେ କୃପା ଅନ୍ୟ କେହି ଦେଇ ନ ପାରେ ।

(୨୨)

: ୫୨ :

ଫକଡ଼ ଜାତୀ ଫକଡ଼ୁ ନାଉ ॥ ସଭନା ଜୀଆ ଇକା ଛାଉ ॥
ଆପହୁ ଜେ କୋ ଭଲା କହାଏ ॥ ନାନକ ତାପରୁ ଜାପୈ ଜା ପତି ଲେଖୈ ପାଏ ॥ ୧ ॥

ବାର ସିରୀ ରାଗୁ, ସଲୋକ ୧, ପଉଡ଼ୀ ୩

: ୫୩ :

ଜାତୀ ଦୈ କିଆ ହଥି ସଚୁ ପରଖୀଐ ॥ ମହୁରା ହୋଵୈ ହଥି ମରୀଐ ଚଖୀଐ ॥
ସଚେ କୀ ସିରକାର ଜୁଗୁ ଜୁଗୁ ଜାଣୀଐ ॥ ହୁକମୁ ମଂନେ ସିରଦାର ଦରି ଦୀବାଣୀଐ ॥
ଫୁରମାନୀ ହୈ କାର ଖସମି ପଠାଇଆ ॥ ତବଲବାଜ ବୀଚାର ସବଦି ସୁଣାଇଆ ॥
ଇକି ହୋଏ ଅସବାର ଇକନା ସାଖତୀ ॥ ଇକନୀ ବଧେ ଭାର ଇକନା ତାଖତୀ ॥ ୧୦ ॥

ବାର ମାଝ ପଉଡ଼ୀ ୧୦

## ପରମାତ୍ମାଙ୍କ ସହିତ ମିଳନର ଉଚିତ ପନ୍ଥା

: ୫୪ :

ମୁଂଦା ସଂତୋଖୁ ସରମୁ ପତୁ ଝୋଲୀ ଧିଆନ କୀ କରହି ବିଭୂତି ॥
ଖିଂଥା କାଲୁ କୁଆରୀ କାଇଆ ଜୁଗତି ଡଂଡା ପରତୀତି ॥
ଆଈ ପଂଥୀ ସଗଲ ଜମାତୀ ମନି ଜୀତୈ ଜଗୁ ଜୀତୁ ॥
ଆଦେସୁ ତିସୈ ଆଦେସୁ ॥ ଆଦି ଅନୀଲୁ ଅନାଦି ଅନାହତି ଜୁଗୁ ଜୁଗୁ ଏକୋ ଵେସୁ ॥ ୨୮ ॥

ଜପୁ ପଉଡ଼ୀ ୨୮

: ୫୫ :

ମରଣୈ କୀ ଚିନ୍ତା ନହୀ ଜୀବଣ କୀ ନହୀ ଆସ ॥
ତୂ ସରବ ଜୀଆ ପ୍ରତିପାଲହୀ ଲେଖୈ ସାସ ଗିରାସ ॥
ଅଂତରି ଗୁରମୁଖି ତୂ ବସହି ଜିଉ ଭାବୈ ତିଉ ନିରଜାସି ॥ ୧ ॥
ଜୀଅରେ ରାମ ଜପତ ମନୁ ମାନୁ ॥
ଅଂତରି ଲାଗୀ ଜଲି ବୁଝୀ ପାଇଆ ଗୁରମୁଖି ଗିଆନୁ ॥ ୧ ॥ ରହାଉ ॥
ଅଂତର କୀ ଗତି ଜାଣୀଐ ଗୁର ମିଲୀଐ ସଂକ ଉତାରି ॥
ମୁଇଆ ଜିତୁ ଘରି ଜାଈଐ ତିତୁ ଜୀଵଦିଆ ମରୁ ମାରି ॥
ଅନହଦ ସବଦି ସୁହାବଣେ ପାଈଐ ଗୁର ବୀଚାରି ॥ ୨ ॥

: ୫୨ :

ଜାତି-ଅଭିମାନ ଏକାନ୍ତ ଅର୍ଥହୀନ, ଅର୍ଥହୀନ ତମର ଜାତ୍ୟାଭିମାନ । ସକଳ ଜୀବ ଏକସ୍ରଷ୍ଟାଦ୍ୱାରା ଆବୃତ । ତେଣୁ ନିଜକୁ ଉତ୍ତମ ବୋଲି ପରିଚିତ କରାଇବାକୁ ଯଦି ଚାହଁ ତେବେ ଜାଣି ରଖ ଯେ, ମନୁଷ୍ୟର ଉତ୍ତମତାର ଏକମାତ୍ର ପରୀକ୍ଷା ହେଲା, ପ୍ରଭୁଙ୍କ ଶ୍ରୀଚରଣରେ ଆନ୍ତରିକ ପ୍ରେମ । ( ୮୩ )

: ୫୩ :

ଜାତି ଉପରେ ଏତେ ନିର୍ଭର କରୁଛ କିଆଁ ? ସତ୍ୟର ପରୀକ୍ଷା ଉପରେ ବ୍ୟକ୍ତିତ୍ୱ ନିର୍ଭର କରିବ, ଯିଏ ବିଷ ଖାଏ ତାର ମୃତ୍ୟୁ ତ ନିଶ୍ଚିତ । ସତ୍ୟ ପ୍ରଭୁଙ୍କ ଆଜ୍ଞା ପ୍ରତି ଯୁଗରେ ପ୍ରଚଳିତ; ଯେଉଁମାନେ ସେ ଆଜ୍ଞା ପାଳି ଚଳନ୍ତି ସେମାନେ ପ୍ରଭୁଙ୍କ ଦରବାରରେ ସର୍ଦ୍ଦାରର ସମ୍ମାନ ପାଆନ୍ତି । ସ୍ୱାମୀଙ୍କର ସେହି ଆଜ୍ଞାନୁସାରେ କାର୍ଯ୍ୟ ଦେଖିବାପାଇଁ ହିଁ ସ୍ୱାମୀ ମୋତେ ପଠାଇଛନ୍ତି । ହାଡ଼ି-ପାଣିଆ ନୀଚ ଲୋକଙ୍କୁ ମଧ୍ୟ ମୁଁ ସ୍ୱାମୀଙ୍କ ଆଜ୍ଞାକୁ ବିସ୍ତର ସହିତ ବୁଝାଇ ଦେଇଛି । ସେମାନଙ୍କ ଭିତରୁ କେତେକ ପଥ-ଯାତ୍ରା କଲେ ଘୋଡ଼ାରେ ବସି, କେହି ଜୀନ୍ ବାନ୍ଧି ଠିଆ ହେଲେ, କେହି ଠିଆ ହେଲେ ନିଜ ନିଜର ବୋଝ ଲଦି, କେତେକ ବି ପଳାଇ ଗଲେ ।

( ୧୪୨ )

: ୫୪ :

ହେ ସାଧକ, ତୁମର ବଦନ-ମଣ୍ଡଳରେ ସନ୍ତୋଷର ଚିହ୍ନ ଫୁଟିଉଠୁ । ତୁମ କାନ୍ଧରେ କେବଳ ଶ୍ରମର ଝୁଲି ଓ ତୁମ ହସ୍ତରେ ଭିକ୍ଷାର ଖପର ହିଁ ଶୋଭାପାଉ । ଦେହଯାକ କେବଳ ଧ୍ୟାନର ବିଭୂତି ଲେପି ହୁଅ; କାଳର କନ୍ଥା, କୁଆଁରୀ କାୟାର ମୁଦ୍ରା ଓ ବିଶ୍ୱାସର ଦଣ୍ଡ ଧାରଣ କର । ବଂଚିବାର ଶ୍ରେଷ୍ଠ ପଥ ଏହି ଯେ, ସର୍ବଦା ମନେ ରଖିବ, ଅନ୍ୟ ସକଳେ ଠିକ୍ ତୁମରି ପରି । ଯେ ମନକୁ ଜୟ କରେ, ସେହି କେବଳ ଜଗତକୁ ଜିଣେ । ଏହାହିଁ ତାଙ୍କର ଆଦେଶ ଓ ନିର୍ଦ୍ଦେଶ, ଯେ ଆଦି ଓ ଅନାଦି ଏବଂ ଯେ ଅନାହତ ଓ ଯୁଗ ଯୁଗ ଧରି ଅପରିବର୍ତ୍ତିତ । ( ୭ )

: ୫୫ :

ମରିବାକୁ ମୋର ଚିନ୍ତା ନାହିଁ, ଜିଇଁବାକୁ ମଧ୍ୟ ଆକାଂକ୍ଷା ନାହିଁ, ହେ ପ୍ରଭୁ, ତୁମେ ହିଁ ସକଳ ଜୀବର ପ୍ରତିପାଳକ । ସେମାନଙ୍କର ଶ୍ୱାସ ଓ ବାସର ହିସାବ ଏକା ତୁମକୁ ହିଁ ଜଣା । ଗୁରୁପଦେଷ୍ଟାର ଅନ୍ତରରେ ତୁମେ ହିଁ ପ୍ରତିଷ୍ଠିତ ରହି ତୁମ ନିଜ ଇଚ୍ଛାରେ ତାକୁ ପରିଚାଳିତ କରିଥାଅ । ସେହି ନିର୍ଦ୍ଦେଶକୁ ମାନି, ରାମ ଶବ୍ଦ ଜପ କରି ଚାଲିଲେ ହିଁ ଚିତ୍ତରେ ଶାନ୍ତି ଆସେ ଏବଂ ଏହିପରି ଭାବରେ ଗୁରୁମୁଖରୁ ଯେଉଁ ଜ୍ଞାନ ମିଳେ, ସେଇଥିରେ ହିଁ ଅନ୍ତରର ଜ୍ୱାଳା ନିର୍ବାପିତ ହୁଏ । ଏପରି ଗୁରୁଙ୍କ ସହିତ ନିଃଶଙ୍କ ମିଳନ ହେଲେ, ଅନ୍ତରର ଗତି ଜଣାଯିବ ଓ ନିଜର ହେବ । ହେ ମନୁଷ୍ୟ, ମୃତ୍ୟୁ ପରେ ତୁମକୁ ଯମଘର ଯିବାକୁ ହେବ, କିନ୍ତୁ ମୁଁ କହେ ଜୀବିତରେ ହିଁ ( ସଂସାରପ୍ରତି ) ମର, ଏବଂ ସେହି ମୃତ୍ୟୁ ଦେଇ ଯମର ଘରକୁ ଆଗରୁ ଧ୍ୱଂସ କର । ଗୁରୁର ବିସ୍ତର ଦେଇହିଁ ତମେ ମନୋଜ୍ଞ ଅନାହତ ଶବ୍ଦ-ବ୍ରହ୍ମକୁ ଲାଭ କରିବ ।

ଅନହଦ ବାଣୀ ପାଈଐ ତହ ହଉମେ ହୋଇ ବିନାସୁ ॥
ସତଗୁରୁ ସେବେ ଆପଣା ହଉ ସଦ କୁରବାଣେ ତାସୁ ॥
ଖଡ଼ି ଦରଗହ ପୈନାଈଐ ମୁଖି ହରିନାମ ନିବାସୁ ॥ ୩ ॥
ଜହ ଦେଖା ତହ ରବି ରହେ ସିବ ସକତୀ କା ମେଲୁ ॥
ତ୍ରିହୁ ଗୁଣ ବଧୀ ଦେହୁରୀ ଜୋ ଅଇଆ ଜଗି ସୋ ଖେଲୁ ॥
ବିଜୋଗୀ ଦୁଖି ବିଛୁଡେ ମନମୁଖି ଲହହି ନ ମେଲୁ ॥ ୪ ॥
ମନୁ ବୈରାଗୀ ଘରି ବସୈ ସଚ ଭୈ ରାତା ହୋଇ ॥
ଗିଆନ ମହାରସୁ ଭୋଗବୈ ବାହୁଡ଼ି ଭୁଖ ନ ହୋଇ ॥
ନାନକ ଇହୁ ମନୁ ମାରି ମିଲୁ ଭୀ ଫିରି ଦୁଖୁ ନ ହୋଇ ॥ ୫ ॥ ୮ ॥

ସିରୀ ରାଗୁ

: ୫୬ :

ଅମଲୁ କରି ଧରତୀ ବୀଜ ସବଦୋ କରି ସଚ କୀ ଆବ ନିତ ଦେହୁ ପାଣୀ ॥
ହୋଇ କିରସାଣୁ ଈମାନୁ ଜମାଇ ଲୈ ଭିସତୁ ଦୋଜକୁ ମୂଢ଼େ ଏବ ଜାଣୀ ॥ ୧ ॥
ମତୁ ଜାଣ ସହ ଗଲୀ ପାଇଆ ॥
ମାଲ କୈ ମାଣୈ ରୂପ କୀ ସୋଭା ଇତୁ ବିଧୀ ଜନମୁ ଗବାଇଆ ॥ ରହାଉ ॥
ଐବ ତନି ଚିକଡ଼ୋ ଇହୁ ମନୁ ମୀଡ଼କୋ କମଲ କୀ ସାର ନହୀଁ ମୂଲି ପାଈ ॥
ଭଉରୁ ଉସତାଦୁ ନିତ ଭାଖିଆ ବୋଲେ କିଉ ବୁଝୈ ଜା ନହ ବୁଝାଈ ॥ ୨ ॥
ଆଖଣୁ ସୁନଣା ପଉଣ କୀ ବାଣୀ ଇହୁ ମନୁ ରତା ମାଇଆ ॥
ଖସମ କୀ ନଦରି ଦିଲହି ପସିଂଦେ ଜିନୀ କରି ଏକୁ ଧିଆଇଆ ॥ ୩ ॥
ତୀହ କରି ରଖେ ପଂଜ କରି ସାଥୀ ନାଉ ସୈତାନୁ ମତୁ କଟି ଜାଈ ॥
ନାନକୁ ଆଖୈ ରାହି ପୈ ଚଲଣା ମାଲୁ ଧନୁ କିତ କୂ ସଂଜିଆହୀ ॥ ୪ ॥ ୨୭ ॥

ସିରୀ ରାଗୁ

: ୫୭ :

ଏକ ସୁରତି ଜେତେ ହୈ ଜୀଅ ॥ ସୁରତି ବିହୂଣା କୋଇ ନ କୀଅ ॥
ଜେହୀ ସୁରତି ତେହା ତିନ ରାହୁ ॥ ଲେଖା ଇକୋ ଆବହୁ ଜାହୁ ॥ ୧ ॥
କାହେ ଜୀଅ କରହି ଚତୁରାଈ ॥ ଲେବୈ ଦେବୈ ଢିଲ ନ ପାଈ ॥ ୧ ॥ ରହାଉ ॥
ତେର ଦଅ ଜୀଆ କା ତୋହି ॥ କିତ କଉ ସାହିବ ଆବହି ରୋହି ॥
ଜେ ତୂ ସାହିବ ଆବହି ରୋହି ॥ ତୂ ଓନା କା ତେରେ ଓହି ॥ ୨ ॥

ଏବଂ ଅନାହତ ବାଣୀ ଶୁଣି ପାରିଲେ ହିଁ ଅହଂର ସମୂଳ ବିନାଶ ହୁଏ, ଯିଏ ଏହିପ୍ରକାରେ ସଦ୍‌ଗୁରୁର ସେବାରେ ସନ୍ତୁଷ୍ଟ ରହେ, ମୁଁ ତାଙ୍କ ଲାଗି ଶତଶତବାର ନିଜକୁ ଉତ୍ସର୍ଗୀକୃତ କରିବାକୁ ପ୍ରସ୍ତୁତ । ଯାହାର ମୁଖରେ ହରିନାମ ବାସ କରି ସାରିଲାଣି, ତାଙ୍କର ଚରଣ ଶ୍ରୀମନ୍ଦିରର ଦ୍ୱାରଦେଶରେ ପହଞ୍ଚିଲାଣି ବୋଲି ଜାଣିବାକୁ ହେବ । ବିଶ୍ୱର ଚାରିଆଡ଼େ ମୁଁ କେବଳ ଶିବ ଓ ଶକ୍ତିର ମିଳନ ଦେଖୁଛି ! ଅଥଚ ଏ ଜଗତକୁ ଯେଉଁସବୁ ନରନାରୀ ଆସୁଛନ୍ତି, ସେ ସମସ୍ତେ ଜୀବନର କେବଳ ଗୋଟିଏ ଖେଳ ଜାଣନ୍ତି । ସେ ହେଉଛି, ତ୍ରିଗୁଣର ବନ୍ଧନ ଭିତରେ ହିଁ ଛଟର-ପଟର-ହେବା, ସ୍ୱେଚ୍ଛାଚାରୀ ଲୋକ ସର୍ବଦା ବିୟୋଗର ଦୁଃଖ ଭୋଗ କରେ, ଭଗବଦ୍‌-ମିଳନର ସୁଖ ତାକୁ କେବେହେଲେ ପ୍ରାପ୍ତ ହେବନାହିଁ, ଅଥଚ ଯେଉଁ ଲୋକର ମନ ସଦ୍‌ପ୍ରକୃତିରେ ବୈରାଗୀ ହୋଇ ଉଠେ ଏବଂ ସତ୍ୟ ଓ ଭୟରେ ଲୀନ ହୋଇଯାଏ, ତେବେ ସେ ପାଇବ ନିଶ୍ଚେ ଜ୍ଞାନ-ମହାରସର ଆନନ୍ଦ, ଯାହାକୁ ଭୋଗ କରି, ନିବୃତ୍ତ ହେବ ତାର ଯୁଗଯୁଗାନ୍ତରର କ୍ଷୁଧା । ନାନକର କଥନ ଏହି କି ଯେ, ହେ ସଂସାର-ଯାତ୍ରି, ସଂସାର-ବଂଧନାସକ୍ତ ମନକୁ ଧ୍ୱଂସ କରି, ତୁମେ ଏହିପରି ଭାବରେ ପ୍ରଭୁଂକ ସହିତ ମିଳନ-ପ୍ରାପ୍ତ ହେବ ଯେପରିକି, କେବେହେଲେ ଦୁଃଖ-ଭୋଗ ତମ ଭାଗ୍ୟରେ ଘଟିବନି । ( ୨୦-୨୧ )

: ୫୭ :

ହେ ଭାଇ, କର୍ମର ଭୂଇଁରେ ନାମର ମଂଜି ପୋତ ଏବଂ ସତ୍ୟର ଜଳଦ୍ୱାରା ମଂଦାକୁ ନିତ୍ୟ ଅଭିଷିକ୍ତ କର ଏବଂ ଏହିପରି ନିଷ୍ଠାପର ଚାଷୀ ହୋଇ ସାଧୁତାର ଫସଲ ଉଠାଅ, ତେବେଯାଇ ମୂର୍ଖ ଜାଣିବ, ସ୍ୱର୍ଗ ଓ ନରକର ପାର୍ଥକ୍ୟ । ମନେକର ନାହିଁ ଯେ କଥାରେ କଥାରେ ହିଁ ଏ ତତ୍ତ୍ୱ ଜାଣି ହେବ । ଧନର ଗର୍ବ ଓ ଶରୀରକୁ ଶୋଭା କରୁ କରୁ ତ ଜୀବନ ଚାଲିଗଲା; କିନ୍ତୁ ଅବଗୁଣରୂପକ ପଙ୍କରେ ଜମାହୋଇଥିବା କୁତ୍ସିତ-ଦର୍ଶନ ଯେଉଁ ମାନସିକ ବେଙ୍ଗ ସବୁ, ପଙ୍କରେ ପଦ୍ମ ଯେ ଫୁଟିପାରେ ସେହି ବେଙ୍ଗ ସବୁ ତାର ଖବର ତ ରଖନ୍ତି ନାହିଁ । ନିତ୍ୟ ଭ୍ରମର ( ଜୀବାତ୍ମା ) ଗୁରୁଭାଷା ହିଁ କହିଚାଲିଛି, କିନ୍ତୁ ଗୁରୁ ନବୁଝାଇଲେ, ତାହା ବୁଝିବ କିପରି ? ପୁଣି ବୁଝିବ ବା କିପରି, ଯେତେବେଳେ ମନ ରହିଛି ମାୟା-ଗ୍ରସ୍ତ ଏବଂ ସତ୍ୟ-ଜ୍ଞାନର କଥନ-ଶ୍ରବଣ ତୋ ପ୍ରତି ରହିଛି କେବଳ ପବନ ମାତ୍ର । ଯେଉଁ ଲୋକ ଏକକ ପ୍ରଭୁଙ୍କର ଧ୍ୟାନରେ ଲାଗିଯାଏ, ପ୍ରଭୁ ତାକୁ ପସନ୍ଦ କରନ୍ତି ଓ କୃପା କରନ୍ତି । ଯେଉଁ ଲୋକ ପାଞ୍ଚଥର ନୁହେଁ, ଦିନରେ ପଞ୍ଚ-ତ୍ରିଂଶ ନମାଜ କରେ ସଇତାନ ଯେତେ ସାବଧାନ ହେଲେ ମଧ୍ୟ ସେପରି ଲୋକର ସାଧନାକୁ ନିଷ୍ଫଳ କରି ନ ପାରେ । ନାନକର କଥନ ଏହି ଯେ, ହେ ଭାଇ, କାହିଁକି କେବଳ ଧନ-ଧାନ୍ୟ ସଂଚୟରେ ଲାଗିଛ ? ଠିକ୍ ମାର୍ଗରେ, ଚାଲ ଭାଇ ! ( ୨୩-୨୪ )

: ୫୭ :

ଜଗତରେ ଯେତେ ଜୀବ ଅଛନ୍ତି, ସମସ୍ତଙ୍କ ଭିତରେ ଅଭିଳାଷ ଜାଗ୍ରତ । ଅଭିଳାଷ-ହୀନ ହୋଇ ଗୋଟିଏ ହେଲେ ଜୀବ ନାହିଁ ଏବଂ ଯେପରି ଅଭିଳାଷ, ସେହିପରି ଜୀବନର ମାର୍ଗ, ଏବଂ ସେ ମାର୍ଗରେ ଯାହାର ଏକମାତ୍ର ଫଳ- ଜନ୍ମ-ମୃତ୍ୟୁ ଦେଇ ଶେଷହୀନ ଆସିବା ଓ ଯିବା । ତାରି ଭିତରେ ଯେ ଜୀବ ଚତୁରତାର ଖେଳ କାହିଁକି ଖେଳୁଛି ବୁଝି ହେଉନି ଏବଂ ମୃତ୍ୟୁ-କବଳିତ ଏହି ଜୀବମାନଙ୍କଠାରେ ଦିନ'ଦିନିଆ ସାଂସାରିକ ନେଣ-ଦେଣ-ଜନିତ ସନ୍ତୋଷରେ ଅଭାବ ମଧ୍ୟ ନାହିଁ । କିଂତୁ ପ୍ରଭୁ ଏହି ସକଳ ଅଜ୍ଞଜୀବ ତ ତୋର ଏବଂ ତୁ ମଧ୍ୟ ସେହି ଅଜ୍ଞ ଜୀବମାନଙ୍କର । ତୁମେ ଏମାନଙ୍କ ଉପରେ କ୍ରୁଦ୍ଧ ହୋଇପାରିବ କିପରି ? ତୁମେ ସେମାନଙ୍କର ଅପକର୍ମ ସବୁ ପାଇଁ ରାଗିଲେ ମଧ୍ୟ ସେମାନେ ତମର ଓ ତୁମେ ସେମାନଙ୍କର । ମୁଁ ମୂର୍ଖ ଏପରି କଥା କହୁଛି ହୁଏତ, ଯାହା ଲୋକଙ୍କର ଅନିଷ୍ଟ ହିଁ କରିବ; କିଂତୁ ହେ ପ୍ରଭୁ, ନିଜର କୃପା-ଦୃଷ୍ଟିରେ ହିଁ ମୋର ଏହି କଥନକୁ ପରୀକ୍ଷା କର ।

ଅଖୀ ବୋଲବଗାଡ଼ ବଗାଡ଼ହ ବୋଲ ॥ ତୂ ନଦରୀ ଅନ୍ଦରି ତୋଲହ ତୋଲ ॥
ଯହ କରଣୀ ତହ ପୂରୀ ମତ ॥ କରଣୀ ବାଝହୁ ଘଟେ ଘଟି ॥ ୩ ॥
ପ୍ରଣବତ ନାନକ ଗିଆନୀ କୈସା ହୋଇ ॥ ଆପୁ ପଛାଣୈ ବୂଝୈ ସୋଇ ॥
ଗୁର ପରସାଦ କରେ ବୀଚାରୁ ॥ ସୋ ଗିଆନୀ ଦରଗହ ପରବାଣୁ ॥ ୪ ॥ ୩୦ ॥

ସିରୀ ରାଗୁ

: ୫୮ :

ଅଛଲ ଛଲଈ ନହ ଛଲୈ ନହ ଘାଉ କଟାରା କରି ସକୈ ॥
ଜିଉ ସାହିବୁ ରାଖୈ ତିଉ ରହୈ ଇସୁ ଲୋଭୀ କା ଜୀଉ ଟଲପଲୈ ॥ ୧ ॥
ବିନୁ ତେଲ ଦୀବା କିଉ ଜଲୈ ॥ ୧ ॥ ରହାଉ ॥
ପୋଥୀ ପୁରାଣ କମାଈଐ ॥ ଭଉ ବଟୀ ଇତୁ ତନି ପାଈଐ ॥
ସଚୁ ବୁଝଣୁ ଆଣି ଜଲାଈଐ ॥ ୨ ॥
ଇହୁ ତେଲୁ ଦୀବା ଇଉ ଜଲୈ ॥ କରି ଚାନଣୁ ସାହିବ ତଉ ମିଲୈ ॥ ୧ ॥ ରହାଉ ॥
ଇତୁ ତନି ଲାଗୈ ବାଣୀଆ ॥ ସୁଖୁ ହୋଵେ ସେଵ କମାଣୀଆ ॥
ସଭ ଦୁନୀଆ ଆଵଣ ଜାଣୀଆ ॥ ୩ ॥
ଵିଚି ଦୁନୀଆ ସେଵ କମାଈଐ ॥ ତା ଦରଗହ ବୈସଣୁ ପାଈଐ ॥
କହୁ ନାନକ ବାହ ଲୁଡାଈଐ ॥ ୪ ॥ ୩୩ ॥

ସିରୀ ରାଗୁ

: ୫୯ :

ରାମ ନାମି ମନୁ ବେଧିଆ ଅଵରୁ କି କରୀ ବୀଚାରୁ ॥
ସବଦ ସୁରତି ସୁଖୁ ଊପଜୈ ପ୍ରଭ ରାତଉ ସୁଖ ସାରୁ ॥
ଜିଉ ଭାଵୈ ତିଉ ରାଖୁ ତୂଂ ମୈଂ ହରିନାମୁ ଅଧାରୁ ॥ ୧ ॥
ମନ ରେ ସାଚୀ ଖସମ ରଜାଇ ॥
ଜିନି ତନୁ ମନୁ ସାଜି ସୀଗାରିଆ ତିସୁ ସେତୀ ଲିଵ ଲାଇ ॥ ରହାଉ ॥
ତନୁ ବୈସଂତରି ହୋମୀଐ ଇକ ରତୀ ତୋଲି କଟାଇ ॥
ତନୁ ମନୁ ସମଧା ଜେ କରୀ ଅନଦିନୁ ଅଗନି ଜଲାଇ ॥
ହରିନାମୈ ତୁଲି ନ ପୁଜଈ ଜେ ଲଖ କୋଟୀ କରମ କମାଇ ॥ ୨ ॥
ଅରଧ ସରୀରୁ କଟାଈଐ ସିରି କରଵତୁ ଧରାଇ ॥
ତନୁ ହୈମଂଚଲି ଗାଲୀଐ ଭୀ ମନ ତେ ରୋଗୁ ନ ଜାଇ ॥
ହରିନାମୈ ତୁଲି ନ ପୁଜଈ ସଭ ଡିଠୀ ଠୋକି ଵଜାଇ ॥ ୩ ॥

ସେହି ହେଉଛି ପ୍ରକୃତ କରଣୀ, ଯେଉଁଠି ଜୀବର ମତି ପ୍ରଭୁଙ୍କଠାରେ ପୂର୍ଣ୍ଣମାତ୍ରାରେ ଲଗ୍ନ ଥାଏ । ନାନକ ପଚାରେ, ଲୋକ ଜ୍ଞାନୀ ହୁଏ କିପରି ? ଯେ ଆତ୍ମ-ପରିଚୟ ଲାଭ କରେ, ସେହି ହିଁ ଜ୍ଞାନୀ, ସେହି ହିଁ ପ୍ରଭୁଙ୍କ ପରିଚୟ ଲାଭ କରେ, ଏବଂ ଯେ ସତତ ଗୁରୁ-ପ୍ରସାଦ ମନନ କରେ, ପ୍ରଭୁଙ୍କ ଶ୍ରୀଚରଣରେ ସେ ବରାବର ସ୍ୱୀକାର୍ଯ୍ୟ ।

: ୫୮ :

ମାୟା ସକଳ ଛଳନାର ଊର୍ଦ୍ଧ୍ୱରେ, ତାକୁ କିଏ ଠକି ପାରିବ ? ମାୟା ପ୍ରତି କିଏ ଦା-କଟୁରି ପ୍ରୟୋଗ କରି ଘାଇଲା କରି ପାରିବ ? ଯାହାକୁ ପ୍ରଭୁ ରକ୍ଷା କରନ୍ତି, ସେହି ହିଁ ମାୟାରୁ ରକ୍ଷା ପାନ୍ତି । ଯାର ମନ ଲୋଭ-ମୋହାନ୍ଧ, ସେ କିନ୍ତୁ ସର୍ବଦା ଯେ ବ୍ୟଥିତ ରହିବ, ଏଥିରେ ଆଶ୍ଚର୍ଯ୍ୟ କଣ ଅଛି ? ପୋଥି-ପୁରାଣ-ଲବ୍ଧ ଜ୍ଞାନକୁ ତମର ଦୈନଂଦିନ ଆଚରଣରେ ଫୁଟାଅ, ପ୍ରଭୁ-ଭୟର ବର୍ତ୍ତିକା ଜଳାଇ ରଖ, ତମର ଶରୀର ଭିତରେ । ତମେ ନିଜର ପ୍ରଦୀପ ଜାଳିରଖ, ନିଜ-ଲବ୍ଧ ସତ୍ୟ-ଜ୍ଞାନର ତୈଳ ଦେଇ । ସେହି ପ୍ରଦୀପର ଆଲୋକରେ ସ୍ୱାମୀଙ୍କର ଭେଟ ହେବ । ମନେକର ଯେ ତମର ଶରୀର ମାୟା-ବାଣରେ ବିଦ୍ଧ, ସୁଖ ମିଳିବ, ଯଦି ସେହି ବାଣର ଘା'କୁ ଚିକିତ୍ସା କର । ଦୁନିଆ ଖାଲି ଯିବା-ଆସିବାରେ ଲାଗିଛି, ଯଦି ଏପରି ଦୁନିଆର ସେବା କରିବାକୁ ଇଚ୍ଛା, ତେବେ ଆଗ ଯାଇ ପ୍ରଭୁ ଚରଣରେ ସ୍ଥିର ହୋଇ ବସିରହ । ନାନକ କହେ ଯେ, ତମେ ତମର ବାହୁ ହଲାଇ, ଯାତ୍ରାରମ୍ଭ କର, ନିଶ୍ଚୟ ପ୍ରଭୁଙ୍କ ନିକଟରେ ପହଞ୍ଚିବ ।

: ୫୯ :

ଯଦି ରାମ-ନାମ ଦ୍ୱାରା ମନ ବିଦ୍ଧ ହୋଇ ଯାଉଛି, ତେବେ, ହେ ଭାଇ, ଆଉ କି ବିଚାର ? ସେହି ନାମ-ଜପର-ଅଭିଳାଷରୁ ହେବ ସୁଖର ଉତ୍ପତ୍ତି, ପ୍ରଭୁ-ପ୍ରେମହିଁ ପରମ ସୁଖ । ହେ ପ୍ରଭୁ ତମେ ମତେ ଯେତିକି ପସନ୍ଦ କରିବ, ସେମିତି ରଖ, ଏବଂ ଏପରି କର ଯେ ମୁଁ ଯେପରି ହରିନାମର ଏକ ଆଧାର ହୋଇ ଉଠେ । ହେ ମନ, ଏ ସୃଷ୍ଟିରେ ପ୍ରଭୁଙ୍କର ଇଚ୍ଛା ହିଁ ଏକମାତ୍ର ସତ୍ୟ । ଯେ ଏହି ତନୁ-ମନକୁ ସୃଷ୍ଟି କଲେ ଓ ତାକୁ କଲେ ମଧ୍ୟ ବିଭୂଷିତ, ହେ ମନ, ତାଙ୍କରିଠାରେ ନିଜକୁ ଲଗ୍ନ କରିନିଅ । ତନୁକୁ ଟିକି ଟିକି କରି କାଟି, ହୋମାଗ୍ନିରେ ପକାଅ, ମନକୁ କର ସମିଧ, ଏବଂ ପ୍ରତ୍ୟହ ଜଳାଇରଖ ଏହି ଆତ୍ମା-ଯଜ୍ଞ । କିନ୍ତୁ ଜାଣିରଖ ଯେ ଏପରି ଲକ୍ଷ ତଥାକଥିତ ପୁଣ୍ୟ-କର୍ମ ହରି ନାମର ତୁଲ୍ୟ ନୁହେଁ । ଏହି ତନୁକୁ ତୀକ୍ଷ୍ଣ ତରବାରିରେ ଦ'ଗଡ଼ କଲେ, ବା ନିଜକୁ ହିମାଳୟ-ଗୁହାରେ ତପସ୍ୟା କରି କ୍ଷୀଣ କଲେ ମଧ୍ୟ, ମନର ରୋଗ ଗୁଲି ଯିବନି, ମୁଁ ସବୁ ପରୀକ୍ଷା କରି ଦେଖିଛି ଯେ, ହରି-ନାମରେ ତୁଲ୍ୟ କର୍ମ ଆଉ ନାହିଁ । ସୁନାର ଉଆସ, ହସ୍ତୀବର ଓ ମଜବର ଦାନ ଦେଲି, ଭଲି ଭୂମିଦାନ ଓ ଗୋଦାନ, କିନ୍ତୁ ମନର ଅଭିମାନ ତୁଟିଲା ନାହିଁ । କିନ୍ତୁ ଗୁରୁ ମୋର ମନକୁ ହରି-ନାମରେ ବିନ୍ଧି ସତ୍ୟ ଦାନ ଦେଇଛନ୍ତି । ବୁଦ୍ଧି ମନର ଯେତେ ସାଧନା, ସେତେ ବେଦ-ବିଚାର, ସେତେ ସେ ସବୁ ଆତ୍ମାର ବନ୍ଧନ,

କଞ୍ଚନ କେ କୋଟ ଦତୁ କରୀ ବହୁ ହୈବର ଗୈବର ଦାନୁ ॥
ଭୂମି ଦାନୁ ଗଉଆ ଘଣୀ ଭୀ ଅନ୍ତରି ଗରବୁ ଗୁମାନୁ ॥
ରାମ ନାମ ମନୁ ବେଧିଆ ଗୁରି ଦୀଆ ସଚୁ ଦାନୁ ॥ ୪ ॥
ମନ ହଠ ବୁଧୀ କେତୀଆ କେତେ ବେଦ ବୀଚାର ॥
କେତେ ବନ୍ଧନ ଜୀଅ କେ ଗୁରମୁଖି ମୋଖଦୁଆରୁ ॥
ସଚହୁ ଓରୈ ସଭୁ କୋ ଉପରି ସଚୁ ଆଚାରୁ ॥ ୫ ॥
ସଭୁ କୋ ଊଚା ଆଖୀଐ ନୀଚୁ ନ ଦୀସୈ କୋଇ ॥
ଇକନୈ ଭାଡ଼େ ସାଜୀଐ ଇକୁ ଚାନଣୁ ତିହୁ ଲୋଇ ॥
କରମି ମିଲୈ ସଚୁ ପାଈଐ ଧୁରି ବଖସ ନ ମେଟୈ କୋଇ ॥ ୬ ॥
ସାଧୁ ମିଲୈ ସାଧୁ ଜନୈ ସଂତୋଖୁ ବସୈ ଗୁର ଭାଇ ॥
ଅକଥ କଥା ବୀଚାରୀଐ ଜେ ସତିଗୁର ମାହି ସମାଇ ॥
ପୀ ଅଂମ୍ରିତୁ ସଂତୋଖିଆ ଦରଗହି ପୈଧା ଜାଇ ॥ ୭ ॥
ଘଟି ଘଟି ବାଜୈ କିଂଗୁରୀ ଅନଦିନୁ ସବଦି ସୁଭାଇ ॥
ବିରଲେ କଉ ସୋଝୀ ପଈ ଗୁରମୁଖି ମନୁ ସମଝାଇ ॥
ନାନକ ନାମୁ ନ ବୀସରୈ ଛୁଟୈ ସବଦୁ କମାଇ ॥ ୮ ॥ ୧୪ ॥

ସିରୀ ରାଗୁ ଅସଟପଦୀଆ

: ୬୦ :

ମିହର ମସୀତି ସିଦକୁ ମୁସଲା ହକୁ ହଲାଲୁ କୁରାଣୁ ॥
କରଣୀ କାବା ସଚୁ ପୀରୁ କଲମା କରମ ନିବାଜ ॥
ସରମ ସୁନତି ସୀଲୁ ରୋଜା ହୋହୁ ମୁସଲମାଣୁ ॥
ତସବୀ ସାତି ସୁଭାବସୀ ନାନକ ରଖୈ ଲାଜ ॥ ୧ ॥
ହକୁ ପରାଇଆ ନାନକା ଉସୁ ସୂଅର ଉସୁ ଗାଇ ॥
ଗୁରୁ ପୀରୁ ହାମା ତା ଭରେ ଜା ମୁରଦାରୁ ନ ଖାଇ ॥
ଗଲୀ ଭିସତି ନ ଜାଈଐ ଛୁଟୈ ସଚୁ କମାଇ ॥
ମାରଣ ପାହି ହରାମ ମହି ହୋଇ ହଲାଲୁ ନ ଜାଇ ॥
ନାନକ ଗଲୀ କୂଡ଼ୀଈ କୂଡୋ ପଲୈ ପାଇ ॥ ୨ ॥
ପଂଜି ନିବାଜା ବଖତ ପଂଜ ପଂଜା ପଂଜେ ନାଉ ॥
ପହିଲା ସଚୁ ହଲାଲ ଦୁଇ ତୀଜା ଖୈର ଖୁଦାଇ ॥
ଚଉଥୀ ନୀଅତି ରାସି ମନୁ ପଂଜଵୀ ସିଫତି ସନାଇ ॥
କରଣୀ କଲମା ଆଖି କୈ ତା ମୁସଲମାଣୁ ସଦାଇ ॥
ନାନକ ଜେତେ କୂଡ଼ିଆର କୂଡ଼ୈ କୂଡ଼ୀ ପାଇ ॥ ୩ ॥

ବାର ମାଝ, ପଉଡ଼ୀ, ୧ ସଲୋକ ୧,୨,୩

ଅଥଚ କେବଳ ଗୁରୁହିଁ ମୋକ୍ଷ-ଦ୍ୱାରରେ ପହଞ୍ଚାଇ ଦେଇପାରନ୍ତି । ସତ୍ୟ ସକଳ କର୍ମଠାରୁ ଉଚ୍ଚ, ଉଚ୍ଚତର ପୁଣି ସତ୍ୟାଚାର, ତେଣୁ ବିନମ୍ରରେ ସବୁ ମନୁଷ୍ୟଙ୍କୁ ନିଜଠାରୁ ଉଚ୍ଚ ଦେଖ, କାହାକୁ ନୀଚ ବୋଲି ଦେଖିବ ନାହିଁ । ପ୍ରଭୁ ହିଁ ଭଲମନ୍ଦ ସବୁ ପାତ୍ର ବନାଇଛନ୍ତି, ତିନି ଲୋକରେ ଏକମାତ୍ର ସେହି ହିଁ ପ୍ରକଟିତ, ତାଙ୍କର କୃପାରେହିଁ ସତ୍ୟ ଲବ୍ଧ ହୁଏ, ସେହି ମୂଳ କୃପା ଆଉ କେହି ନେଇଁ ପାରିବେନି । ସାଧୁଜନ-ସଙ୍ଗ ବା ଗୁରୁ ସ୍ତବ ମନକୁ ଦିଏ ସନ୍ତୋଷ । କେବଳ ସଦ୍‌ଗୁରୁ ମିଳିଗଲେ ଯାହା ଅକଥନୀୟ ତାର ବିସ୍ତାର ସମ୍ଭବ ହୋଇଥାଏ, ଯଦି ତାଙ୍କ ଉପଦେଶରେ ନିଜକୁ ଲୀନ କରିଦିଅ । ସେହି ବାଣୀାମୃତ ପାନକଲେ, ସମ୍ମାନ ମିଳିବ ପ୍ରଭୁ-ଚରଣରେ । ଯଦି ନାମଜପରେ ଅନୁଦିନ ଯୁକ୍ତ ରହ, ତେବେ ଶୁଣିପାରିବ ପ୍ରତି ଘଟରେ ସେହି ଗୁଞ୍ଜନ । ଏପରି ଜ୍ଞାନଲାଭ ଏ ଜଗତରେ ବିରଳ ନିଶ୍ଚୟ; କେବଳ ସଦ୍‌ଗୁରୁହିଁ ଏପ୍ରକାରେ ମନକୁ ତିଆରି ପାରନ୍ତି । ନାନକ କହନ୍ତି ଯେ, ନାମ ଜପ କେବେହେଲେ ବିସ୍ମୃତ ହେବନି, ତେବେ ସେହି ଶବ୍ଦ-ସାଧନାରେହିଁ ମୁକ୍ତି ମିଳିଯିବ ।

: ୬୦ :

ମିହିରର ମସୀତ୍ ବା ନମାଜର ଆସନରୁ କୁରାନ୍ ସରିଫର ସତ୍ୟ ମୂଲ୍ୟ ଆସେ ନାହିଁ । ଗତାନୁଗତିକ ବ୍ରତ, ଉପବାସାଦି ପାଳନ ମଧ୍ୟ ପ୍ରକୃତ ସତ୍‌ମୁସଲମାନର ଲକ୍ଷଣ ନୁହେଁ । ପ୍ରକୃତ ମସ୍‌ଜିଦ୍ ହେଉଛି ସତ୍‌କାର୍ଯ୍ୟ, ସତ୍ୟ ମନ୍ତ୍ର-ଧ୍ୟାନ ଓ ସତ୍ୟମାର୍ଗ ହେଉଛନ୍ତି ପ୍ରକୃତ ନମାଜ । ଏବଂ ଶାନ୍ତି ସ୍ୱଭାବହିଁ ମାଳା । ନାନକ କହନ୍ତି ଯେ, କେବଳ ଏହିସବୁ ଯୋଗୁହିଁ ପ୍ରଭୁ ସାଧକକୁ ସମ୍ମାନ ଦେଇଥାନ୍ତି । କିନ୍ତୁ ମୁସଲମାନଙ୍କ କେବଳ ଘୃଣା ଓ ହିନ୍ଦୁକୁ ଗାଳିପାଇଁ ସମାଲୋଚନା କରିବାଟା ଅସାର ବାକ୍ୟବ୍ୟୟ ମାତ୍ର । ଶିଷ୍ୟର ପ୍ରକୃତ ସହାୟକ ସଦ୍‌ଗୁରୁ ସେହି, ଯେ ମୁର୍ଦ୍ଦାର ନ ଖାଆନ୍ତି । କେବଳ ଭାଷଣ ବା ଉପଦେଶ ଦ୍ୱାରା ସ୍ୱର୍ଗ-ପ୍ରାପ୍ତି ହେବ ନାହିଁ, ଶାସ୍ତ୍ର-ନିଷିଦ୍ଧ ଖାଦ୍ୟକୁ ଯେତେ ମସଲା ଦେଇ ମୁଖ-ରୋଚକ କଲେହେଁ, ତାହାର ଭୋଜନ ଉଚିତ ନୁହେଁ । ଏବଂ ମିଥ୍ୟା ଭାଷଣଦ୍ୱାରା, ସମାଜରେ କେବଳ ମିଥ୍ୟା ବୋଲି ଚିହ୍ନିତ ହେବା ଛଡ଼ା ଅନ୍ୟ କିଛି ଲାଭ ନାହିଁ । ମୁସଲମାନ ପାଞ୍ଚଥର ଯେଉଁ ନମାଜ କରେ ସେ ସବୁର ପ୍ରକୃତ ପଞ୍ଚ-ସଂଜ୍ଞା ହେଲା, ସତ୍ୟଭାଷଣ, କର୍ତ୍ତବ୍ୟକର୍ମପାଳନ, ସନ୍ତୋଷ, ପବିତ୍ରତା ଓ ଶାଳୀନତା, ଏବଂ ଈଶ୍ୱର-ସ୍ତୁତି । ତେଣୁ ଏହିସବୁ ସତ୍‌କାର୍ଯ୍ୟରେ ମନ୍ତ୍ର-ଗାନ କରି ହିଁ ତୁମେ ନିଜକୁ ପ୍ରକୃତ ମୁସଲମାନ ବୋଲି ପରିଚିତ କରାଅ । କାରଣ, ନାନକ କହେ ଯେ, ମିଥ୍ୟାଗ୍ରସ୍ତ ତାର ଫଳ ନିଶ୍ଚୟ ଭୋଗ କରିବ ।

: ୬୧ :

ମୁହଲମାଣୁ କହାବଣ ମୁସକଲ୍ ଜା ହୋଇ ତା ମୁହଲମାଣୁ କହାବେ ॥
ଅବଲ ଅଉଲ ଦୀନ୍ କର ମିଠା ମସକଲମାନା ମାଲ୍ ମୁସାବେ ॥
ହୋଇ ମୁହଲିମ୍ ଦୀନ ମୁହାଣେ ମରଣ ଜୀବଣ କା ଭରମୁ ଚୁକାବେ ॥
ରବ କୀ ରଜାଇ ମଂନେ ସିର ଉପର କରତା ମଂନେ ଆପୁ ଗବାବେ ॥
ତଉ ନାନକ ସରବ ଜୀଆ ମିହରଂମତି ହୋଇ ତ ମୁସଲମାଣୁ କହାବେ ॥ ୧ ॥

ବାର ମାଝ, ସଲୋକ, ପଉଡ଼ୀ ୮

: ୬୨ :

କିଆ ଖାଧେ କିଆ ପେଧେ ହୋଇ ॥ ଜା ମନ୍ନ ନାହୀ ସଚ୍ଚ ସୋଇ ॥
କିଆ ମେବା କିଆ ଘିଉ ଗୁଡ଼ ମିଠା କିଆ ମୈଦା କିଆ ମାସୁ ॥
କିଆ କପଡ଼୍ କିଆ ସେଜ ସୁଖାଲୀ କୀଜହି ଭୋଗ ବିଲାସ ॥
କିଆ ଲସକର କିଆ ନେବ ଖବାସୀ ଆବୈ ମହଲୀ ବାସୁ ॥
ନାନକ-ସଚେ ନାମ ବିଣୁ ସଭେ ଟୋଲ ବିଣାସୁ ॥ ୨ ॥

ବାର ମାଝ, ପଉଡ଼ୀ ୧୦, ସଲୋକ ୨

: ୬୩ :

ଖିମା ଗହୀ ବ୍ରତୁ ସୀଲ ସଂତୋଖଂ ॥ ରୋଗୁ ନ ବିଅପେ ନା ଜମ ଦୋଖଂ ॥
ମୁକତ ଭଏ ପ୍ରଭ ରୂପ ନ ରେଖଂ ॥ ୧ ॥
ଜୋଗୀ କଉ କୈସା ଡରୁ ହୋଇ ॥ ରୂଖି ବିରଖି ଗ୍ରିହି ବାହରି ସୋଇ ॥ ୧ ॥ ରହାଉ ॥
ନିରଭଉ ଜୋଗୀ ନିରଂଜନୁ ଧିଆବେ ॥ ଅନଦିନୁ ଜାଗେ ସଚି ଲିବ ଲାବେ ॥
ସୋ ଜୋଗୀ ମେରେ ମନ ଭାବେ ॥ ୨ ॥
କାଲୁ ଜାଲୁ ବ୍ରହମ ଅଗନୀ ଜାରେ ॥ ଜରା ମରଣ ଗତୁ ଗରବୁ ନିବାରେ ॥
ଆପି ତରେ ପିତରୀ ନିସତାରେ ॥ ୩ ॥
ସତଗୁରୁ ସେବେ ସୋ ଜୋଗୀ ହୋଇ ॥ ଭୈ ରଚି ରହୈ ସୁ ନିରଭଉ ହୋଇ ॥
ଜୈସା ସେବେ ତୈସୋ ହୋଇ ॥ ୪ ॥
ନର ନିହକେବଲ ନିରଭଉ ନାଉ ॥ ଅନାଥହ ନାଥ କରେ ବଲି ଜାଉ ॥
ପୁନରପି ଜନମୁ ନାହୀ ଗୁଣ ଗାଉ ॥ ୫ ॥
ଅଂତରି ବାହରି ଏକୋ ଜାଣୈ ॥ ଗୁରୁ କୈ ସବଦେ ଆପୁ ପଛାଣୈ ॥
ସାଚୈ ସବଦି ଦରି ନୀସାଣୈ ॥ ୬ ॥
ସବଦି ମରୈ ତିସୁ ନିଜ ଘରି ବାସା ॥ ଆବୈ ନ ଜାବୈ ଚୂକୈ ଆସା ॥
ଗୁର କୈ ସବଦି କମଲୁ ପରଗାସା ॥ ୭ ॥

: ୬୧ :

ଯେ କୌଣସି ଲୋକର ନିଜକୁ ସେ ଜଣେ 'ମୁସଲମାନ' ବୋଲି ପରିଚିତ କରାଇବା ବଡ଼ କଷ୍ଟର କଥା । ପ୍ରକୃତ ମୁସଲମାନ ହେବାକୁ ହେଲେ, ପ୍ରଥମେ ସାନାତିସାନ ଭାବରେ ସାଧକମାନଙ୍କ ପ୍ରତି ଶ୍ରଦ୍ଧାଜ୍ଞାପନ କରିବାକୁ ହେବ । ପୁଣି ନିଜ ମନରୁ ସମୂଳେ ବହିଷ୍କୃତ କରିବାକୁ ହେବ ହିଂସାତ୍ମକ ସଂଗ୍ରାମୀଭାବ ଏବଂ ଅକୁଣ୍ଠିତ ଭାବରେ ସକଳ ସଞ୍ଚିତ ଧନ । ଏ ଜଗତରେ ସାନ ଦରିଦ୍ରର ପ୍ରକୃତ ମାଲିକ ଓ ରକ୍ଷକ ଯେଉଁ ଭଗବାନ ତାଙ୍କ ଉପରେ ହିଁ ସମ୍ପୂର୍ଣ୍ଣ ବିଶ୍ୱାସ କର । ମନରୁ ଦୂର କର ଜୀବନ ଓ ମରଣର ଭେଦ । ଈଶ୍ୱରଙ୍କ ଇଚ୍ଛାନୁସାରେ ଜୀବନ କେବଳ ପରିଚାଳିତ କର ନୁହେଁ, ତାଙ୍କଠାରେ ନିଜକୁ ସମ୍ପୂର୍ଣ୍ଣ ଲୀନ କରିଦିଅ । ନାନକ କହେ ଯେ, ଈଶ୍ୱରଙ୍କ ଆଧାର ଭାବେ ସବୁ ଜୀବ-ଜାତି ପ୍ରତି ସମବେଦନାଶୀଳ ହେଲେ ଯାଇ ନିଜକୁ କହ ଏକ ମୁସଲମାନ ବୋଲି ।

: ୬୨ :

ଯେ ପର୍ଯ୍ୟନ୍ତ ମନ ଭିତରେ ସେହି ସତ୍ୟ-ପ୍ରଭୁ ପ୍ରତିଷ୍ଠିତ ନ ହୋଇଛନ୍ତି, କେବଳ ଭୋଜନ-ବସନର, ଲୋଭ ଓ ଆଡ଼ମ୍ବରମୟ ପରିବର୍ତ୍ତନରେ କି ଲାଭ ? ସୁଖଦ ଶଯ୍ୟା, ଉତ୍ତମ ବିଳାସ ଓ ଫଳ, ଦହି, ମିଷ୍ଟାନ୍ନ, ମଇଦା ଓ ମାଂସାଦିର ଭୋଜନ ସୁଖ ବା କି ବଡ଼ କାମ ? ଭୃତ୍ୟ, ନାଏବ, ଲସ୍କରାଦି ପରିଚାରଗଣ ବା କିସ ଲାଭ ଆଣିଦେବ ତୁମକୁ ? କି ଲାଭ ପ୍ରାସାଦୋପମ ଗୃହରେ ବାସ କରି ? ଏ ସମସ୍ତ ହିଁ କେବଳ ବୃଥା ନୁହେଁ, ବିନାଶର ମଧ୍ୟ ହେତୁ, ଯଦି ଅଭ୍ୟାସ ନକର କେବଳ ସତ୍ୟ-ନାମ ।

: ୬୩ :

ଯେଉଁ କ୍ଷମାବନ୍ତ ପୁରୁଷ ଶୀଳ ଓ ସନ୍ତୋଷକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥାନ୍ତି, ତାଙ୍କୁ ରୋଗ ଓ ଯମ-ଦୋଷ ଲାଗିବ ନାହିଁ । ସେ ମୁକ୍ତ ହୋଇ ଉଠନ୍ତି ସେହି ମୁକ୍ତ-ସ୍ୱାମୀଙ୍କଠାରେ ଯେ ନିରଞ୍ଜନ ଓ ନିରାକାର । ଏହିପରି ପ୍ରକୃତ ଯୋଗୀର କାହାକୁ କି ଡର ? କାରଣ ତାଙ୍କ ପାଇଁ ଘରେ ଓ ବାହାରେ ଓ ଏପରିକି ଶୁଖିଲା ଗଛରେ ମଧ୍ୟ ସେହି ଏକ ପ୍ରଭୁ ବିରାଜିତ । ଏ ପ୍ରକାର ନିର୍ଭୟ ଯୋଗୀ ବରାବର ନିରଞ୍ଜନଙ୍କ ଧ୍ୟାନରେ ରହିଥାନ୍ତି ଏବଂ ସତ୍ୟରେ ଲୀନ ହୋଇ ଅନୁଦିନ ଜାଗ୍ରତ ରହିଥାନ୍ତି । କେବଳ ଏହିପରି ଯୋଗୀଙ୍କୁ ହିଁ ମୁଁ ପସନ୍ଦ କରେ । ହେ ମନୁଷ୍ୟ, କାଳର ଜ୍ୱାଳାକୁ ବ୍ରହ୍ମଜ୍ୱାଳାରେ ଭସ୍ମୀଭୂତ କରି ପକାଅ । ଯା ଫଳରେ କେବଳ ଅହଂଭାବ ଯେ ଲୁପ୍ତ ହେଉଛି ତା' ନୁହେଁ, ତୁମେ ଜନ୍ମ-ମୃତ୍ୟୁର ଊର୍ଦ୍ଧ୍ୱକୁ ମଧ୍ୟ ଉଠିଯିବ । ପୁଣି କେବଳ ତୁମେ ଯେ ମୁକ୍ତ ହେବ ତାହା ନୁହେଁ, ତୁମ ପୁଣ୍ୟ ଉଦ୍ଧାର କରିବ ମଧ୍ୟ, ତୁମର ପିତୃ-ପୁରୁଷଙ୍କୁ । ଯେ ନିଷ୍ଠା ସହିତ ସଦ୍‌ଗୁରୁର ସେବା କରେ ସେହି ହିଁ ପ୍ରକୃତ ଯୋଗୀ, ସେ ପ୍ରଭୁଙ୍କୁ ଭକ୍ତି କରି ହିଁ ନିର୍ଭୀକ ହୋଇ ଉଠେ । ଯିଏ ଯାହାର ସେବା କରେ, ସେ ତା'ର ସେହି ପ୍ରଭୁଙ୍କ ପରି ହିଁ ଯେ ଗୁଣଯୁକ୍ତ ହେବେ, ଏଥିରେ ସନ୍ଦେହ କି ଅଛି ? ତେଣୁ ସେହି ନିର୍ଲିପ୍ତ ପୁରୁଷଙ୍କ ନିକଟରେ ମୁଁ ନିଜକୁ ଉତ୍ସର୍ଗୀକୃତ କରେ, ଯାହାଙ୍କର ନାମ ସତ୍ୟରେ ଆଣିଦିଏ ନିର୍ଭୟ ଏବଂ ଅନାଥକୁ ସନାଥ କରେ । କେବଳ ତାଙ୍କର ଗୁଣଗାନ ଫଳରେ ହିଁ ଆଉ ପୁନର୍ଜନ୍ମ ନ ହୋଇପାରେ । ଅନ୍ତର-ବାହାର ଏକ ବୋଲି ଜାଣିନ, ସଦ୍‌ଗୁରୁ ଶିକ୍ଷାରୁ ଆତ୍ମ ପରିଚୟ ମିଳିବ ଏବଂ ସତ୍ୟ ଶବ୍ଦ ଦ୍ୱାରା ହିଁ ତୁମେ ପ୍ରଭୁଙ୍କ ଆବାସରେ ଯାଇ ବସି ପାରିବ ।

ଜୋ ଧାବୈ ସୋ ଅଉଧ ନିରାସା ॥ କାମ କ୍ରୋଧ ବିଖୁ ଭୂଖ ପିଆସା ॥
ନାନକ ବିରଲେ ମିଲହି ଉଦାସା ॥ ୮ ॥ ୭ ॥

ଗଉଡ଼ୀ ଅସଟପଦୀଆ

: ୬୪ :

ଐସୋ ଦାସୁ ମିଲୈ ସୁଖୁ ହୋଈ ॥ ଦୁଖୁ ବିସରୈ ପାବୈ ସଚୁ ସୋଈ ॥ ୧ ॥
ଦରସନୁ ଦେଖି ଭଈ ମତି ପୂରୀ ॥ ଅଠସଠି ମଜନୁ ଚରନହ ଧୂରୀ ॥ ୧ ॥ ରହାଉ ॥
ନେତ୍ର ସନ୍ତୋଖେ ଏକ ଲିବ ତାର ॥ ଜିହବା ସୂଚୀ ହରିରସ ସାର ॥ ୨ ॥
ସଚୁ କରଣୀ ଅଭଅନ୍ତରି ସେବା ॥ ମନୁ ତ୍ରିପତିଆ ଅଲଖ ଅଭେବା ॥ ୩ ॥
ଜହ ଜହ ଦେଖଉ ତହ ତହ ସାଚୁ ॥ ବିନୁ ବୂଝେ ଝଗରତ ଜଗୁ କାଚୁ ॥ ୪ ॥
ଗୁରୁ ସମଝାବୈ ସୋଝୀ ହୋଈ ॥ ଗୁରମୁଖି ବିରଲା ବୂଝୈ କୋଈ ॥ ୫ ॥
କରି କିରପା ରାଖହୁ ରଖବାଲେ ॥ ବିନୁ ବୂଝେ ପସୂ ଭଏ ବେତାଲେ ॥ ୬ ।
ଗୁରି କହିଆ ଅବରୁ ନହୀ ଦୂଜା ॥ କିସୁ କହୁ ଦେଖି କରଉଁ ଅନ ପୂଜା ॥ ୭ ॥
ସନ୍ତ ହେତି ପ୍ରଭି ତ୍ରିଭବଣ ଧାରେ ॥ ଆତମୁ ଚୀନୈ ସୁ ତତୁ ବୀଚାରେ ॥ ୮ ॥
ସାଚୁ ରିଦୈ ସଚୁ ପ୍ରେମ ନିବାସ ॥ ପ୍ରଣବତି ନାନକ ହମ ତା କେ ଦାସ ॥ ୯ ॥ ୮ ॥

ଗଉଡ଼ୀ ଅସଟପଦୀଆ

: ୬୫ :

ଗୁର କା ସବଦୁ ମନୈ ମହି ମୁନ୍ଦ୍ରା ଖିଂଥା ଖିମା ହଢାବଉ ॥
ଜୋ କିଛୁ କରୈ ଭଲା କରି ମାନଉ ସହଜ ଜୋଗ ନିଧି ପାବଉ ॥ ୧ ॥
ବାବା ଜୁଗତା ଜୀଉ ଜୁଗହ ଜୁଗ ଜୋଗୀ ପରମ ତଂତ ମହିଜୋଗଂ ॥
ଅଂମ୍ରିତୁ ନାମୁ ନିରଂଜନ ପାଇଆ ଗିଆନ କାଇଆ ରସ ଭୋଗଂ ॥ ୧ ॥ ରହାଉ ॥
ସିବ ନଗରୀ ମହି ଆସଣି ବୈସଉ କଲପ ତିଆଗୀ ବାଦଂ ॥
ସିଂଙ୍ଗୀ ସବଦୁ ସଦା ଧୁନି ସୋହୈ ଅହିନିସି ପୂରୈ ନାଦଂ ॥ ୨ ॥
ପତୁ ବୀଚାରୁ ଗିଆନ ମତି ଡଂଡା ବରତମାନ ବିଭୂତଂ ॥
ହରି କୀରତି ରହରାସି ହମାରୀ ଗୁରମୁଖି ପଂଥୁ ଅତୀତଂ ॥ ୩ ॥
ସଗଲୀ ଜୋତି ହମାରୀ ସଂମିଆ ନାନା ବରନ ଅନେକଂ ॥
କହୁ ନାନକ ସୁଣି ଭରଥରି ଜୋଗୀ ପାରବ୍ରହ୍ମ ଲିବ ଏକଂ ॥ ୪ ॥ ୩ ॥ ୩୭ ॥

ରାଗ ଆସା

ଗୁରୂପଦେଶ ଦ୍ୱାରା ହୃଦ୍-କମଳ ବିକଶିତ ହୋଇ ଉଠିବ ଏବଂ ଜନ୍ମ-ମରଣରୁ ଆଶାତୀତ ଭାବରେ ମୁକ୍ତି ପାଇବ ଯେଉଁଆଡ଼େ ଆଖି ପକାଉଁ ଆମେ ଦେଖିବାକୁ ପାଉ ଆଶା, ନିରାଶା, କାମ, କ୍ରୋଧ ଏବଂ ଦ୍ୱେଷ ଓ କ୍ଷୁଧା-ତୃଷ୍ଣାର ଲୀଳା । ନାନକ କହେ ଯେ, ଏ ସବୁ ପ୍ରତି ଏକାନ୍ତ ଉଦାସୀନ ଲୋକ ଜଗତରେ ସତ୍ୟରେ ବିରଳ ।

: ୬୪ :

ପ୍ରଭୁଙ୍କର ଏପରି ଦାସ ଦେଖିବାକୁ ମିଳିଲେ ଜୀବନ ପ୍ରକୃତରେ ସୁଖମୟ ହୋଇଉଠେ । ମନୁଷ୍ୟ ଦୁଃଖ ଭୁଲିଯାଏ ଓ ସତ୍ୟକୁ ଉପଲବ୍ଧି କରେ । ତାହାର ଦର୍ଶନରେ ହିଁ ମନୋରଥ ପରିପୂର୍ଣ୍ଣ ହୋଇ ଉଠେ ଏବଂ ତାହାର ଚରଣ-ଧୂଳି ଅଗଣିତ ତୀର୍ଥ ସ୍ଥାନର ପୁଣ୍ୟ ଦିଏ । ସେହି ଏକକରେ ଲଗ୍ନ ସାଧକର ନେତ୍ରଯୁଗ୍ମରେ ସନ୍ତୋଷ ଫୁଟି ବାହାରୁଥାଏ ଏବଂ ସର୍ବଦା ହରିରସ ପାନ କରୁଥିବା ହେତୁ ତାଙ୍କର ରସନା ମଧ୍ୟ ପବିତ୍ର । ଏପରି ସତ୍ୟମୟ କରଣୀ ଏବଂ ସେବାଧର୍ମୀ ଅଭ୍ୟନ୍ତର ଦେଇ ସେହି ଅଲେଖ, ଅଭେଦ ପ୍ରଭୁଙ୍କର ମିଳନରେ ହିଁ ଏ ମନ ଚିରକାଳ ପାଇଁ ତୃପ୍ତ । ଯେଉଁଆଡ଼େ ଯାହେଁ ଦୃଷ୍ଟି ପଥରେ ପଡ଼ନ୍ତି କେବଳ ସେହି ସତ୍ୟ ପ୍ରଭୁ । ଯେ ପର୍ଯ୍ୟନ୍ତ ତାଙ୍କୁ ମନୁଷ୍ୟ ନ ବୁଝୁଛି, ସେପର୍ଯ୍ୟନ୍ତ ଏ ଜଗତ ଓ ଜୀବନ ଅସାର । ଗୁରୁଙ୍କୁ ଜାଣିଲେ ହିଁ ତାଙ୍କୁ ଜାଣିବ ଏବଂ କେବଳ ସଦ୍‌ଗୁରୁହିଁ ତାଙ୍କୁ ବୁଝାଇ ପାରିବେ; ଯଦିବା, ଗୁରୂପଦେଶରେ ତାଙ୍କୁ ଜାଣିଥିବା ଲୋକ ସତ୍ୟରେ ଜଗତରେ ବିରଳ । ହେ ରକ୍ଷକ ପ୍ରଭୁ, ରକ୍ଷାକର, ଆପଣ ନିଜେ କୃପା ନକଲେ, ମୁଁ କି ତାହା ଦାବୀ କରି ପାରେ ? ଏବଂ ପ୍ରଭୁ-ଜ୍ଞାନ ବିନା ଆମେ ପଶୁ ଓ ପ୍ରେତ ପରି ମାତ୍ର । ଗୁରୁ ମତେ କହିଛନ୍ତି ଯେ ତୁମ ଛଡ଼ା ବିଶ୍ୱରେ ଦ୍ୱିତୀୟ ବସ୍ତୁ କିଛି ନାହିଁ; ତେଣୁ ଅନ୍ୟ କାହାକୁ ପୂଜା କରିବାକୁ ଯିବି ? ସନ୍ଥଜନମାନଙ୍କ ପାଇଁ ହିଁ ପ୍ରଭୁ ଏହି ତ୍ରିଭୁବନ ଧାରଣ କରିଛନ୍ତି ଏବଂ ସେହି ହିଁ ସନ୍ଥ ଯିଏ ଆତ୍ମାକୁ ଚିହ୍ନି ତତ୍ତ୍ୱ ବିଚାର କରି ବସେ । ସତ୍ୟମୟ ହୃଦୟରେ ହିଁ ସତ୍ୟ-ପ୍ରେମ ଅଧିଷ୍ଠିତ ହୁଏ । ନାନକ ପ୍ରକଟ କରି ଘୋଷଣା କରେ ଯେ, ସେ ଏହିପରି ସନ୍ଥଜନର ଚିର ଦାସ ।

: ୬୫ :

ମନରେ ଗୁରୂପଦେଶକୁ ମୁଦ୍ରିତ କରି କ୍ଷମାଶୀଳତାରୂ-ବସନ ପରିଧାନ କର ଏବଂ ଏପରି ଯେ କରେ, ତାକୁ ଉତ୍ତମ ଜନ ବୋଲି ବିନା ଦ୍ୱିଧାରେ ଗ୍ରହଣ କରି ନିଅ । ତା' ହେଲେ ସହଜରେ ହିଁ ଯୋଗ-ନିଧି ଲାଭ କରିବ । ବାବା, ଯେ ପରମ-ତତ୍ତ୍ୱରେ ବୁଡ଼ି ରହିଛି, ସେ ଯୁଗ ଯୁଗ ଧରି ଯୋଗୀ ହୋଇ ରହିବ, କାରଣ, ନିରଞ୍ଜନଙ୍କ ନାମ ରସାମୃତ ଯେ ପାନ କରିଛନ୍ତି, ତାଙ୍କର୍ ସମଗ୍ର ଶରୀର ଜ୍ଞାନ-ରସର ସ୍ୱାଦ ଭୋଗ କରୁଥାଏ । ହେ ଭାଇ, ଏହିପରି ଭାବରେ ସକଳ କଳ୍ପନା ଓ ବାଦ ବିବାଦ ତ୍ୟାଗ କରି ଯାଇ ବସ ଶିବ-ନଗରୀରେ ନିଜର ଆସନରେ ଏବଂ ଅହର୍ନିଶି ସେଠି ଶୁଣ, ଶିବର ପରିପୂର୍ଣ୍ଣ ସୁନ୍ଦର ଶିଂଘା-ଧ୍ୱନି । ପାତ୍ର-ବିଚାର, ଜ୍ଞାନ-ବିଚାର ଓ ଦଣ୍ଡଧାରଣ କେବଳ ବର୍ତ୍ତମାନର କ୍ଷଣିକ ବିଭୂତି, ଗୁରୂପଦେଶ ତୁମକୁ ଏ ପଥରୁ ଶୀଘ୍ର ଊର୍ଦ୍ଧ୍ୱକୁ ନେଇଯିବ । ଯେଉଁ ଏକ ଜ୍ୟୋତି, ଅଗଣିତ ବର୍ଣ୍ଣରେ ଏ ଜଗତରେ ପ୍ରତିଫଳିତ, ସେହି ହିଁ ଯୋଗୀର ଧ୍ୟାନର ଧ୍ୟେୟ ବସ୍ତୁ, ନାନକ ତେଣୁ କହେ, ହେ ଭର୍ତ୍ତ୍ରି, ହରି ଯୋଗୀ ପରଂବ୍ରହ୍ମ ଏକ ଓ ଅଭିନ୍ନ ।

(ମନକୁ ଏକାଗ୍ର କରିବାପାଇଁ ଯୋଗୀ ମଦ୍ୟପାନ କରୁଥିଲେ । ଯୋଗୀମାନେ ଏହିପରି ଏକ ପାତ୍ର ଗୁରୁନାନକ ଦେବଙ୍କୁ ମଧ୍ୟ ଦେଇଥିଲେ । ଏହି ପଦ ତାହାର ପ୍ରତ୍ୟୁତ୍ତର ଅଟେ ।)

: ୬୨ :

ଗୁଡ଼ୁ କରି ଗିଆନୁ ଧିଆନୁ କରି ଧାବୈ କରି କରଣୀ କସୁ ପାଈଐ ॥
ଭାଠୀ ଭବନୁ ପ୍ରେମ କା ପୋଚା ଇତୁ ରସି ଅମିଉ ଚୁଆଈଐ ॥ ୧ ॥
ବାବା ମନୁ ମତବାରୋ ନାମ ରସୁ ପୀବୈ ସହଜ ରଙ୍ଗ ରଚି ରହିଆ ॥
ଅହିନସି ବନୀ ପ୍ରେମ ଲିବ ଲାଗୀ ସବଦୁ ଅନାହଦ ଗହିଆ ॥ ୧ ॥ ରହାଉ ॥
ପୂରା ସାଚୁ ପିଆଲା ସହଜେ ତିସହି ପୀଆଏ ଜା କଉ ନଦରି କରେ ॥
ଅମୃତ କା ବାପାରୀ ହୋବୈ କିଆ ମଦି ଛୂଛୈ ଭାଉ ଧରେ ॥ ୨ ॥
ଗୁର କୀ ସାଖୀ ଅମୃତ ବାଣୀ ପୀବତ ହୀ ପରବାଣୁ ଭଇଆ ॥
ଦର ଦରସନ କା ପ୍ରୀତମୁ ହୋବୈ ମୁକତି ବୈକୁଣ୍ଠୈ କରୈ କିଆ ॥ ୩ ॥
ସିଫତୀ ରତା ସଦ ବୈରାଗୀ ଜୂଐ ଜନମୁ ନ ହାରୈ ॥
କହୁ ନାନକ ସୁଣି ଭରଥରି ଜୋଗୀ ଖୀବା ଅମୃତ ଧାରୈ ॥ ୪ ॥ ୪ ॥ ୩୮ ॥

ରାଗ ଆସା

ନିଜର ଘରକୁ ଏକ ସୁଦୃଢ଼ ମଦ୍ୟ-ଶାଳା କରି ଗଢ଼ିବା ଇଚ୍ଛାରେ ଜ୍ଞାନକୁ ଗୁଡ଼, ବାହ୍ୟ କର୍ମାଦିକୁ ବାଗଲ ଗଛର ବକଳ ଓ ପ୍ରଭୁ-ପ୍ରେମକୁ ଲେପ ରୂପେ ବ୍ୟବହାର କର । ଧ୍ୟାନ ପ୍ରତି ସର୍ବଦା ନଜର ରଖ । ତେବେ ଯାଇ ସେଥିରୁ ଅମୃତ-ରସ ଝରିବାର ଦେଖିବ ଏବଂ ଏହି ପ୍ରକାର ମହୁଆର । ପ୍ରେମ-ରସ ପାନ କରି ସହଜ ପ୍ରେମାନନ୍ଦରେ ବିଭୋର ହୋଇ ରହ । ଅହର୍ନିଶ ଏହିପରି ପ୍ରେମରେ ମସ୍ତ ରହିଲେ, ସାଧକ ଅନାହତ-ଧ୍ୱନିକୁ ଶ୍ରବଣ କରିପାରେ । ସଂପୂର୍ଣ୍ଣ-ସତ୍ତାରେ ସହଜ-ପିଆଲା ଭରି ଓଠେ । କିନ୍ତୁ ଏ ପ୍ରକାର ସୌଭାଗ୍ୟ ଘଟିଥାଏ, କେବଳ ତାଙ୍କର କୃପାଦୃଷ୍ଟିରୁ । ହେ ଅମୃତର ବେପାରି ! ଇତର ଶ୍ରେଣୀର ମଦରେ ତମେ କିପରି ପ୍ରେମ ଢାଳି ଦେଉଛ ? ସେହି ଅମୃତ-ବାଣୀର ଏକମାତ୍ର ସାକ୍ଷୀ, ସଦ୍‌ଗୁରୁ, ତାଙ୍କ ପ୍ରଦତ୍ତ ଭକ୍ତି-ରସ ପାନ କରିବା ମାତ୍ରେ ମୁଁ ପ୍ରଭୁ ଚରଣରେ ସ୍ୱୀକୃତ ହୋଇ ଉଠିଲି । ଯେ ପ୍ରକୃତ ବୈରାଗୀ ସେ ପ୍ରଭୁ-ସ୍ମୃତିରେ ହିଁ ନିଜକୁ ଲୀନ କରି ରଖେ । ନାନକଙ୍କ ଏହା ମଧ୍ୟ ଘୋଷଣା ଯେ, ଯୋଗୀ ହରିରସାମୃତ ପାନ କରି ସଦା ଭୋଳ ରହିଲେହେଁ; ସଂସାରର ଜୁଆ-ଖେଳରେ ସେ କେବେହେଲେ ନିଜକୁ ହାରିବାକୁ ଦିଏନା ।

( ୩୬୦ )

ତୃତୀୟ ଭାଗ

# ଲକ୍ଷ୍ୟ-ପ୍ରାପ୍ତିର ସାଧନ

## ସଦ୍‌ଗୁରୁ

ଗୁର ଇକ ଦେହୁ ବୁଝାଇ ।
ସଭନା ଜୀଆ କା·ଇକୁ ଦାତା ସୋ ମେ ବିସର ନ ଜାଇ ॥ ୧ ॥

ଜପୁ ପଉଡ଼ୀ ୬

୧ । "ହେ ଗୁରୁ ସେହି ଏକରହିଁ ଜ୍ଞାନ ଦିଅ ମତେ;
ଯେ ସର୍ବଜୀବର ଦାତା,
ଏବଂ ମୁଁ ଯେପରି ତାହା କେବେହେଲେ ଭୁଲି ନ ଯାଏ ।"

## ଗୁରୁଙ୍କ ଆବଶ୍ୟକତା

: ୭୭ :

ବିନୁ ସତଗୁର କନୈ ନ ପାଇଓ ବିନୁ ସତଗୁର କନୈ ନ ପାଇଆ ॥
ସତଗୁର ବିଚ ଆପୁ ରଖିଓନୁ କରି ପରଗଟୁ ଆଖି ସୁଣାଇଆ ॥
ସତଗୁର ମିଲିଐ ସଦା ମୁକତୁ ହୈ ଜିନ ବିଚହୁ ମୋହୁ ଚୁକାଇଆ ॥
ଉତମୁ ଏହୁ ବୀଚାରୁ ହୈ ଜିନ ସଚେ ସିଉ ଚିତୁ ଲାଇଆ ॥
ଜଗ ଜୀବନୁ ଦାତା ପାଇଆ ॥ ୬ ॥

ବାର ଆସା, ପଉଡ଼ୀ ୬

: ୭୮ :

ଜେ ତୂଂ ତାରୂ ପାଣି ତାହୂ ପୁଛୁ ତିଡ଼ନହ କଲ ॥
ତାହୂ ଖରେ ସୁଜାଣ ବଂଞା ଏନୀ କପରୀ ॥ ୩ ॥

ସଲୋକ ବାରାଂ ତେ ବଧୀକ

## ଗୁରୁଙ୍କ ଗୁଣ

: ୭୯ :

ସୋ ଗୁରୁ କରଉ ଜି ସାଚୁ ଦ୍ରିଡ଼ାବୈ ॥ ଅକଥୁ କଥାବୈ ସବଦି ମିଲାବୈ ॥
ହରି କେ ଲୋଗ ଅବର ନହୀ କାରୀ ॥ ସାଚଉ ଠାକୁରୁ ସାଚୁ ପିଆରୀ ॥ ୨ ॥
ତନ ମହି ମନୂଆ ମନ ମହି ସାଚା ॥ ସୋ ସାଚା ମିଲି ସାଚେ ରାଚା ॥
ସେବକୁ ପ୍ରଭ କୈ ଲାଗୈ ପାଇ ॥ ସତଗୁରୁ ପୂରା ମିଲୈ ମିଲାଇ ॥ ୩ ॥

ଧନାସରୀ ଅସଟପଦୀଆ

: ୮୦ :

ଏକ ମହି ସରବ ସରବ ମହି ଏକା ଏହ ସତଗୁରି ଦେଖି ଦିଖାଈ ॥ ୫ ॥
ଜିନ କୀଏ ଖଂଡ ମଂଡଲ ବ୍ରହମଂଡା ସୋ ପ୍ରଭୁ ଲଖନୁ ନ ଜାଈ ॥ ୬ ॥
ଦୀପକ ତେ ଦୀପକୁ ପରଗାସିଆ ତ୍ରିଭବଣ ଜୋତି ଦିଖାଈ ॥ ୭ ॥
ସଚୈ ତଖତି ସଚ ମହଲୀ ବୈଠେ ନିରଭଉ ତାଡ଼ୀ ଲାଈ ॥ ୮ ॥

: ୭୭ :

ସଦ୍‌ଗୁରୁ ବିନା କେହି ତାଙ୍କୁ ପାଇନାହାନ୍ତି ବା ପାଆନ୍ତି ନାହିଁ । ସଦ୍‌ଗୁରୁଠାରେ ହିଁ ସେ ସ୍ୱୟଂ ଅବସ୍ଥିତ, ଗୁରୁଙ୍କ ଦ୍ୱାରା ହିଁ ସେ ପ୍ରକଟିତ ଓ ପ୍ରସ୍ଫୁରିତ ହୋଇଥାନ୍ତି । ସଦ୍‌ଗୁରୁ ମିଳିଗଲେ ମୁକ୍ତି ନିଶ୍ଚିତ, କାରଣ ସଦ୍‌ଗୁରୁଙ୍କ ଯୋଗୁହିଁ ଅନ୍ତରର ମୋହ କଟିଯାଏ । ଏହାହିଁ ଉତ୍ତମ ସିଦ୍ଧାନ୍ତ ଯେ, ଯେ ସତ୍ୟଠାରେ ନିଷ୍ଠାର ସହିତ ନିଜ ଚିତ୍ତକୁ ଲଗ୍ନ କରି ପାରନ୍ତି, ସେ ସହଜରେ ଜଗ-ଜୀବନ-ଧାତାଙ୍କୁ ପାଇପାରିଥାନ୍ତି ।

: ୭୮ :

ହେ ଭାଇ, ତମେ ଯଦି ପାଣିରେ ପହଁରିବ, ତେବେ ସନ୍ତରଣର କୌଶଳ ଶିଖି ନିଅ ସେହି କୁଶଳୀ ପହଁରାଳିମାନଙ୍କଠାରୁ, ଯେ ଏହି ସଂସାରସାଗରକୁ ମଧ୍ୟ ପହଁରି ପାର ହୋଇଯାଇଛନ୍ତି ।

: ୭୯ :

ଏପରି ଗୁରୁଙ୍କର ଶିଷ୍ୟତ୍ୱ ଗ୍ରହଣ କର, ଯେ କି ତୁମକୁ ସତ୍ୟରେ ଦୃଢ଼ ଭାବରେ ପ୍ରତିଷ୍ଠିତ କରିଦେବେ ଏବଂ ଯାହା ଥିଲି ଅକଥନୀୟ ତାକୁ ତୁମ ଆଗରେ କରିବେ କଥନୀୟ, ଏବଂ ତୁମକୁ ଭେଟ କରାଇ ଦେବେ ସତ୍ୟ ସହିତ । ପ୍ରକୃତ ହରିଭକ୍ତର ଏହାଠାରୁ ପ୍ରିୟତର କର୍ମ ଆଉ ନାହିଁ । ସତ୍ୟର ଭଗବାନଙ୍କଠାରୁ ତାଙ୍କର ପ୍ରେମ ଅଧିକ ସ୍ୱାଭାବିକ । ତନ-ମନରେ ପ୍ରଭୁ ସତ୍ୟମୟ ବି ସେହି ସତ୍ୟ ହିଁ ପ୍ରକୃତ ମିଳନରେ ଭକ୍ତର ରୂପହିଁ ସତ୍ୟମୟ ହୋଇଉଠେ । ସେବକ ପ୍ରଭୁଙ୍କ ଚରଣକୁ ହିଁ ଆଶ୍ରୟ କର । ସଦ୍‌ଗୁରୁ ପୂର୍ଣ୍ଣଭାବରେ ପ୍ରସନ୍ନ ହୋଇଗଲେ ସେହିଁ ପ୍ରଭୁଙ୍କୁ ଭେଟାଇ ଦେବେ ।

: ୮୦ :

ସେହି ଏକ ଭିତରେ ସମସ୍ତ ଓ ସମସ୍ତ ଭିତରେ ସେହି ଏକ, ଯେ ସଦ୍‌ଗୁରୁ, ସେ ନିଜେ ଏହା ଦେଖିବା ସାଥେ ସାଥେ ଶିଷ୍ୟମାନଙ୍କୁ ମଧ୍ୟ ଏହା ଦେଖାଇ ଦେଇଥାନ୍ତି । ଯେଉଁ ପ୍ରଭୁ ଏହି ବିରାଟ ଖଣ୍ଡମଣ୍ଡଳ ଓ ବ୍ରହ୍ମାଣ୍ଡ ରଚନା କଲେ, ତାଙ୍କୁ କି କେହି କୌଣସି ରୂପ ଆରୋପିତ କରି ପାରିବ ? କେବଳ ଗୁରୁ-ଦୀପରୁ ଦୀପକୁ ଆଲୋକିତ କରି ଏହି ତ୍ରିଭୁବନରେ ପ୍ରତିଫଳିତ ସେହି ପ୍ରଭୁଙ୍କର ଜ୍ୟୋତି ଆମ୍ଭମାନଙ୍କୁ ଦେଖାଇ ଦେଇଥାନ୍ତି । ସେହି ଭୟସ୍ଥାନ ପ୍ରଭୁ ସତ୍ୟ ମହଲରେ ହିତ୍ୟର ସିଂହାସନ ଉପରେ ବିରାଜିତ । ନାନକ କହେ ଯେ, ଗୁରୁ ତାହାର ଚିତ୍ତକୁ

ମୋହି ଟଇଆ ବୈରାଗୀ ଜୋଗୀ ଘଟି ଘଟି କିଂଗୁରୀ ବାଈ ॥ ୯ ॥
ନାନକ ସରଣି ପ୍ରଭୂ କୀ ଛୁଟେ ସତଗୁର ସଚୁ ସଖାଈ ॥ ୧୦ ॥

ରାମକଲୀ ଦଖଣୀ

: ୭୧ :

ପୂରେ ଗୁର ତେ ନାମୁ ପାଇଆ ଜାଇ ॥ ଜୋଗ ଜୁଗତି ସଚ ରହୈ ସମାଇ ॥
ବାରହ ମହି ଜୋଗୀ ଭରମାଏ ସନିଆସୀ ଛିଅ ଚାରି ॥
ଗୁର କୈ ସବଦି ଜୋ ମରି ଜୀବୈ ସୋ ପାଏ ମୋଖ ଦୁଆରୁ ॥
ବିନୁ ସବଦୈ ସଭି ଦୂଜୈ ଲାଗେ ଦେଖହୁ ରିଦୈ ବୀଚାରି ।
ନାନକ ବଡେ ସେ ବଡଭାଗୀ ଜିନୀ ସଚୁ ରଖିଆ ଉରଧାରି ॥ ୩୪ ॥

ରାମକଲୀ ସିଧ ଗୋସଟି

## ଗୁରୁଙ୍କ କାର୍ଯ୍ୟକ୍ରମ

: ୭୨ :

ଗୁଣବଂତା ଗୁଣ ବୀଥରୈ ଅଉଗୁଣବଂତା ଝୂରି ॥
ଜେ ଲୋଡହି ବରୁ କାମଣୀ ନହ ମିଲୀଐ ପିର କୂରି ॥
ନା ବେଡୀ ନା ତୁଲହଡା ନା ପାଈଐ ପିରୁ ଦୂରି ॥
ମେରେ ଠାକୁର ପୂରୈ ତଖତି ଅଡୋଲୁ ॥
ଗୁରମୁଖି ପୂରା ଜେ କରେ ପାଈଐ ସାଚୁ ଅତୋଲୁ ॥ ୧ ॥ ରହାଉ ॥
ପ୍ରଭୁ ହରିମଂଦରୁ ସୋହଣା ତିସୁ ମହି ମାଣକ ଲାଲ ॥
ମୋତୀ ହୀରା ନିରମଲା କଂଚନ କୋଟ ରୀସାଲ ॥
ବିନୁ ପଉଡୀ ଗଡି କିଉ ଚଡଉ ଗୁର ହରି ଧିଆନ ନିହାଲ ॥ ୨ ॥
ଗୁରୁ ପଉଡୀ ବେଡୀ ଗୁରୂ ଗୁରୁ ତୁଲହା ହରିନାଉ ॥
ଗୁରୁ ସରୁ ସାଗରୁ ବୋହିଥୋ ଗୁରୁ ତୀରଥୁ ଦରୀଆଉ ॥
ଜେ ତିସୁ ଭାବୈ ଊଜଲୀ ସତସରି ନାବଣ ଜାଉ ॥ ୩ ॥
ପୂରୋ ପୂରୋ ଆଖୀଐ ପୂରୈ ତଖତି ନିବାସ ॥
ପୂରୈ ଥାନି ସୁହାବଣୈ ପୂରୈ ଆସ ନିରାସ ॥
ନାନକ ପୂରା ଜେ ମିଲୈ କିଉ ଘାଟୈ ଗୁଣତାସ ॥ ୪ ॥ ୯ ॥

ସିରୀ ରାଗୁ

ତାଙ୍କଠାରେ ଲଗ୍ନ କରାଇ ଦେଇଛନ୍ତି ଏବଂ ସତ୍ୟ-ସଖା ସଦ୍‌ଗୁରୁ ହେତୁରୁ ସେ ପ୍ରଭୁଙ୍କ ନିକଟରେ ଶରଣାଗତ ହୋଇ, ମୁକ୍ତି ଲାଭ କରି ପାରିଛି; ତାର ମୋହ ଗତ ହୋଇଛି, ସେ ଯୋଗୀ ଓ ବୈରାଗୀ ହୋଇଛି, ଏବଂ ଘଟ ଘଟରେ ସେହି ପ୍ରଭୁଙ୍କର ମଧୁର ବାଦନ ଶୁଣି ପାରୁଛି ।

: ୭୧ :

ତଥାକଥିତ ଯୋଗୀ ବାର ବାରଟା ଓ ତଥାକଥିତ ସନ୍ନ୍ୟାସୀ ଦଶ ଦଶଟା ଭୁଲ ବାଟରେ ଭ୍ରମି ବୁଲନ୍ତି, ଅଥଚ କେବଳ ପୂର୍ଣ୍ଣ ଜ୍ଞାନୀ ଗୁରୁଙ୍କଠାରୁହିଁ ନାମ ପ୍ରାପ୍ତ ହୋଇଥାଏ, ଏବଂ ସତ୍ୟରେ ଯୁକ୍ତ ରହିବାହିଁ ପ୍ରକୃତ ଯୋଗ-ମୁକ୍ତି । ଗୁରୁଙ୍କ ଉପଦେଶ ଅନୁସାରେ ଯେଉଁ ଲୋକ ମରି ପୁଣି ନବଜନ୍ମ ଲାଭ କରିଛି, ସେହି କେବଳ ମୋକ୍ଷ-ଦ୍ୱାର ନିକଟରେ ପହଁଚିବ, ଗୁରୂପଦେଶ ବିନା ଦ୍ୱୈତ-ଭାବର ଯେ ବିନାଶ ଆଦୌ ହୋଇ ନ ପାରେ, ତାହାହିଁ ହୃଦୟଂଗମ କର । ନାନକର କଥନ ଏହି ଯେ, ସେ ଅତି ଭାଗ୍ୟବାନ ଯେ ତାର ବକ୍ଷ ଭିତରେ ସତ୍ୟକୁ ଦୃଢ଼ ଭାବରେ ଅବସ୍ଥାପିତ କରିପାରିଛି ।

: ୭୨ :

ଗୁଣବତୀ ନାରୀ ପ୍ରିୟସ୍ୱାମୀର ଗୁଣକୁ ବିସ୍ତାର କରାଇଥାଏ, ଅଗୁଣବତୀଠାରୁ ପ୍ରିୟଜନ ଦୂରେଇ ରହନ୍ତି । ଯେଉଁ ନାରୀ ନିଜର ପ୍ରିୟଜନଙ୍କୁ ନିଜର କରିବାକୁ ଚାହେଁ, ସେ କେବେ ହେଲେ ମିଥ୍ୟାଦ୍ୱାରା ତାହା ପାଇ ପାରିବ ନାହିଁ, ପ୍ରିୟ ଦୂରରେ ସେପଟେ ଅଛନ୍ତି, ଘାଟରେ ଗୋଟିଏ ହେଲେ ନୌକା ନାହିଁ, ତେଣୁ ତାଙ୍କ ପାଖରେ କିପରି ତମେ ପହଁଚିବ ? ମୋର ଦେବତା ଅଚଳ ସିଂହାସନ ଉପରେ ବିରାଜିତ । କେହି ଗୁରୁ ଉପଦେଶ ଦେଇ ମତେ ପୂର୍ଣ୍ଣତା ଦେଇ ପାରିଲେ ବା ମୁଁ ପାଇ ପାରନ୍ତି ସେହି ଅମୂଲ୍ୟ ସତ୍ୟକୁ । ପ୍ରଭୁ ସୁନ୍ଦର ହରିମନ୍ଦିରରେ ବିରାଜିତ, ଯେଉଁଠି ଭରି ରହିଛି ମୋତି-ମାଣିକ୍ୟ । ପ୍ରଭୁ ହୀରା, ମୋତି ଓ ବିଶୁଦ୍ଧ କାଞ୍ଚନରେ ରସାଳ ଦୁର୍ଗ ନିର୍ମାଣ କରିଛନ୍ତି, କିନ୍ତୁ ବିନା ନିଶୁଣୀରେ ପାଚେରି ପାର ହେବ କିପରି ? ଗୁରୁ ଯେଉଁ ହରି-ଧ୍ୟାନରେ ପ୍ରସନ୍ନ ହୋଇଥାନ୍ତି, ସେହି ନିଶୁଣୀ ସାହାଯ୍ୟରେ ହିଁ ତମେ ସେ ପାଚେରି ଡେଇଁଯାଇ ପାର । ଗୁରୁହିଁ ନିଶୁଣୀ, ଗୁରୁହିଁ ହରିନାମଲଦା ନୌକା, ଗୁରୁହିଁ ଏହି ଭବସାଗରର ବୋଇତ, ଏବଂ ଏହି ସାଗରର ଆରପଟେ ଥିବା ତୀର୍ଥସ୍ଥାନ । ଯଦି ତାଙ୍କର କୃପା ହୁଏ, ତେବେ ସେହି ସତ୍ୟ-ସରିତରେ ଅବଗାହନ କରି, ଏକାବେଳେକେ ନିର୍ମଳ-ଉଜ୍ଜ୍ୱଳ ହୋଇ ଯାଅ, ଭାଇ । ଯାହାଙ୍କୁ ପୂର୍ଣ୍ଣାତିପୂର୍ଣ୍ଣ କୁହାଯାଇଥାଏ, ସେ ପୂର୍ଣ୍ଣ ସିଂହାସନ ପରେ ବିରାଜିତ ଥାନ୍ତି, ତାଙ୍କର ବାସସ୍ଥଳୀ ମଧ୍ୟ ପୂର୍ଣ୍ଣ ଓ ସୁନ୍ଦର, ସେଠାରେ ସକଳ ନୈରାଶ୍ୟ ଦୂରୀଭୂତ ହୋଇ ସକଳ ଆଶା ପୂର୍ଣ୍ଣ ହୋଇଥାଏ । ନାନକର କଥନ ଏହି ଯେ, ସେହି ପୂର୍ଣ୍ଣଙ୍କର ସାକ୍ଷାତ ଯଦି ଘଟିଯାଏ ତେବେ ତମ ଗୁଣ-ଭଣ୍ଡାର କୌଣସି ଅଂଶରେ ଓ କେବେହେଲେ ଊଣା ହୋଇ ଯିବ ନାହିଁ ।

: ୭୩ :

ଅଂମ୍ରୃତୁ ନୀରୁ ଗିଆନ ମନ ମଜନୁ ଅଠସଠି ତୀରଥ ସଂଗି ଗହେ ॥
ଗୁର ଉପଦେସି ଜବାହର ମାଣକ ସେବେ ସିଖୁ ସୋ ଖୋଜି ଲହୈ ॥
ଗୁର ସମାନ ତୀରଥ ନହୀ କୋଇ ॥ ସରୁ ସଂତୋଖୁ ତାସୁ ଗୁରୁ ହୋଇ ॥ ୧ ॥ ରହାଉ ॥
ଗୁରୁ ଦରୀଆଉ ସଦା ଜଲୁ ନିରମଲୁ ମିଲିଆ ଦୁରମତି ମୈଲୁ ହରୈ ॥
ସତିଗୁରି ପାଇଐ ପୂରା ନାବଣୁ ପସୂ ପରେତହୁ ଦେବ କରୈ ॥ ୨ ॥
ରତା ସଚି ନାମି ତଲ ହୀଅଲୁ ସୋ ଗୁରୁ ପରମଲୁ କହୀଐ ॥
ଜାକୀ ବାସୁ ବନାସପତି ସଉରୈ ତାସୁ ଚରଣ ଲିବ ରହୀଐ ॥ ୩ ॥
ଗୁରମୁଖି ଜୀଅ ପ୍ରାନ ଉପଜହି ଗୁରମୁଖି ସିବ ଘରି ଜାଈଐ ॥
ଗୁରମୁଖି ନାନକ ସଚି ସମାଈଐ ଗୁରମୁଖି ନିଜ ପଦୁ ପାଈଐ ॥ ୪ ॥ ୬ ॥

ପ୍ରଭାତୀ

## ଗୁରୁଙ୍କ ଶରଣାପନ୍ନ ହେବାର ଫଳ

: ୭୪ :

ଗୃହୁ ବନୁ ସମସରି ସହଜି ସୁଭାଇ ॥ ଦୁରମତି ଗତୁ ଭଈ କୀରତି ଠାଇ ॥
ସଚ ପଉଡ଼ୀ ସାଚଉ ମୁଖି ନାଉ ॥ ସତିଗୁରୁ ସେବି ପାଏ ନିଜ ଥାଉ ॥ ୧ ॥
ମନ ଚୂରେ ଖଟୁ ଦରସନ ଜାଣୁ ॥ ସରବ ଜୋତି ପୂରନ ଭଗବାନୁ ॥ ୧ ॥ ରହାଉ ॥
ଅଧିକ ତିଆସ ଭେଖ ବହୁ କରୈ ॥ ଦୁଖୁ ବିଖିଆ ସୁଖୁ ତନି ପରହରୈ ॥
କାମୁ କ୍ରୋଧୁ ଅଂତରି ଧନୁ ହିରୈ ॥ ଦୁବିଧା ଛୋଡ଼ି ନାମି ନିସତରୈ ॥ ୨ ॥
ସିଫତି ସଲାହଣୁ ସହଜ ଅନଂଦ ॥ ସଖା ସୈନୁ ପ୍ରେମୁ ଗୋବିଂଦ ॥
ଆପେ କରେ ଆପେ ବଖସିଂଦୁ ॥ ତନୁ ମନୁ ହରି ପହି ଆଗୈ ଜିଂଦୁ ॥ ୩ ॥
ଝୂଠ ବିକାର ମହା ଦୁଖୁ ଦେହ ॥ ଭେଖ ବରନ ଦୀସହି ସଭି ଖେହ ॥
ଜୋ ଉପଜୈ ସୋ ଆବୈ ଜାଇ ॥ ନାନକ ଅସଥିରୁ ନାମୁ ରଜାଇ ॥ ୪ ॥ ୧୧ ॥

ଆସା

: ୭୫ :

ନାନକ ଗୁରୁ ସଂତୋଖୁ ରୁଖୁ ଧରମୁ ଫୁଲୁ ଫଲ ଗିଆନୁ ॥
ରସି ରସିଆ ହରିଆ ସଦା ପକୈ କରମି ଧିଆନି ॥
ପତି କେ ସାଦ ଖାଦା ଲହୈ ଦାନା କୈ ସିରି ଦାନୁ ॥ ୧ ॥ ମଂ ୧ ॥
ସୁଇନେ କା ବିରଖୁ ପତ ପରବାଲା ଫୁଲ ଜବେହର ଲାଲ ॥
ତିତୁ ଫଲ ରତନ ଲଗହି ମୁଖି ଭାଖିତ ହିରଦୈ ରିଦୈ ନିହାଲୁ ॥

: ୭୩ :

ଜ୍ଞାନର ଅମୃତଧାରାରେ ତମର ମନ ଯଦି ସ୍ନାନ କରିପାରେ, ତାହା ହିଁ ସମାନ ହେବ ଅଗଣିତ ତୀର୍ଥଯାତ୍ରା ସହିତ; କାରଣ ସେହି ଜଳରେ ବହୁ ତୀର୍ଥର ସଙ୍ଗମ । ଗୁରୁପଦେଶ ମଣି-ମାଣିକ୍ୟଠାରୁ ମୂଲ୍ୟବାନ, ଯେଉଁ ଶିଷ୍ୟ ଗୁରୁଙ୍କର ଯଥାଯୋଗ୍ୟ ସେବା କରିପାରେ, ସେହି ହିଁ କେବଳ ଖୋଜି ପାଏ ସେହି ମଣି-ମାଣିକ୍ୟଗୁଡ଼ିକୁ, କୌଣସି ହେଲେ ତୀର୍ଥ ଗୁରୁଙ୍କ ସହିତ ତୁଳନୀୟ ନୁହେଁ, ଗୁରୁ ସନ୍ତୋଷର ପୂର୍ଣ୍ଣ ସରୋବର, ଗୁରୁ ଏପରି ଏକ ସମୁଦ୍ର, ଯାର ଜଳ ଚିର ନିର୍ମଳ ଏବଂ ସେହି ଜଳ ହିଁ ଆମର ସକଳ ଦୁର୍ମତି ରୂପକ ମଇଳାକୁ ସଫା କରି ଦେଇ ପାରେ, ତେଣୁ ମନେକର ଯେ, ସଦ୍‌ଗୁରୁ ଲାଭ ହିଁ ପୂର୍ଣ୍ଣ ସ୍ନାନ, ପୁଣି ମନୁଷ୍ୟ କଥା କି କହିବା, ଗୁରୁ, ପଶୁ-ପିଶାଚକୁ ମଧ୍ୟ ଦେବତାରେ ପରିଣତ କରି ପାରନ୍ତି । ପ୍ରକୃତ ଗୁରୁ ନାମରେ ଗହନରେ ସର୍ବଦା ବୁଡ଼ି ରହିଥାନ୍ତି, ଗୁରୁଙ୍କୁ ଜାଣିବ ପୁଣ୍ୟ ପରିମଳ, ଯେଉଁ ସୌରଭରେ କି ମନ ବନସ୍ପତି ମଣ୍ଡିତ ହୋଇଥାନ୍ତି, ହେ ମନୁଷ୍ୟ, ତମେ ସେହି ଗୁରୁଙ୍କ ଚରଣରେ ଧ୍ୟାନମଗ୍ନ ରହି । ଗୁରୁକୃପାରେ ତୁମର ପୁନର୍ଜନ୍ମ ହେବ, ଗୁରୁକୃପାରେ ହିଁ ତୁମେ ଶିବଲୋକକୁ ଯାତ୍ରା କରି ପାରିବ । ନାନକର କଥନ ଏହି ଯେ, କେବଳ ଗୁରୁଙ୍କ ଦୟା ହେଲେ ହିଁ ସାଧକ ସତ୍ୟରେ ନିଜକୁ ଲୀନ କରିପାରନ୍ତି ଏବଂ ପାଇ ପାରନ୍ତି ନିଜର ନ୍ୟାଯ୍ୟ ପଦ ।

: ୭୪ :

ଯେତେବେଳେ ପ୍ରଭୁଙ୍କ ଗୁଣଗାନରେ ମନ ଠିକ ବାଟରେ ରହେ, ଏବଂ ଦୁର୍ମତିର ଅତ୍ୟାଚାର ଅପସରି ଯାଏ, ସେତେବେଳେ ସାଧକକୁ ଘର ଓ ବନ ସହଜ ଭାବରେ ସମାନ ମନେ ହୁଏ । ମୁଖରେ ସର୍ବଦା ସତ୍ୟନାମ-ଉଚ୍ଚାରଣ ହିଁ ସତ୍ୟର ନିଶୁଣୀ ଏବଂ କେବଳ ସଦଗୁରୁର ସେବାରେ ହିଁ ମନୁଷ୍ୟ ନିଜର ଯଥାଯୋଗ୍ୟ ଆଧ୍ୟାତ୍ମିକ ଉନ୍ନତି ଲାଭ କରିଥାଏ, ଓ ମନର ବଶ୍ୟତାକୁ ଆସେ ଷଟଦର୍ଶନର ଜ୍ଞାନ ଏବଂ ନିକଟ ହୋଇ ଆସନ୍ତି ସର୍ବଜ୍ୟୋତିର୍ମୟ ଭଗବାନ । ଲୋଭ କେବଳ ବିଷୟ-ତୃଷ୍ଣାକୁ ହିଁ ଅଧିକରୁ ଅଧିକ ବଢାଇଥାଏ, ବିଷୟାସକ୍ତି ଆଣେ ଦୁଃଖ, ଏବଂ ସୁଖ ଶରୀରରୁ ଖସି ପଳାଏ । କାମ, କ୍ରୋଧ ଆମର ସକଳ ଆଭ୍ୟନ୍ତରୀଣ ସମ୍ପଦକୁ ଲୁଟି ନେଇଯାନ୍ତି, ହେ ମନୁଷ୍ୟ ସକଳ ଦ୍ୱିଧା ପରିତ୍ୟାଗ କରି, ନାମରେ ନିଜକୁ ଲୀନ କଲେ ହିଁ ନିସ୍ତାର ଲାଭ କରିବ । ପ୍ରଭୁଗୁଣଗାନ ମନୁଷ୍ୟକୁ ଦିଏ ସହଜ ଆନନ୍ଦ, ପ୍ରଭୁପ୍ରେମହିଁ ମନୁଷ୍ୟର ପ୍ରକୃତ ସଖା ଓ ସମ୍ବନ୍ଧୀ ସେହି ପ୍ରଭୁ, ଯେ ଆମକୁ ଜନ୍ମ ଦେଇଛନ୍ତି, କେବଳ ତାଙ୍କରିଠାରୁ ଆମେ କୃପା ଆଶା କରିବା, ସେହି ହରିଙ୍କଠାରେ ତନ-ମନ-ଧନ ଅର୍ପିତ କରିଦିଅ, ଏବଂ ନିଜର ପ୍ରାଣଟିକୁ ମଧ୍ୟ ତାଙ୍କ ସମ୍ମୁଖରେ ନୈବେଦ୍ୟରୂପେ ଥୋଇ ଦିଅ । ଜାଣିରଖ ଭାଇ, ଅସତ୍ୟ ଓ ବିଷୟାସକ୍ତି ଏହି ଦେହକୁ କେବଳ ବହୁତ ଦୁଃଖ ଦେଇଥାନ୍ତି, ତମର ବେଶବାସ ଓ ସୌନ୍ଦର୍ଯ୍ୟ ପରିଣତ ହୁଏ ବ୍ୟର୍ଥତାରେ । ଯାହା ତୁମର ଶ୍ରମରେ ଉତ୍ପନ୍ନ ହୋଇଥାଏ, ସେ କେବଳ ଆସେ, ଯିବାପାଇଁ । ନାନକର କଥନ ତେଣୁ ଏହି ଯେ, କେବଳ ନାମର ସ୍ୱୀକୃତି ଉପରେ ଯାହା ରଖାଯାଇଥାଏ, ତାହା ହିଁ କେବଳ ସ୍ଥିର ରହେ ।

: ୭୫ :

ନାନକର କଥନ ଏହି ଯେ, ଗୁରୁ ହିଁ ସନ୍ତୋଷର ବୃକ୍ଷ, ଯାହାର ଫୁଲ ଧର୍ମ ଓ ଫଳ ହେଲା ଜ୍ଞାନ । ସେ ବୃକ୍ଷ ସର୍ବଦା ଜୀବନ୍ତ-ଶ୍ୟାମଳ ଓ ରସପୂର୍ଣ୍ଣ, ସତ୍‌କର୍ମ ଓ ଧ୍ୟାନ ଯୋଗେହିଁ ସେ ବୃକ୍ଷର ଫଳ ପାଚିଥାଏ । ଯେ ସେ ଫଳ ଖାଏ, ସେ ନାମର ପରମ-ସଙ୍ଗମ ସୁଖ ପରି ସୁଖ ପାଏ । ତେଣୁ ହେ ଭାଇ, ଗୁରୁଙ୍କ ଦାନକୁ ସର୍ବୋତ୍ତମ ମଣିବ । ଗୁରୁ ଏକ ସ୍ୱର୍ଣ୍ଣ-ବୃକ୍ଷ ପରି, ଯାହାର ପତ୍ରଗୁଡ଼ିକ ପ୍ରବାଳର ଏବଂ ଫୁଲଗୁଡ଼ିକ ଲାଲ୍ ଲାଲ୍ ରତ୍ନାବଳୀର, ସେଠି ଝୁଲୁଥାନ୍ତି ମଧ୍ୟ ଫଳ-ରତ୍ନ ସବୁ । ଗୁରୁଙ୍କ ଅନ୍ତର ଓ ମୁଖରୁ ଯେଉଁ ବାଣୀ ନିର୍ଗତ ହୁଏ ତାହା ଶିଷ୍ୟର ହୃଦୟକୁ ହର୍ଷ-ପ୍ରସନ୍ନ କରି ରଖେ ।

ନାନକ କରମୁ ହୋବୈ ମୁଖି ମସତକ ଲଖିଆ ହୋବୈ ଲଖୁ ॥
ଅଠସଠି ତୀରଥ ଗୁର କୀ ଚରଣୀ ପୂଜୈ ସଦା ବିସେଖୁ ॥
ହଂସୁ ହେତୁ ଲୋଭୁ କୋପୁ ଚାରେ ନଦୀଆ ଅଗି ॥
ପବହି ଦଝହି ନାନକା ତରୀଐ କରମୀ ଲଗି ॥ ୨ ॥

ବାର ମାଝ ପଉଡ଼ୀ ୨୦ ସଲୋକ ୧, ୨

: ୭୬ :

ସତିଗୁର ବିଟହୁ ବାରିଆ ଜିତୁ ମିଲିଐ ଖସମୁ ସମାଲିଆ ॥
ଜିନି କରି ଉପଦେସୁ ଗିଆନ ଅଂଜନୁ ଦୀଆ ଇନ୍ହୀ ନେତ୍ରୀ ଜଗତୁ ନିହାଲିଆ ॥
ଖସମୁ ଛୋଡ଼ି ଦୂଜୈ ଲଗେ ଡୁବେ ସେ ବଣଜାରିଆ ॥
ସତିଗୁରୂ ହୈ ବୋହିଥା ବିରଲୈ କିନୈ ବୀଚାରିଆ ॥
କରି କିରପା ପାରି ଉତାରିଆ ॥ ୧୩ ॥

ବାର ଆସା ପଉଡ଼ୀ ୧୩

: ୭୭ :

ସଚୁ ସତିଗୁରୂ ସେବି ସଚୁ ସମ୍ହାଲିଆ ॥ ଅଂତି ଚଲଦିଆ ଆଇ ଜି ସତିଗୁର ଅଗୈ ଘାଲିଆ ॥
ପୋହି ନ ସକୈ ଜମକାଲୁ ସଚୁ ରଖବାଲିଆ ॥ ଗୁର ସାଖୀ ଜୋତି ଜଗାଇ ଦୀବା ବାଲିଆ ॥
ମନମୁଖ ବିଣୁ ନାବୈ କୂଡ଼ିଆର ଫିରହି ବେତାଲିଆ ॥ ପସୂ ମାଣସ ଚੰମି ପଲେଟେ ଅଂଦରହୁ କାଲିଆ ॥
ସଭୋ ବରତୈ ସଚୁ ସଚୈ ସବଦି ନିହାଲିଆ ॥ ନାନକ ନାମୁ ନିଧାନୁ ହୈ ପୂରୈ ଗୁରି ଦେଖାଲିଆ ॥ ୧୪ ॥

ବାର ମଲାର, ପଉଡ଼ୀ ୧୪

## ଶବଦଦ୍ୱାରା ଗୁରୁ ଶିଷ୍ୟମାନଙ୍କୁ ପାଳନ କରନ୍ତି

: ୭୮ :

ଗୁରମୁଖି ନାଦଂ ଗୁରମୁଖି ବେଦଂ ଗୁରମୁଖି ରହିଆ ସମାଈ ॥
ଗୁରୁ ଈସରୁ ଗୁରୁ ଗୋରଖୁ ବରମା ଗୁରୁ ପାରବତୀ ମାଈ ॥
ଜେ ହଉ ଜାଣା ଆଖା ନାହୀ କହଣା କଥନୁ ନ ଜାଈ ॥
ଗୁରା ଇକ ଦେହି ବୁଝାଈ ॥ ସଭନା ଜୀଆ କା ଇକୁ ଦାତା ସୋ ମୈ ବିସରି ନ ଜାଈ ॥ ୫ ॥

ଜପୁ ପଉଡ଼ୀ ୫

: ୭୯ :

ସତିଗୁର ସବଦୀ ପାଧରୁ ଜାଣି ॥ ଗୁର କੈ ତକୀଐ ସାଚୈ ତାଣି ॥
ନାମୁ ସମ୍ହାଲସି ରୂଡ଼ୀ ବାଣି ॥ ଥੈଂ ଭାବੈ ଦରୁ ଲହସି ପିରାଣି ॥ ୨ ॥

ନାନକର କଥନ ଏହି ଯେ, ଯଦି ଏପରି ଗୁରୁଙ୍କ କୃପା କାହାକୁ ମିଳିଯାଏ ତେବେ ମନେ କରି ମାକୁ ହେବ ଯେ, ତାର ମସ୍ତକରେ ଉତ୍ତମ ଭାଗ୍ୟ-ରେଖା ଅଙ୍କିତ ରହିଛି । ସେହି ଗୁରୁଚରଣରେ ହିଁ ସେ ପାଇଯିବ ଅଗଣିତ ତୀର୍ଥର ପୁଣ୍ୟ, ଗୁରୁଙ୍କର ଏହି ବଶିଷ୍ଟତାକୁ ତେଣୁ ପୂଜା କରିବାର କଥା । ହିଂସା ଓ ମୋହ ଏବଂ ଲୋଭ ଓ କ୍ରୋଧ, ମନେ କର ଭାଇ, ଏମାନେ ସ୍ୱରୂପି ଆଗ୍ନେୟ ନଦୀ । ନାନକ ଘୋଷଣା କରେ ଯେ, ଏ ନଦୀରେ ଯେ ବୁଡ଼ ଦିଏ ସେ ତ ଜଳି ମରିବଇ ମରିବ; କିନ୍ତୁ ଯଦି କେବଳ ଗୁରୁ-କୃପା ମିଳିଯାଏ, ତେବେ ଏହି ଭୀଷଣ ନଦୀମାନଙ୍କୁ ମଧ୍ୟ ମନୁଷ୍ୟ ସହଜରେ ପାର ହୋଇଯାଇପାରେ ।

: ୭୬ :

ସେହି କେବଳ ସଦ୍‌ଗୁରୁ, ଯାହାଙ୍କ ସହିତ ଭେଟ ହେବାରୁ, ମୁଁ ମୋର ସ୍ୱାମୀଙ୍କୁ ସ୍ମରଣ କଲି, ଏବଂ ଯିଏ ମୋ ଆଖିରେ ଜ୍ଞାନାଞ୍ଜନ ଲେପି ଦେଥିଲେ, ଆଖି ମେଲାଇ ମୁଁ ଏ ଜଗତକୁ ଭଲଭାବରେ ଦେଖି ପାରିଲି, ତାଙ୍କ ନିକଟରେ ମୁଁ ତେଣୁ ସଂପୂର୍ଣ୍ଣ କୃତଜ୍ଞ । ସେ ପ୍ରକାର ସ୍ୱାମୀଙ୍କୁ ପରିତ୍ୟାଗ କରି ଯେ ଅନ୍ୟଠାରେ ପ୍ରେମ ନିବେଦିତ କରେ ସେ ନିଶ୍ଚୟ ଭବସାଗରରେ ଡୁବିବଇ ଡୁବିବ, ତାକୁ କୁହାଯିବ ଏକ ଲକ୍ଷ୍ୟଭ୍ରଷ୍ଟ ବଣିକ ମାତ୍ର । ସଦ୍‌ଗୁରୁ ହିଁ ଏହି ଭବସାଗରର ପ୍ରକୃତ ବୋଇତ; କିନ୍ତୁ କିଏ ଏକଥା ବିଚାରକୁ ନେଉଛି ? ସଦ୍‌ଗୁରୁ ତାଙ୍କର ସ୍ୱତଃସ୍ଫୂର୍ତ୍ତି କୃପାରେ ହିଁ ଶିଷ୍ୟମାନଙ୍କୁ ଉଦ୍ଧାର ନେଇଯାନ୍ତି ।

: ୭୭ :

ସଦ୍‌ଗୁରୁ-ସେବାଦ୍ୱାରା ହିଁ ସତ୍ୟ କ'ଣ ମୁଁ ଜାଣିପାରିଲି, ଏବଂ ଗୁରୁସେବାରେ ସକଳ ଶ୍ରମ ଶେଷରେ ମୋର ହିଁ କଲ୍ୟାଣରେ ପରିଣତ ହେଲା । ସତ୍ୟହିଁ ମୋର ରକ୍ଷକ; ତେଣୁ ଯମ ଓ ମୃତ୍ୟୁର ପ୍ରଭାବରୁ ମୁଁ ବର୍ତ୍ତମାନ ମୁକ୍ତ, ଗୁରୂପଦେଶ ମୋର ଦୀପ ଜାଳି ଦେଇଛି, ଯାହା ଫଳରେ ମୁଁ ଆଜି ଉଜ୍ଜ୍ୱଳିତ । ନାମ-ବିହୀନ ସ୍ୱେଚ୍ଛାଚାରୀ ସଂସାରାସକ୍ତ ଲୋକ ପ୍ରେତପରି ଏ ଧରାରେ ଖାଲି ଏଣେ ତେଣେ ଭ୍ରମୁଥାନ୍ତି, ସେଗୁଡ଼ିକ ମାନବ-ଚର୍ମ-ଧାରୀ ପଶୁମାତ୍ର । ସେମାନଙ୍କର ଅନ୍ତର ଗଭୀର କାଳିମାମୟ । ସତ୍ୟ ଯେ ସର୍ବ ଜଗତରେ ପରିବ୍ୟାପ୍ତ, ନାମ ବଳରେ ମୁଁ ଏହା ଦେଖି ପାରୁଛି । ନାନକ ତେଣୁ କହେ ଯେ, ନାମ ଏକ ଗନ୍ତାଘର ଯାହାକୁ ପୂର୍ଣ୍ଣଗୁରୁ ମତେ ଦେଖାଇ ଦେଇଛନ୍ତି ।

: ୭୮ :

ଗୁରୁ-ଶବ୍ଦହିଁ ନାଦ, ଗୁରୁ-ଶବ୍ଦହିଁ ବେଦ, ଗୁରୁ ଏହି ଶବ୍ଦରେ ଏ ସମସ୍ତ ଅନ୍ତର୍ଭୁକ୍ତ । ଗୁରୁହିଁ ଶିବ, ଗୋରଖ, ବ୍ରହ୍ମା ଓ ମାତା ପାର୍ବତୀ ଏବଂ ଗୁରୁଙ୍କୁ ଜାଣିଥିଲେ ହେଁ, ମୁଁ ତାଙ୍କର ବର୍ଣ୍ଣନା କରିବାରେ ଅଶକ୍ତ, କାରଣ, ସଦ୍‌ଗୁରୁର ଚରିତ-ବର୍ଣ୍ଣନ ମନୁଷ୍ୟ-ବାଣୀରେ ସମ୍ଭବ ନୁହେଁ । ହେ ଗୁରୁ, ମତେ ସେହି ଏକକଙ୍କର ଜ୍ଞାନ ଦିଅ, ଯେ ସକଳ ଜୀବନର ଦାତା—ମୁଁ ଯେପରି କେବେହେଲେ ତାଙ୍କୁ ବିସ୍ମୃତ ନ ହୋଇଯାଏ ।

: ୭୯ :

ହେ ମନୁଷ୍ୟ, ସଦ୍‌ଗୁରୁର ଉପଦେଶରେ ଆଧ୍ୟାତ୍ମିକ ସାଧନାର ମାର୍ଗ ସହିତ ପରିଚିତ ହୋଇଯାଅ । ଗୁରୁ-ଅବଲମ୍ବନରୁ ସତ୍ୟ-ଶକ୍ତି ଆସେ, ଗୁରୁଙ୍କର ସୁନ୍ଦର ବାଣୀ ଅନୁସାରେ ନାମକୁ ସର୍ବଦା ସ୍ମରଣ ରଖ । ହେ ଗୁରୁ, ତୁମର

ଛଡ଼ାଂ ବେଷା ଏକ ନିରଙ୍କାର ।। ଗୁର କେ ସବଦ ନାମ ଆଧାର ।।
ନା ଜଲୁ ଡୁଁ ଗରୁ ନ ଊଚୀ ଧାର ।। ନିଜ ଘରି ବାସା ତହ ମଗୁ ନ ଚାଲଣହାର ।। ୩ ।।
ଜିତୁ ଘରୁ ବସହି ତୁହେ ବିଧି ଜାଣହି ବୀଜଉ ମହଲୁ ନ ଜାପେ ।।
ସତଗୁର ବାଝହୁ ସମଝ ନ ହୋଵୀ ସଭୁ ଜଗୁ ଦବିଆ ଛାପେ ।।
କରଣ ପଲାବ କରେ ବିଲଲାବଉ ବିନୁ ଗୁର ନାମୁ ନ ଜାପେ ।।
ପଲ ପଂକଜ ମହି ନାମୁ ଛଡ଼ାଏ ଜେ ଗୁର ସବଦୁ ସିଞ୍ଜାପେ ।। ୪ ।।
ଇକ ମୂରଖ ଅଂଧେ ମୁଗଧ ଗଵାର ।। ଇକ ସତଗୁର କୈ ଭୈ ନାମ ଅଧାର ।।
ସାଚୀ ବାଣୀ ମୀଠୀ ଅଂମ୍ରିତ ଧାର ।। ଜିନି ପୀତୀ ତିସୁ ମୋଖଦୁଆର ।। ୫ ।।
ନାମୁ ଭୈ ଭାଇ ରିଦୈ ବସାହୀ ଗୁର କରଣୀ ସଚୁ ବାଣୀ ।।
ଇଂଦୁ ବରସୈ ଧରତି ସୁହାଵୀ ଘଟି ଘଟି ଜୋତି ସମାଣୀ ।।
କାଲରି ବୀଜସି ଦୁରମତି ଐସୀ ନିଗୁରେ କୀ ନୀସାଣୀ ।।
ସତଗୁର ବାଝହୁ ଘୋର ଅଂଧାରା ଡୂବି ମୁଏ ବିନୁ ପାଣୀ ।। ୬ ।।

ମଲାର ଅସଟପଦୀଆଂ

## ଗୁରୁ-ଶବ୍ଦ ହିଁ ଗୁରୁ ଅଟେ

: ୮୦ :

ସବଦୁ ଗୁରୂ ପୀରା ଗହିର ଗଂଭୀରା ବିନୁ ସବଦୈ ଜଗୁ ବଉରାନଂ ।।
ପୂରା ବୈରାଗୀ ସହଜି ସୁଭାଗୀ ସଚୁ ନାନକ ମନୁ ମାନଂ ।। ୮ ।। ୧ ।।

ସୋରଠ ଅସଟପଦୀଆଂ

: ୮୧ :

ଭନତି ନାନକୁ କରେ ବୀଚାରୁ ।। ସାଚୀ ବାଣୀ ସିଉ ଧରେ ପିଆରୁ ।।
ତା କୋ ପାବୈ ମୋଖ ଦୁଆରୁ ।। ଜପୁ ତପୁ ସଭୁ ଇହୁ ସବଦୁ ହୈ ସାରୁ ।। ୫ ।। ୨ ।। ୪ ।।

ଧନାସରୀ

## ଆରତୀ *

: ୮୨ :

ଗଗନ ମୈ ଥାଲୁ ରବି ଚଂଦୁ ଦୀପକ ବନେ ତାରିକା ମଂଡଲ ଜନକ ମୋତୀ ।।
ଧୂପୁ ମଲଆନଲୋ ପଵଣୁ ଚଵରୋ କରେ ସଗଲ ବନରାଇ ଫୂଲଂତ ଜୋତୀ ।। ୧ ।।

---

* ଗୁରୁ ନାନକ ଦେବ ଯେତେବେଳେ ପୁରୀ ଜଗନ୍ନାଥ ମନ୍ଦିରକୁ ଗଲେ, ସଂଧ୍ୟା ସମୟରେ ପୂଜାରୀମାନେ ତାଙ୍କୁ ଜଗନ୍ନାଥ ମୂର୍ତ୍ତିଙ୍କ ଆରତୀରେ ଅଂଶ ଗ୍ରହଣ କରିବାକୁ କହିଲେ । ଗୋଟିଏ ଥାଳିରେ ଆରତୀର ଦିଆଁ ଜାଳି ରଖାଯାଇଥିଲା । ଧୂପ ମଧ୍ୟ ଜଳାଯାଇଥିଲା । ମୂର୍ତ୍ତିଙ୍କ ଉପରକୁ ଫିଙ୍ଗାଯିବା ପାଇଁ ଫୁଲ ମଧ୍ୟ ରଖାଯାଇଥିଲା । ଗୁରୁ ନାନକ ଦେବଜୀ ଏହି ଶବ୍ଦ ରଚନା କଲେ ଯେ ମୋର ଈଶ୍ୱରଙ୍କର ଆରତୀ ତ ମନକୁ ମନ ହେଉଅଛି ।

କୃପାରୁହିଁ ଜୀବକୁ ମିଳିଥାଏ ମୋକ୍ଷ-ଦ୍ୱାରର ପରିଚୟ, ଏବଂ ସେହି ଏକକଠାରେ ଲକ୍ଷ୍ୟ ରଖିଲେ, ଏକ ସ୍ଥାନରେ ବସି ମଧ୍ୟ ଆକାଶରେ ଉଡ଼ିବାର ଅନୁଭବ ପାଇବ । ଗୁରୂପଦେଶ ନାମର ଆଧାର, ସେହି ନାମର ଆଶ୍ରୟ ନେଲେ, ତମକୁ ଘର ଛାଡ଼ି କାହିଁ ଯିବାକୁ ପଡ଼ିବ ନାହିଁ, ଗଲେ ମଧ୍ୟ ଜଳ, ପର୍ବତ ବା ବର୍ଷା ତମର ଅଗ୍ରଗତିକୁ ରୋଧିପାରିବେନାହିଁ । ହେ ପ୍ରଭୁ, ତୁମେ ଯେଉଁ ଘରେ ବାସ କର, ତାହାର ଅବସ୍ଥା କେବଳ ତୁମକୁହିଁ ଜଣା, ତୁମ-ଶୂନ୍ୟ ଦ୍ୱିତୀୟ ଆଶ୍ରୟ ବା କାହିଁ ? ସଦ୍‌ଗୁରୁ ବିନା ଏଇ ସାମାନ୍ୟ ସତ୍ୟ ମଧ୍ୟ ଆମ ମନ ଭିତରେ ପ୍ରବେଶ କରେ ନାହିଁ ଯେ, ସମଗ୍ର ଜଗତ୍ ତମର ଆସନ ତଳେ ଲୁପ୍ତ ହୋଇ ରହିଛି । ହେ ମନୁଷ୍ୟ, ଜାଣିରଖ ଯେ, ଯେତେ ବିଳାପ କଲେ ହେଁ ଗୁରୁ ବିନା ନାମର ପ୍ରକୃତ ଜ୍ଞାନ ଅସମ୍ଭବ । ଅଥଚ, ଯଦି ସୌଭାଗ୍ୟବଶରୁ ସଦ୍‌ଗୁରୁଙ୍କ ସହିତ ପରିଚୟ ଘଟିଯାଏ, ତେବେ ନିମିଷ ମାତ୍ରେ ତାଙ୍କ-ପ୍ରଦତ୍ତ ନାମ ତୁମକୁ ମୁକ୍ତି ଦିଆଇ ଦେବାକୁ ସମର୍ଥ । ଆମ ଭିତରୁ ଅଧିକାଂଶ ଅନ୍ଧ, ମୂକ ଓ ଅସଭ୍ୟ; କାରଣ, ଯେଉଁ ସଦ୍‌ଗୁରୁ ହିଁ ନାମର ଆଧାର ତାଙ୍କୁ ଦୂରରେ ଭିଡ଼ିକରି ଆମେ ପଡ଼ିଛେଇ ରହିଛୁ । କିନ୍ତୁ ସତ୍ୟର ବାଣୀ ସୁମିଷ୍ଟ ଅମୃତ-ଧାର । ଯେ ତାହା ପିଇନିଏ, ତା'ପାଇଁ ଖୋଲିଯାଏ ମୁକ୍ତିର ଦ୍ୱାର । ନାମର ଭୟ ଓ ଅସଭ୍ୟ ସମ୍ମାନ କର, ଗୁରୁ-ଭାଷିତ ଉପଦେଶ ଓ ଗୁରୁ-ନିର୍ଦ୍ଦିଷ୍ଟ କର୍ମକୁ ଯଦି ହୃଦୟରେ ପ୍ରତିଷ୍ଠିତ କରିଯାଏ, ତେବେ ଇନ୍ଦ୍ର ଯଥାକାଳେ ବର୍ଷା କରିଥାଏ, ଧରଣୀ ଶସ୍ୟ-ଶ୍ୟାମଳ ରହେ, ଏବଂ ପ୍ରତି ନରନାରୀଙ୍କର ହୃଦୟରେ ଦୈବତ ଜ୍ୟୋତି ବିକଶିତ ହୋଇ ଉଠେ । କିନ୍ତୁ ଗୁରୁହୀନ ଜୀବନ ସୁନିର୍ଣ୍ଣିତରେ ଊଷର ମାଟିରେ ଦୁର୍ମତିର ବୀଜ-ବପନ ପରି । ସଦ୍‌ଗୁରୁ-ହୀନ ଜୀବନ ଘୋର-ଅନ୍ଧକାରମୟ, ଯେଉଁଠି ଲୋକ ବିନା ପାଣିରେହିଁ ବୁଡ଼ି ମରେ ।

: ୮୦ :

ପ୍ରକୃତରେ ନାମହିଁ ଗୁରୁ ଓ ସିଦ୍ଧ ଏବଂ ଗହନ-ଗମ୍ଭୀର । ନାମହୀନ ସମାଜ, ଏକ ପାଗଳର ଗୋଷ୍ଠୀପରି । ନାମଯୁକ୍ତ ଜନ ଯେ ପ୍ରକୃତ ବୈରାଗୀ ଓ ସୌଭାଗ୍ୟଶାଳୀ, ଏହାହିଁ ନାନକର ସ୍ୱୀକାର ।

: ୮୧ :

ନାନକ କହନ୍ତେ ଯେ ନାମହିଁ ଜପତପର ସାର, ନାମହିଁ ଆମକୁ ପହଁଚାଇ ପାରିବ ମୋକ୍ଷଦ୍ୱାର ପାଖେ, ତେଣୁ ସେହି ସତ୍ୟ ବାଣୀକି ପ୍ରେମ କର ଏବଂ ସବୁବେଳେ ତାହାର ମର୍ମକୁ ବିଚାର କର ।

: ୮୨ :

ଆକାଶ ଏକ ଥାଳି, ଯେଉଁଠି ଚନ୍ଦ୍ର ଏକ ପ୍ରଦୀପ ଓ ତାରାମାନେ ମଣି-ମାଣିକ୍ୟ ପରି, ମଳୟାନିଳ ଧୂପ, ପବନ ଚାମର ସଞ୍ଚାଳନ କରେ; ସକଳ ବନସ୍ପତିର ପୁରହିଁ ଜ୍ୟୋତି । ହେ ଭବ-ତାପ-ଖଣ୍ଡନ ପ୍ରଭୁ, ଏ ତୁମ୍ଭର କି ସୁନ୍ଦର ଆରତି, ଯେଉଁଠି ମନେହୁଏ କି ଅନାହତ ଶବ୍ଦ ଭେରୀ ବଜାଉଛି । ତମର ଗୋଟିଏ ହେଲେ ଆଖି ନାହିଁ, ଅଥଚ ତୁମେ ସହସ୍ର-ନେତ୍ର, ନାହିଁ ତୁମର କୌଣସି ବିଶେଷ ମୂର୍ତ୍ତି, ଅଥଚ ତୁମେ ସହସ୍ର-ମୂର୍ତ୍ତି, ତମେ ପାଦହୀନ ହେଲେ ହେଁ, ତମର ସହସ୍ର ନିର୍ମଳ ପାଦ ଆମେ ଦେଖି ପାରୁଛୁ ।

କୈସୀ ଅରତୀ ହୋଇ ଭବ ଖଂଡନା ତେରୀ ଆରତୀ ॥
ଅନହତା ସବଦ ବାଜଂତ ଭେରୀ ॥ ୧ ॥ ରହାଉ ॥
ସହସ ତବ ନୈନ ନନ ନୈନ ହୈ ତୋହି କଉ ସହସ ମୂରତି ନନା ଏକ ତୋହୀ ॥
ସହସ ପଦ ବିମଲ ନନ ଏକ ପଦ ଗଂଧ ବିନୁ ସହସ ତବ ଗଂଧ ଇବ ଚଲତ ମୋହୀ ॥ ୨ ॥
ସଭ ମହି ଜୋତି ଜୋତି ହୈସୋଇ ॥ ତିସ କୈ ଚାନଣି ସଭ ମହି ଚାନଣୁ ହୋଇ ॥
ଗୁର ସାଖୀ ଜୋତି ପରଗଟୁ ହୋଇ ॥ ଜୋ ତିସୁ ଭାବୈ ସୁ ଆରତି ହୋଇ ॥ ୩ ॥
ହରି ଚରଣ କମଲ ମକରନ୍ଦ ଲୋଭିତ ମନୋ ଅନଦିନୋ ମୋହି ଆହୀ ପିଆସା ॥
କ୍ରିପା ଜଲୁ ଦେହି ନାନକ ସାରଂଗ କଉ ହୋଇ ଜା ତେ ତେରୈ ନାମି ବାସା ॥ ୪ ॥ ୧ ॥ ୭ ॥ ୯ ॥

—ଧନାସରୀ

## ସାଂସାରିକ ବସ୍ତୁ ସବୁ ଅସ୍ଥିର

: ୮୩ :

ଧନୁ ଜୋବନୁ ଅରୁ ଫୁଲଡ଼ା ନାଠୀଅଡ଼େ ଦିନ ଚାରି ॥
ପବଣି କେରେ ପତ ଜିଉ ଢଲି ଢୁଲି ଜୁମଣହାର ॥ ୧ ॥
ରଙ୍ଗୁ ମାଣି ଲୈ ପିଆରିଆ ଜା ଜୋବନୁ ନଉ ହୁଲା ॥
ଦିନ ଥୋଡ଼ଡ଼େ ଥକେ ଭଇଆ ପୁରାଣା ଚୋଲା ॥ ୧ ॥ ରହାଉ ॥
ସଜଣ ମେରେ ରଙ୍ଗୁଲେ ଜାଇ ସୁତେ ଜୀରାଣି ॥
ହଂମୀ ଵଞ୍ଞା ଡୁଂମଣୀ ରୋଂବା ଝୀଣୀ ବାଣି ॥ ୨ ॥
ଜୀ ନ ସୁଣେହୀ ଗୋରୀଏ ଆପଣ କଂନୀ ସୋଇ ॥
ଲଗୀ ଆବହି ସାହୁରୈ ନିତ ନ ପେଈଆ ହୋଇ ॥ ୩ ॥
ନାନକ ସୁତୀ ପେଈଐ ଜାଣୁ ବିରତୀ ସଂନି ॥
ଗୁଣା ଗବାଈ ଗଂଠଡ଼ୀ ଅବଗଣ ଚଲୀ ବଂନି ॥ ୪ ॥ ୨୪ ॥ ସିରୀରାଗୁ

: ୮୪ :

ଦର ଘର ମହଲା ସୋହଣେ ପକେ କୋଟ ହଜାର ॥
ହସତୀ ଘୋଡ଼େ ପାଖରେ ଲସକର ଲଖ ଅପାର ॥
କିସହୀ ନାଲି ନ ଚଲିଆ ଖପି ଖପି ମୁଏ ଅସାର ॥ ୩ ॥
ସୁଇନା ରୁପା ସଂଚୀଐ ମାଲୁ ଜାଲୁ ଜଂଜାଲୁ ॥
ସଭ ଜଗ ମହି ଦୋହି ଫେରୀଐ ବିନୁ ନାଵୈ ସିରି କାଲୁ ॥
ପିଣ୍ଡୁ ପଡ଼ୈ ଜୀଉ ଖେଲସୀ ବଦଫୈଲୀ କିଆ ହାଲୁ ॥ ୪ ॥

ତୁମେ ଏକାଧାରେ ଗନ୍ଧହୀନ ଓ ସହସ୍ର ଗନ୍ଧମୟ । ହେ ପ୍ରଭୁ ତମର ଏହି ଲୀଳା ଦେଖି ଦେଖି ମୁଁ ମୁଗ୍ଧ ହୋଇଉଠେ । ଜଗତରେ ଯାହା ଯେଉଁଠି ଜ୍ୟୋତିର୍ମାନ ସେ ସବୁ ତୁମରି ହିଁ, ପ୍ରଭୁ ତୁମରି ଆଲୋକରେ ହିଁ ଏ ସୃଷ୍ଟି ଆଲୋକିତ । ଗୁରୁଙ୍କ ଉପଦେଶ ହିଁ ତୁମର ଏହି ଜ୍ୟୋତିକୁ ପ୍ରକଟିତ କରାଏ, ତାଙ୍କର ସ୍ୱୀକୃତି ହିଁ ଏକ ଆରତି । ମୋର ଚିତ୍ତ ହରି-ଚରଣ-କମଳ-ମଧୁପାନରେ ଲୁବ୍ଧ, ଅନୁଦିନ ତାହାହିଁ ପାନ କରିବାକୁ ମୋର ଅତୃପ୍ତ ତୃଷା । ହେ ପ୍ରଭୁ, ନାନକରୂପୀ ଚାତକକୁ ଏପରି ଜଳ ଦାନ କର, ଯାହାର ଅଭ୍ୟନ୍ତରରେ ତମର ନାମ ବରାବର ବାସ କରି ରହିବ ।

: ୮୩ :

ଧନ ଓ ଯୌବନ କେବଳ ଫୁଟିଲା ଫୁଲ ପରି, ଚାରିଦିନ ମଧ୍ୟ ଲାଗିବନି ସେସବୁ ନଷ୍ଟ ହେବାକୁ, ପାଣି ନ ପାଇଲେ କୋମଳ ପତ୍ର ଝାଉଁଳି ପଡ଼େ ଯେପରି । ଯେତେକ୍ଷଣ ପର୍ଯ୍ୟନ୍ତ ଯୌବନ ଥାଏ ନୂତନ ଓ ପ୍ରିୟ ଆନନ୍ଦ ଭୋଗ କେବଳ ସେତିକିଟି, କ୍ଷଣ ମାତ୍ର କେତୋଟି ଦିନ ପରେ ଯୌବନ ଥକିଯିବ, ଏବଂ ଦେହ ହୋଇଯିବ ପୁରୁଣା, ବା, ତୁମର ସେହି ପ୍ରିୟ ମିତ୍ର ସେତେବେଳକୁ କବର ନେଇ ସାରିଥିବେ । ହେ ଗୌରବର୍ଣ୍ଣା ସୁନ୍ଦରୀ ଯୁବତୀ ! ତୁମ କାନକୁ ଏ ଖବର କଣ ଆସିନି ଯେ, ତୁମକୁ ଯିବାକୁ ହେବ ଶ୍ୱଶୁରାଳୟକୁ—ମା' ଘରେ କେହି ସବୁଦିନ ରହେ ନାହିଁ ? ନାନକ କହେ ଯେ, ତୁ ତ ଏବେ ମା' ଘରେ ନିଶ୍ଚିନ୍ତରେ ଶୋଇ ରହିଛୁ; କିନ୍ତୁ ଚୋର ସିନ୍ଧିକାଟି, ଘରେ ପଶି, ତୋର ଗୁଣରେ ଟଣି ଶିଟି ନେଇ ପଳେଇବ, ଏବଂ ତୋ ପାଖରେ ଥିବ କେବଳ ତୋର ଅବଗୁଣଗୁଡ଼ିକର ପୁଡ଼ାଟି ।

: ୮୪ :

ସୁନ୍ଦର ଦ୍ୱାର, କକ୍ଷ-ମହଲ-ସମନ୍ୱିତ ସହସ୍ର ଦୁର୍ଗ, ଜୀନ-ହାଉଦା- ସମନ୍ୱିତ ଅଗଣିତ ହାତୀ, ଘୋଡ଼ା ଓ ଅଗଣିତ ଲୋକଲସ୍କର; କିନ୍ତୁ ଏ ସମସ୍ତ ସାରହୀନ, ଗୋଟି ଗୋଟି କରି ସମସ୍ତେ ମରିବେ, କେହି କାହା ସାଥିରେ ଯାଇ ପାରିବେ ନାହିଁ । ତେଣୁ ହେ ଭାଇ, ଜାଣିରଖ ଯେ, ସୁନା, ରୁପାର ସଞ୍ଚୟ ଓ ଧନ ମାଲ ଆଦି, ସମସ୍ତହିଁ ଜଞ୍ଜାଳ । ସାରା ଦୁନିଆରେ ବହୁବିଧ ଆତଙ୍କପରିବ୍ୟାପ୍ତ, ଏବଂ ଯେ ସବୁ ନାମ-ବିହୀନ । ସେହିମାନଙ୍କ ମୁଣ୍ଡ ଉପରେହିଁ କାଳର ସହଜ ଆସନ । ସମସ୍ତଙ୍କର ତ ପିଣ୍ଡ ଧ୍ୱଂସ ହୋଇ ଯିବ ଓ ଜୀବ ଚାଲିଯିବ । କିନ୍ତୁ ଯେ ଅପକର୍ମୀ ତାହାର ହାଲ ତେବେ କଣ ହେବ, ବିଚାରିଛ କି ? ପୁତ୍ରକୁ ଦେଖି ପିତାର ମନ ପ୍ରସନ୍ନ ହୋଇ ଉଠୁଛି, ଶଯ୍ୟାପରେ

ପୂତା ଦେଖି ବିଗସୀଐ ନାରୀ ସେଜ ଭତାର ॥
ଚୋଆ ଚନ୍ଦନୁ ଲାଈଐ କାପଡୁ ରୂପୁ ସୀଗାରୁ ॥
ଖେହୂ ଖେହ ରଲାଈଐ ଛୋଡି ଚଲୈ ଘର ବାରୁ ॥ ୬ ॥
ମହର ମଲୂକ କହାଈଐ ରାଜା ରାଉ କି ଖାନୁ ॥
ଚଉଧରୀ ରାଉ ସଦାଈଐ ଜଲି ବଲୀଐ ଅଭିମାନ ॥
ମନମୁଖି ନାମୁ ବିସାରିଆ ଜିଉ ଡବି ଦଧା କାନୁ ॥ ୭ ॥
ହଉମୈ କରି କରି ଜାଇସୀ ଜୋ ଆଇଆ ଜଗ ମାହି ॥
ସଭୁ ଜଗୁ କାଜଲ କୋଠଡ଼ୀ ତନୁ ମନୁ ଦେହ ସୁଆହି ॥
ଗୁରି ରାଖେ ସେ ନିରମଲେ ସବଦି ନିବାରୀ ଭାହି ॥ ୭ ॥
ନାନକ ତରୀଐ ସଚି ନାମି ସିରି ସାହା ପାତିସାହୁ ॥
ମୈ ହରି ନାମୁ ନ ବୀସରୈ ହରି ନାମୁ ରତନୁ ବେସାହୁ ॥
ମନମୁଖ ଭଉଜଲି ପଚି ମୁଏ ଗୁରମୁଖି ତରେ ଅଥାହୁ ॥ ୮ ॥ ୧୬ ॥

ସିରି ରାଗୁ ଅସଟପଦୀଆ

## ମାୟାଜାଲରୁ ଉଦ୍ଧାର ପାଇବ କିପରି ?

: ୮୫ :

ମାଇଆ ମାଇଆ କରି ମୁଏ ମାଇଆ କିସୈ ନ ସାଥି ॥
ହଂସୁ ଚଲୈ ଉଠି ଡୁମଣୋ ମାଇଆ ଭୁଲୀ ଆଥି ॥
ମନୁ ଝୂଠା ଜମି ଜୋହିଆ ଅବଗୁଣ ଚଲହି ନାଲି ॥
ମନ ମହି ମନୁ ଉଲଟୋ ମରୈ ଜେ ଗୁଣ ହୋବହି ନାଲି ॥
ମେରୀ ମେରୀ କରି ମୁଏ ବିଣୁ ନାବୈ ଦୁଖୁ ଭାଲି ॥
ଗଡ଼ ମନ୍ଦର ମହଲା କହା ଜିଉ ବାଜୀ ଦୀବାଣୁ ॥
ନାନକ ସଚେ ନାମ ବିଣୁ ଝୂଠା ଆବଣ ଜାଣୁ ॥
ଆପେ ଚତୁରୁ ସରୂପୁ ହୈ ଆପେ ଜାଣୁ ସୁଜାଣୁ ॥ ୪୨ ॥

ରାମକଲୀ ଦଖଣୀ ଓଅଂକାରୁ

: ୧୬ :

ସରମୁ ଧରମୁ ଦୁଇ ନାନକା ଜେ ଧନୁ ପଲୈ ପାଇ ॥
ସୋ ଧନୁ ମିତ୍ରୁ ନ କାଂଢୀଐ ଜିତୁ ସିରି ଚୋଟାଂ ଖାଇ ॥
ଜିନ କୈ ପଲୈ ଧନୁ ବସୈ ତିନ କା ନାଉ ଫକୀର ॥
ଜିନ୍ହ କୈ ହିରଦେ ତୂ ବସହି ତେ ନର ଗୁଣୀ ଗହୀର ॥ ୧ ॥ ମଂ ୧ ॥

ପତ୍ନୀ କି ଦେଖି ପତିର ମନ ସେହିପରି । ଚୁଆ, ଚନ୍ଦନ ଶରୀରରେ ବୋଳି ହେଉଛନ୍ତି ଲୋକେ, ନାନା ବସ୍ତ୍ର ପରିଧାନ କରୁଛନ୍ତି, ସୌନ୍ଦର୍ଯ୍ୟ ପାଇଁ, ରୂପର ଶୃଙ୍ଗାର ଚାଲିଛି; କିନ୍ତୁ ଶେଷ ମୁହୂର୍ତ୍ତରେ ମାଟିର ପିଣ୍ଡ ମାଟିରେ ମିଶି ଯାଉଛି । ଜୀବ, 'ମୋର—ମୋର' କହୁଥିବା ଘରଦ୍ୱାର ଛାଡ଼ି ବାଧ୍ୟ ହେଉଛି ଏଠାରୁ ପଳାଇ ଯିବାକୁ । ସର୍ଦ୍ଦାର, ବାଦଶା, ରାଜା ଓ ଖାଁ ବୋଲାଉଥିବା ଅଭିମାନୀଏ ଯେଉଁମାନେ ନାମକୁ ସଂପୂର୍ଣ୍ଣ ଭୁଲି ରହିଛନ୍ତି, ଏବଂ ନିଜର ଅହମିକାକୁ ବରାବର ଉତ୍ତେଜିତ କରି ଚାଲିଥାନ୍ତି, ସେମାନଙ୍କୁ ମନେକରିବାକୁ ହେବ, ଏ ଏକ କାନନ ଯେଉଁଠି ଧ୍ୱଂସକାରୀ ଦାବାଗ୍ନିର ଝୁଲ ପଡ଼ି ସାରିଛି । ଏ ଜଗତକୁ ଯିଏ ଆସୁଛି, ସେ କିଛିକାଳ ଏଠି ବହୁତ ଅହଙ୍କାର-ଅଭିମାନ ଦେଖାଇଲେ ମଧ୍ୟ ଶେଷକୁ ଏଠୁ ବିଦାୟ ନେବାକୁ ବାଧ୍ୟ ହେଉଛି । ଏହି ସାରା ଜଗତ ଏକ କାଳିମାମୟ କୋଠରି, ଏବଂ ଏଠି ଆତଯାତ କରୁଥିବା ଲୋକମାନଙ୍କର ତନ-ମନ ଦେହ ପାଉଁଶରେ ଭର୍ତ୍ତି । କେବଳ ଗୁରୁ ଯାହାକୁ ରକ୍ଷା କରନ୍ତି ସେହିଁ ନିର୍ମଳ ରହନ୍ତି, ତାଙ୍କ-ପ୍ରଦତ୍ତ ମନ୍ତ୍ରୋପଦେଶ ଦ୍ୱାରାହିଁ ଭବାଗ୍ନି ନିବାରିତ ହୁଏ । ତେଣୁ ନାନକ ଘୋଷଣା କରେ ଯେ, କେବଳ ସତ୍ୟନାମହିଁ, ଏହି ଭବ-ସମୁଦ୍ର ପାରି କରିବାକୁ ସକ୍ଷମ, ଏବଂ ତେଣୁ ସେହି ନାମ ହିଁ ଏ ଜଗତରେ ସର୍ବୋଚ୍ଚ ବାଦଶା । ହେ ପ୍ରଭୁ, ମୁଁ ଯେପରି ହରିନାମରୂପକ ରତ୍ନକୁ ଭୁଲି ନ ଯାଏ, ମତେ ତାହା ନିଶ୍ଚୟ କିଣି ସାଇତି ରଖିବାକୁ ହିଁ ପଡ଼ିବ । ନାନକ ପୁଣି କହେ ଯେ ନିଜର ଅହମିକା ଓ ମନ ଖୁସିକୁ ସବୁବେଳେ ଉତ୍ତେଜିତ କରି ରଖେ, ସେ ଭବ-ଜଳରେ ନିଶ୍ଚୟ ବୁଡ଼ି ମରିବ; କିନ୍ତୁ ଗୁରୁପଦିଷ୍ଟ ସାଧକ ସହଜରେ ଭବସାଗରକୁ ପାରି ହୋଇଯିବ ।

: ୮୫ :

ମାୟା ମାୟା କହି କହି ଲୋକ ମରିଯାଇଛନ୍ତି, କିନ୍ତୁ ମାୟା କାହାର ହେଲେ ସାଥିରେ ଯାଏ ନାହିଁ । ଆତ୍ମାରୂପକ ହଂସ ଉଡ଼ିଚାଲିଯାଏ, ଏଠି ରହିଯାଏ ମାୟା, ମିଥ୍ୟାମୟ ମନର ପଥ-ପ୍ରଦର୍ଶକ ହୁଏ ଯମ, ସାଥିରେ ଆନ୍ତି କେବଳ ନିଜର ଅବଗୁଣ ସବୁ, ଅଥଚ, ସାଥିରେ ଯଦି କିଛି ସଦ୍‌ଗୁଣ ଥାଆନ୍ତି ତେବେ ମାୟା-ପ୍ରଭାବର ବିପରୀତରେ, ମନ ରହେ ମନରେ ଲୀନ । ଯିଏ 'ମୋର' 'ମୋର' କହି ମରେ, ସେହି ନାମ-ବିସ୍ମୃତ ଲୋକ କେବଳ ଦୁଃଖକୁ ଖୋଜି ଆଣିଥାଏ ବୋଲି, କହିବାକୁ ହେବ । କୁଆଡ଼େ ରହନ୍ତି ଦୁର୍ଗ, ପ୍ରାସାଦ ଓ ରାଜଦରବାର ? ଏସବୁ ତ ଇନ୍ଦ୍ରଜାଲ ମାତ୍ର, ନାନକର କଥନ ତେଣୁ ଏହିଯେ ସତ୍ୟନାମ ବିନା, ଜନ୍ମମରଣ ଦେଇ ଏହି ସବୁ ଗମନାଗମନ ଏକାନ୍ତ ମିଥ୍ୟା, ଏ ବିଧାତାର ଚତୁର ଖେଳ ମାତ୍ର, ସୁଜ୍ଞାନୀ ଏ ଚତୁରତାକୁ ସର୍ବାଂଶରେ ବୁଝିପାରି, ଭିନ୍ନ ଭାବରେ କାମ କରେ ।

: ୮୬ :

ନାନକ ଏହି ଘୋଷଣା କରେକି, ଲୋକେ ପରିବାର ଖାତିର ପାଇଁ, ସରମ ଓ ଧର୍ମ ଉଭୟକୁ ହିଁ ସହଜରେ ପରିତ୍ୟାଗ କରିଦେଇପାରୁଛନ୍ତି । ଯାହା ହେଉ ତୁମ ମୁଣ୍ଡକୁ ଏତେ ଶ୍ରେଷ୍ଠ ସହିବାକୁ ପଡ଼ୁଛି । ହେ ଭାଇ, ସେ ଧନକୁ ଆଦୌ ବନ୍ଧୁ ବୋଲି ମନେ କର ନାହିଁ, ବରଂ ଯାହାଙ୍କ ପାଖରେ ଧନ ଅଛି, ତାକୁ ଜାଣିବ ଫକୀର ଏବଂ ଯାହାଙ୍କ ହୃଦୟରେ ପ୍ରଭୁ (ରୂ?) ବାସ କରନ୍ତି, ସେ ଗମ୍ଭୀର ଓ ଗୁଣବାନ୍ । ଧନ-ସଞ୍ଚୟ କେବଳ ଦୁଃଖ, ଅଧିକ

ଦୁଖୀ ଦୁନୀ ସହେଡ଼ୀଐ ଜାଇ ତ ଲଗହି ଦୁଖ ॥
ନାନକ ସଚେ ନାମ ବିନୁ କସୈ ନ ଲଥୀ ଭୁଖ ॥
ରୂପୀ ଭୁଖ ନ ଉତରୈ ଜାଂ ଦେଖାଂ ତାଂ ଭୁଖ ॥
ଜେତେ ରସ ସରୀର କେ ତେତେ ଲଗହି ଦୁଖ ॥ ୨ ॥ ମଂ ॥
ଅଂଧୀ କଂମୀ ଅଂଧୁ ମନୁ ମନି ଅଂଧୈ ତନୁ ଅଂଧୁ ॥
ଚକଡ଼ ଲାଇଐ କଆ ଥୀଐ ଜାଂ ତୁଟୈ ପଥର ବଂଧୁ ॥
ବଂଧୁ ତୁଟା ବେଡ଼ୀ ନହୀ ନା ତୁଲହା ନା ହାଥ ॥
ନାନକ ସଚେ ନାମ ବିଣୁ କେତେ ଡୁବେ ସାଥ । ॥ ୩ ॥ ମଂ ୧ ॥
ଲଖ ମଣ ସୁଇନା ଲଖ ମଣ ରୁପା ଲଖ ସାହା ସିର ସାହ ॥
ଲଖ ଲସକର ଲଖ ବାଜେ ନେଜେ ଲଖୀ ଘୋଡ଼ୀ ପାତସାହ ॥
ଜଥୈ ସାଇରୁ ଲଂଘଣା ଅଗନି ପାଣୀ ଅସଗାହ ॥
କଂଧୀ ଦସି ନ ଆବଈ ଧାହୀ ପବୈ କହାହ ॥
ନାନକ ଓଥୈ ଜାଣୀଅହି ସାହ କେଈ ପାତସାହ ॥ ୪ ॥

ବାର ମଲାର ପଉଡ଼ୀ ୨୧, ସଲୋକ ୧, ୨, ୩, ୪

## ନାମ

: ୮୭ :

ସାଚା ସାହିବୁ ସାଚୁ ନାଇ ଭାଖିଆ ଭାଉ ଅପାରୁ ॥
ଆଖହି ମଂଗହି ଦେହି ଦେହି ଦାତ କରେ ଦାତାରୁ ॥
ଫେର କ ଅଗୈ ରଖୀଐ ଜତୁ ଦସୈ ଦରବାରୁ ॥
ମୁହୌ କ ବୋଲଣୁ ଜତୁ ସୁଣି ଧରେ ପିଆରୁ ॥
ଅଂମୃତ ବେଲା ସଚୁ ନାଉ ବଡ଼ିଆଈ ବୀଚାରୁ ॥
କରମୀ ଆବୈ କପଡ଼ା ନଦରୀ ମୋଖୁ ଦୁଆରୁ ॥
ନାନକ ଏବୈ ଜାଣୀଐ ସଭୁ ଆପେ ସଚିଆରୁ ॥ ୪ ॥

ଜପୁ ପଉଡ଼ୀ ୪

: ୮୮ :

ମୋତୀ ତ ମଂଦର ଊସରହି ରତନୀ ତ ହୋହି ଜଡ଼ାଉ ॥
କସତୂରି କୁଂଗୁ ଅଗରି ଚଂଦନି ଲୀପି ଆବୈ ଚାଉ ॥
ମତୁ ଦେଖି ଭୂଲା ବୀସରୈ ତେରା ଚତି ନ ଆବୈ ନାଉ ॥ ୧ ॥
ହରି ବିନୁ ଜୀଉ ଜଲି ବଲି ଜାଉ ॥
ମୈଂ ଆପଣା ଗୁରୁ ପୂଛି ଦେଖିଆ ଅବରୁ ନାହୀ ଥାଉ ॥ ୧ ॥ ରହାଉ ॥

ଦୁଃଖ ପୁଣି ଧନ ଯେତେବେଳେ ଚାଲିଯାଏ । ନାନକ ତେଣୁ ଘୋଷଣା କରେ ଯେ, ସତ୍ୟନାମ ବିନା ଏ ଜଗତରେ ଆତ୍ମାର କ୍ଷୁଧା ମେଣ୍ଟାଇବାକୁ ଦ୍ୱିତୀୟ ପଦାର୍ଥ ନାହିଁ । ରୂପ ବି କ୍ଷୁଧା ମେଣ୍ଟାଇ ନ ପାରେ, ରୂପ ଦର୍ଶନରେ କ୍ଷୁଧା ବରଂ ବଢ଼େ । ଏ ଦେହରେ ଯେତେ ରସ ସେ ସମସ୍ତହିଁ କେବଳ ଦୁଃଖର ହେତୁ । ଅନ୍ଧ କାମଲାଳସା ମନକୁ ଅନ୍ଧ କରି ପକାଏ, ଅନ୍ଧମନ ଅନ୍ଧ କରିପକାଏ ଦେହକୁ, ସେହି କାମଲାଳସାର ଦୁର୍ବାର ସ୍ରୋତରେ ପଥରର ବନ୍ଧ ଯେତେବେଳେ ଭୁଷୁଡ଼ି ପଡ଼ୁଛି, କାଦୁଅ କି ତାକୁ ଅଟକାଇ ପାରିବ ? ବନ୍ଧ ଭାଙ୍ଗି ଗଲା, ସୁଅ ମାଡ଼ି ଆସିଲା, ଅଥଚ ନାହିଁ ନାଆ, ନାହିଁ ଭେଳା, ନାନକର କଥିତ ଏହିଯେ, ସତ୍ୟ ନାମର ଆଶ୍ରା ନ ଥିବାରୁ, ଅଗଣିତ ସାଧାରଣ ଲୋକ ସାଙ୍ଗେ ସାଙ୍ଗେ ସେହି ସୁଅରେ ବୁଡ଼ି ମରନ୍ତି ଏବଂ ବୁଡ଼ି ନିଶ୍ଚିହ୍ନ ମଧ୍ୟ ହୋଇଗଲେ ଲକ୍ଷ ଲକ୍ଷ ମହଣ ସୁନା, ରୁପା ସହିତ ଲକ୍ଷ ଲକ୍ଷ ରାଜା, ମହାରାଜା ଓ ବାଦଶା, ବର୍ଚ୍ଛା-ଢାଲ-ଧାରୀ ଲକ୍ଷ ଲକ୍ଷ ଲୋକ ସାଥିରେ ଥାଇ ଯେଉଁ ଭବସାଗର ପାରି ହେବାକୁ ହେବ ସେତ ଅଥଳ ତପ୍ତ ଜଳରେ ଭରି ଏବଂ ତାର କୂଳକିନାରା ନାହିଁ । ତେଣୁ ଶୁଭେ କେବଳ କ୍ରନ୍ଦନ ଓ ହାହାକାର, ଏବଂ ସେହି ବିପୁଳ କ୍ରନ୍ଦନ ଭିତରେ, କିପରି ଜାଣିବ କିଏ ସାହା ବା କିଏ ବାଦ୍‌ଶା ? ସମସ୍ତେ ସମଦଶାପନ୍ନ ।

: ୮୭ :

ଆମର ପ୍ରଭୁ ନିତ୍ୟ-ଶାଶ୍ୱତ, ତାଙ୍କର ନ୍ୟାୟ ବିଚାର ମଧ୍ୟ ସେହିପରି ଏବଂ ତାଙ୍କର ଭାଷା କେବଳ ଅନ୍ତହୀନ ପ୍ରେମ । ଅଗଣିତ ନରନାରୀ ନିତ୍ୟ ତାଙ୍କୁ ଭିକ୍ଷା କରୁଛନ୍ତି, ଦେ' ଦେ' ଏବଂ ସେହି ଦାତା ସମସ୍ତଙ୍କୁ ଦାନ କରୁ-ଛନ୍ତି । ତାଙ୍କର ଦରବାରକୁ ଯାଇ ତାଙ୍କର ସାକ୍ଷାତ୍ ଦର୍ଶନ ପାଇଁ ଯଥାଯୋଗ୍ୟ ଭେଟି ଦେବାକୁ ଆଉ ପାଖରେ କ'ଣ ଅଛି ? ଆମେ କିସ ବା କହିପାରିବୁ ଯାହା ଶୁଣି ସେ ଆମକୁ ପ୍ରେମ କରି ପାରିବେ ? ନାନକର କଥନ ଏହି କି ଯେ, କେବଳ ସତ୍ କର୍ମ ହିଁ ଆଣିଦେଇ ପାରେ ଦିବ୍ୟ ଶରୀର ଏବଂ କେବଳ ତାଙ୍କର କୃପା ହିଁ ଦେଇପାରେ ମୁକ୍ତି, ଏ ସମସ୍ତ ସଂସାର ଯେ କେବଳ ସେହିହିଁ,— ଏହା ବିଶ୍ୱାସ ନ କରି ଗତି କାହିଁ ?

: ୮୮ :

ହୀରାଚ୍ଛାଦିତ ମୁକ୍ତାର ମନ୍ଦିର, କସ୍ତୁରୀ, ଅଗୁରୁ ଓ ଚନ୍ଦନର ପ୍ରଲେପରେ ମନ ପ୍ରସନ୍ନ ହୋଇଉଠେ, କିନ୍ତୁ ହେ ପ୍ରଭୁ, ଏସବୁ ଦେଖିକରି, କେହି ଯେପରି ତୁମର ନାମକୁ ବିସ୍ମୃତ ହୋଇ ନଯାନ୍ତି, କାରଣ ହରି ବିନା ଜୀବ ଭବାଗ୍ନିରେ ଜଳି ଭସ୍ମ ହୋଇଯାଏ । ମୁଁ ମୋର ଗୁରୁଙ୍କ ପରାମର୍ଶ ବୁଝି ଜାଣିପାରିଛି ଯେ, ହରି-ଅଧରକୁ ଅନ୍ୟ ଶରଣଭୂମି ଏ ଜଗତରେ ଦ୍ୱିତୀୟ ଆଉ କାହିଁ ନାହିଁ । ହୀରା-ନୀଳାରେ ଖଚିତ ହୋଇଥାଉ ଚଟାଣ ବା ସଜ୍ଜିତ ଥାଉ ରତ୍ନ-ଖଚିତ ପଲଂକ, ମୁଖ ମଣ୍ଡଳକୁ ପ୍ରସାଧିତ କରି ଓ ନାନା ହାବଭାବ ଦେଖାଇ, ମୋହିନୀ ନାରୀ ସେଠି

ଧରଣୀ ତ ସ୍ୱାରେ ଲାଲ ଜଡ଼ାଣା ପଲଘି ଲାଲ ଜଡ଼ାଉ ॥
ମୋହଣୀ ମୁଖି ମଣୀ ସୋହେ କରେ ରଙ୍ଗି ପସାଉ ॥
ମତୁ ଦେଖି ଭୁଲା ବୀସରେ ତେରା ଚିତ ନ ଆବେ ନାଉ ॥ ୨ ॥
ସିଧୁ ହୋବା ସିଧି ଲାଇ ରିଧି ଆଖା ଆଉ ॥
ଗୁପତୁ ପରଗଟୁ ହୋଇ ବୈସା ଲୋକୁ ରାଖୈ ଭାଉ ॥
ମତୁ ଦେଖି ଭୁଲା ବୀସରେ ତେରା ଚିତ ନ ଆବେ ନାଉ ॥ ୩ ॥
ସୁଲତାନୁ ହୋବା ମେଲି ଲସକର ତଖତି ରାଖା ପାଉ ॥
ହୁକମୁ ହାସଲୁ କରୀ ବୈଠା ନାନକା ସଭ ବାଉ ॥
ମତୁ ଦେଖି ଭୁଲା ବୀସରେ ତେରା ଚିତ ନ ଆବେ ନାଉ ॥ ୪ ॥ ୧ ॥

ସିରୀ ରାଗୁ

: ୮୯ :

ଭରୀଐ ହଥୁ ପୈରୁ ତନୁ ଦେହ ॥ ପାଣୀ ଧୋତୈ ଉତରସୁ ଖେହ ॥
ମୂତ ପଲୀତୀ କପଡ଼ୁ ହୋଇ ॥ ଦେ ସାବୁଣୁ ଲଈଐ ଓହୁ ଧୋଇ ॥
ଭରୀଐ ମତି ପାପା କୈ ସଂଗି ॥ ଓହୁ ଧୋପୈ ନାବୈ କୈ ରଙ୍ଗି ॥
ପୁଂନୀ ପାପୀ ଆଖଣୁ ନାହି ॥ କରି କରି କରଣା ଲିଖି ଲୈ ଜାହୁ ॥
ଆପେ ବୀଜି ଆପେ ହୀ ଖାହୁ ॥ ନାନକ ହୁକମୀ ଆବହୁ ଜାହୁ ॥ ୨୦ ॥

ଜପୁ ପଉଡ଼ୀ ୨୦

: ୯୦ :

କୋଟି କୋଟୀ ମେରୀ ଆରଜା ପବଣୁ ପୀଅଣୁ ଅପିଆଉ ॥
ଚଂଦୁ ସୂରଜୁ ଦୁଇ ଗୁଫୈ ନ ଦେଖା ସୁପନୈ ସଉଣ ନ ଥାଉ ॥
ଭୀ ତେରୀ କୀମତି ନା ପବୈ ହଉ କେବଡୁ ଆଖା ନାଉ ॥ ୧ ॥
ସାଚା ନିରଂକାରୁ ନିଜ ଥାଇ ॥
ସୁଣି ସୁଣି ଆଖଣୁ ଆଖଣା ଜେ ଭାବୈ କରେ ତମାଇ ॥ ୧ ॥ ରହାଉ ॥
କୁସା କଟୀଆ ବାର ବାର ପୀସଣି ପୀସା ପାଇ ॥
ଅଗୀ ସେତୀ ଜାଲୀଆ ଭସମ ସେତୀ ରଲି ଜାଉ ॥
ଭୀ ତେରୀ କୀମତି ନା ପବୈ ହଉ କେବଡୁ ଆଖା ନାଉ ॥ ୨ ॥
ପଂଖୀ ହୋଇ କୈ ଜେ ଭବା ସୈ ଅସମାନୀ ଜାଉ ॥
ନଦରୀ କସୈ ନ ଆବଉ ନା କିଛୁ ପୀଆ ନ ଖାଉ ॥
ଭୀ ତେରୀ କୀମତି ନା ପବୈ ହଉ କେବଡୁ ଆଖା ନାଉ ॥ ୩ ॥
ନାନକ କାଗଦ ଲଖ ମଣା ପଡ଼ି ପଡ଼ି କୀଚୈ ଭାଉ ॥
ମସୁ ତୋଟି ନ ଆବଈ ଲେଖଣି ପଉଣୁ ଚଲାଉ ॥
ଭୀ ତେରୀ କୀମତି ନା ପବୈ ହଉ କେବଡୁ ଆଖା ନାଉ ॥ ୪ ॥ ୨ ॥

ସିରୀ ରାଗୁ

ବସି ଥାଉ; କିନ୍ତୁ ହେ ପ୍ରଭୁ, ସେଥିରେ ଭ୍ରମି ଯାଇ, ମୁଁ ଯେପରି ତୋର ନାମକୁ ଭୁଲି ନ ଯାଏ । ସିଦ୍ଧ ହୋଇ ସିଦ୍ଧି ସବୁକୁ ଏପରି ଆପ୍ତିଉକୁ ଆଣେ, ଯେପରିକି ଡାକିଲା ମାତ୍ରେ ସେ ସବୁ ଆସିଯିବେ, ଇଚ୍ଛାନୁଯାୟୀ ମୁଁ ହୋଇ ପାରେ ଗୁପ୍ତ ବା ପ୍ରକଟ, ବା ହେ ପ୍ରଭୁ, ପାଏ ମୁଁ ଲୋକମାନ୍ୟତା, କିନ୍ତୁ ଏସବୁ ବାହିରେ ହେଲେ ମୁଁ ଯେପରି ଭ୍ରମିତ ହୋଇ ମୁଁ ତୁମର ନାମକୁ ଯେପରି ଭୁଲି ନଯାଏ । ମୁଁ ସୁଲତାନ ହୋଇ ଓ ଲୋକ-ଲସ୍କରର ମାଲିକ ହୋଇ, କେବଳ ଖଟରେ ଗୋଡ଼ ଥୋଇ ବସିଲେ, ଓ ଅଗଣି ଜନ ମୋର ହୁକୁମ ମାନୁଥିଲେ ମଧ୍ୟ, ନାନକର କଥନ ଏହି ଯେ, ଏ ସମସ୍ତ କେବଳ ବାୟୁର ଢମକା ମାତ୍ର, ସେଥିରେ ମଧ୍ୟ ମୁଁ ଭୁଲି ନଯାଇ ମୁଁ ଯେପରି ତୁମ ନାମକୁ କସ୍ମିନ୍ କାଳେ ବିସ୍ମୃତ ନ ହୋଇ ଯାଏ, ହେ ପ୍ରଭୁ !

: ୮୯ :

ତମର ହାତ, ଗୋଡ଼, ଦେହ ପଙ୍କରେ ଲଟପଟ ହୋଇଥିଲେ, ପାଣି ଆଣି ଧୋଇ ଦିଅ, ସବୁ ପଙ୍କ-ଧୂଳି ଗୁଳି ଯିବ । ତମର ଲୁଗା-ପଟା ମଳମୂତ୍ରରେ ମଇଳା ହୋଇ ଯାଇଥିଲେ ସାବୁନ ଲଗାଇ କାଚ ଦେଲେ ତାହା ସଫା ହୋଇଯିବ, ପାପ ସେହିପରି ମନକୁ ମଇଳା କରି ପକାଏ, କିନ୍ତୁ ନାମାନୁରକ୍ତି ସେ ମଇଳାକୁ ଧୋଇ ନେଇଯିବ । ପାପ ବା ପୁଣ୍ୟ କେବଳ କଥାରେ ନଥାଏ, ମୁଁ ଯାହା କରେ ତାହା ହିଁ ପାପ ବା ପୁଣ୍ୟ ହୋଇ ଲିଖିତ ରହେ, ମୁଁ ନିଜେ ଯାହା ବୁଣିବ, ତାହା ହିଁ ମୋତେ ଖାଇବାକୁ ପଡ଼ିବ ନାନକର କଥନ ଏହିଯେ, ମୁଁ କେବଳ ଗୁରୁଙ୍କ ହୁକୁମର ଅଧୀନ ହୋଇ ଗତାଗତ ହୋଇଥାଏ ।

: ୯୦ :

କୋଟିବର୍ଷ ହେଉ ମୋର ଆୟୁ, ପିଇନିଏ ଅପେୟ ପବନ, ଗୁମ୍ଫାରେ ରହେ ଓ ନଦେଖେ କେବେ ଚନ୍ଦ୍ର, ସୂର୍ଯ୍ୟ, ବା ଅନିଦ୍ର ରହେ ଜୀବନଯାକ, ତେବେ ବି କି ମୁଁ ତୁମର ମୂଲ୍ୟ ଆଙ୍କି ପାରିବି, ହେ ପ୍ରଭୁ ? ତୁମର ମୂଲ୍ୟ କେତେ ମୁଁ କପରି କହି ପାରିବି ? ତୁମର ସ୍ଥାନ ସତ୍ୟ ଓ ନିରାକାର, ଯାହା ମୁଁ କେବଳ ଅନ୍ୟଠାରୁ ଶୁଣି ଶୁଣି ବର୍ଣ୍ଣନା କରିଥାଏ, ସେଇଥିରେ ପ୍ରୀତ ହୋଇ, କାଳେ ବା ତମେ ମତେ କୃପା କରିପାର; ଯଦି ବାରମ୍ବାର ମୁଁ ହୁଏ କଣ୍ଟିତ, ଓ ହୁଏ ଖଣ୍ଡ ଖଣ୍ଡ ଓ ଚକରେ ମୋତେ ଏକାବେଳେକେ ପେଷି ଦିଆଯାଏ, ଏବଂ ଅଗ୍ନିରେ ପୋଡ଼ି ମତେ ଭସ୍ମୀଭୂତ କରି ଦିଆଯାଏ, ତେବେ ବି ମୁଁ, ତୁମର ମୂଲ୍ୟ କଣ, କହି ନପାରେ । କପରି କହିବି, ହେ ପ୍ରଭୁ ତୁମର ନାମ କେତେ ବଡ଼ ! ମୁଁ ବି ଯଦି ଏକ ପକ୍ଷୀ ହୋଇଯାଇ ଶତ ଶତ ଆକାଶ ଉଡ଼ି ଉଡ଼ି ପାରି ହୋଇପାରେ, ଯେପରିକି କେହି ମତେ ଦେଖି ନପାରନ୍ତି ଏବଂ ମୁଁ ନଖାଇ ନପିଇ ଖାଲି ଉଡ଼ୁଥାଏ, ତେବେ ବି ମୁଁ ଆଙ୍କି ନପାରେ ତୁମର ମୂଲ୍ୟ, କପରି ବା କହିବି ତୁମର ନାମ କେତେ ବଡ଼ । ନାନକର କଥନ ଏହି ଯେ, ଲକ୍ଷ ମହଣ କାଗଜ ପଡ଼େ ପଡ଼େ, ଏବଂ ପଢୁଣି ବୁଝେଁ ସେ ସବୁର ଭାବ, ଅଥବା, ପବନ ସରି ଲେଖନୀ ମୋର ଚ୍ଚଲିଥାଉ, ଓ ମସି ହେଉ ଅସମାପ୍ୟ, ତେବେ ବି ମୁଁ ତମର ମୂଲ୍ୟାଙ୍କନ କରି ନପାରେ, ତମର ନାମ କେତେ ବଡ଼ ମୁଁ କପରି କହିପାରେ, ହେ ପ୍ରଭୁ !

: ୯୧ :

ସୋ ଜୀବିଆ ଜିସୁ ମନି ବସିଆ ସୋଇ ॥ ନାନକ ଅବରୁ ନ ଜୀବୈ କୋଇ ॥
ଜେ ଜୀବୈ ପତି ଲଥୀ ଜାଇ ॥ ସଭୁ ହରାମୁ ଜେତା କିଛୁ ଖାଇ ॥
ରାଜି ରଙ୍ଗୁ ମାଲି ରଙ୍ଗି ରଙ୍ଗୁ ରତା ନଚୈ ନଂଗୁ ॥ ନାନକ ଠଗିଆ ମୁଠା ଜାଇ ॥
ବିଣୁ ନାବୈ ପତି ଗଇଆ ଗବାଇ ॥ ୧ ॥ ମ: ୧ ॥
କିଆ ଖାଧୈ କିଆ ପୈଧୈ ହୋଇ ॥ ଜା ମନି ନାହୀ ସଚା ସୋଇ ॥
କିଆ ମେବା କିଆ ଘିଉ ଗୁଡ଼ ମିଠା କିଆ ମୈଦା କିଆ ମାସୁ ॥
କିଆ କପଡ଼ୁ କିଆ ସେଜ ସୁଖାଲୀ କୀଜହି ଭୋଗ ବିଲାସ ।
କିଆ ଲସକର କିଆ ନେବ ଖବାସୀ ଆବୈ ମହଲୀ ବାସୁ ॥
ନାନକ ସଚେ ନାମ ବିଣୁ ସଭେ ଟୋଲ ବିଣାସୁ ॥ ୨ ॥

ବାର ମାଝ ପଉଡ଼ୀ ୧୦, ସଲୋକ ୧,୨

: ୯୨ :

ପହିରା ଅଗନି ହିବୈ ଘରୁ ବାଧା ଭୋଜନୁ ସାରୁ କରାଈ ॥
ସଗଲେ ଦୂଖ ପାଣୀ କରି ପୀବା ଧରତୀ ହାକ ଚଲାଈ ॥
ଧରି ତାରାଜୀ ଅଂବରୁ ତୋଲୀ ପିଛୈ ଟଂକୁ ଚଢ଼ାଈ ॥
ଏବଡୁ ବଧା ମାବା ନାହୀ ସଭସୈ ନଥି ଚଲାଈ ॥
ଏତା ତାଣୁ ହୋବେ ମନ ଅଂଦରି କରୀ ଭି ଆଖି କରାଈ ॥
ଜେବଡୁ ସାହିବୁ ତେବଡ଼ ଦାତୀ ଦେ ଦେ କରେ ରଜାଈ ॥
ନାନକ ନଦରି କରେ ଜିସୁ ଉପରି ସଚି ନାମି ବଡ଼ିଆଈ ॥ ୧ ॥ ମ: ୨ ॥

ବାର ମାଝ ପଉଡ଼ୀ ୧୯, ସଲୋକ ୧

: ୯୩ :

ଦୁହି ଦୀବେ ଚଉଦହ ହଟ ନାଲେ ॥ ଜେତେ ଜୀଅ ତେତେ ବଣଜାରେ ॥
ଖୁଲ୍ହେ ହଟ ହୋଆ ବାପାରୁ ॥ ଜୋ ପହୁଚେ ସୋ ଚଲଣହାରୁ ॥
ଧରମୁ ଦଲାଲୁ ପାଏ ନୀସାଣୁ ॥ ନାନକ ନାମୁ ଲାହା ପରବାଣୁ ॥
ଘରି ଆଏ ବଜୀ ବାଧାଈ ॥ ସଚ ନାମ କୋ ମିଲୀ ବଡ଼ିଆଈ ॥ ୧ ॥ ମଂ ୧ ॥

ବାର ସୂହୀ ପଉଡ଼ୀ ୧୩, ସାଲୋକ ୧

: ୯୪ :

ଜିନି ନ ପାଇଓ ପ୍ରେମ ରସୁ କଂତ ନ ପାଇଓ ସାଉ ॥
ସୁଂଞେ ଘରକା ପାହୁଣା ଜିଉ ଆଇଆ ତିଉ ଜାଉ ॥ ୧ ॥ ମଂ ୧ ॥

: ୯୧ :

ତାକୁଇ କେବଳ ଜୀବିତ କୁହାଯିବ ଯାହାର ଚିତ୍ତରେ ପ୍ରଭୁ ପ୍ରତିଷ୍ଠିତ । ନାନକ କହେ ଯେ, ସ୍ୱା ଛଡ଼ା ଅନ୍ୟ କାହାକୁ ଜୀବିତ କୁହାଯାଇ ନପାରେ । ଯଦିବା ଏପରି ଲୋକ ଜୀବିତ ବୋଲି କୁହାଯାଏ, ତେବେ ସେ ନିଶ୍ଚିତ ମରିବ, ନିରାଦୃତ ହୋଇ, ସେ ଯେଉଁ ଖାଦ୍ୟ ଖାଇ ଜୀବନ ଧାରଣ କରିଛି, ସେ ସମସ୍ତ କେବଳ ହାରାମ, ଭୂମି ଓ ସମ୍ପଦଦ୍ୱାରା ଯେ ପ୍ରତାରିତ ଧରାଯିବ ଯେ ସେ ନଗ୍ନନୃତ୍ୟରେ ଭୋଳ ଅଚେତନ ଥିଲାବେଳେ, ସେ ଲୋକକୁ ଠଗମାନେ ଲୁଟିକରି ନେଉଛନ୍ତି, ନାମ-ବିସ୍ମୃତ ସେହି ଲୋକ ମଧ୍ୟ ଆତ୍ମ-ସମ୍ମାନ ହରାଇ ଚାଲିଛି । ଉତ୍ତମ ଖାଇଲେ ପିଇଲେ କି ଲାଭ, ଯଦି ଲୋକର ମନରେ ସତ୍ୟ ପ୍ରଭୁ ଅବସ୍ଥିତ ନୁହନ୍ତି ? ଏପରି ଲୋକର, ଭୋଗବିଳାସ ବା ଘିଅ-ଫଳ-ମଇଦା-ମାଂସ-ଭକ୍ଷଣର କି ମୂଲ୍ୟ ? କି ସୁଖ ଦେବେ ଲୋକ-ଲସ୍କର, ନାଏବ ଆଉ ପରିଚାରକ ଦଳ ? କି ଲାଭ ପ୍ରାସାଦରେ ବାସ କରି ? ନାନକର କଥନ ଏହିକି ଯେ, ସତ୍ୟ ନାମ ବିନା ସାରା ପାର୍ଥିବ ଆଡ଼ମ୍ବର କେବଳ ବିନାଶର ହେତୁ ।

: ୯୨ :

ମୁଁ ଅଗ୍ନି-ବସ୍ତ୍ର ପରିଧାନ କରେ, ସୁଖରେ ବାସ କରେ ବରଫ-ଗୃହରେ, ପାଣି ପରି ପିଇଯାଏ ସକଳ ତଥାକଥିତ ଦୁଃଖକୁ, ସମଗ୍ର ଧରିତ୍ରୀକୁ ଆଦେଶାନୁସାରେ ଚଳାଏ, ତରାଜୁର ଏକ ପାଖେ ଗୋଟିଏ ମାତ୍ର ମୋର ଟଙ୍କା ଓ ଆରପାଖେ ସୂର୍ଯ୍ୟ-ତାରା-ସମନ୍ୱିତ ସମଗ୍ର ଆକାଶକୁ ରଖି, ତାକୁ ତୁଚ୍ଛ ପ୍ରମାଣିତ କରେ, ଏପରି ବଡ଼ଲୋକ ହୁଏ ଯେ, ମୋର ସମାନ ବୋଲି ମଧ୍ୟ କାହାକୁ ନ ଦେଖେଁ, ନାକରେ ଦଉଡ଼ି ଦେଇ ଏ ଧରାରେ ସମସ୍ତଙ୍କୁ ଯେପରି ମୁଁ ଟାଣିପାରେ । କିନ୍ତୁ ନାନକ କହେ ଯେ, ଦାତା ଯେତେ ବଡ଼ ତାର ଦାନ ହୁଏ ସେହିପରି ବଡ଼, ଏବଂ ସେ ଦିଅନ୍ତି ତାଙ୍କର ନିଜର ଇଚ୍ଛାନୁସାରେ, ପ୍ରଭୁଙ୍କର ଯାହା ପ୍ରତି ହୁଏ କୃପା, ସେ ତାକୁ କେବଳ ଦେଇଥାନ୍ତି ସତ୍ୟନାମର ଗୁଣଗାନ କରିବାର କ୍ଷମତା ।

: ୯୩ :

ଦୁଇଟି ପ୍ରଦୀପ, କିନ୍ତୁ ଚଉଦ ହାଟ, ଯେତେ ଜୀବ, ସେତିକି ବ୍ୟବସାୟ, ହାଟ ତ ବସିଛି, ବେପାର ତ ଚାଲିଛି, ସେଠି ଯେତେ ଲୋକ ଏକତ୍ର ହେଲେ, ସମସ୍ତେ ପୁଣି ଫେରିଗଲେ । ଏଇ ହାଟରେ ଧର୍ମହିଁ ଦଲାଲ, ଯେ ପଣ୍ୟ ଦ୍ରବ୍ୟମାନଙ୍କ ଉପରେ ମୁଦ୍ରାଙ୍କନ କରିଥାଏ । ନାନକର କଥନ ଏହି ଯେ, ଯେଉଁ ବେପାରୀ କେବଳ ନାମରୂପକ ଲାଭ ନେଇଥାଏ, ସେହିହିଁ ପ୍ରଭୁଙ୍କ ଦରବାରରେ ପାଇଥାଏ ମାନ୍ୟତା । ଗୃହ-ପ୍ରବେଶ କଲେ ସେ ପାଏ ଯଥାର୍ଥ ଅଭିନନ୍ଦନ, ସତ୍ୟନାମ ପ୍ରତି ଶ୍ରଦ୍ଧାର ସେ ପାଏ ଯଥାର୍ଥ ଫଳ ।

: ୯୪ :

ଯେ ପ୍ରେମ-ରସ ପାନ କରିନାହିଁ, ମନେ କରିବାକୁ ହେବ ଯେ, ତାକୁ କନ୍ଦର ସ୍ୱାଦ ହିଁ ଜଣାନାହିଁ, ସେ ଏକ ଶୂନ୍ୟ-ଗୃହର ଅତିଥି ବୋଲି ଜାଣ, ସେ ଯେମିତି ଆସିଥିଲେ, ସେଇମିତି ଯିବେ ଫେରି ଖାଲି ହାତରେ, ଏବଂ

ସନ୍ତ ଓଲମ୍ଭେ ହନୈ କେ ସ୍ୱାର୍ଥୀ ମିଲନ ସହଂସ ।।
ସିଫତ ସଲାହଣୁ ଛଡ଼ି କେ କରଂଗୀ ଲଗା ହଂସୁ ।।
ଫିଟୁ ଇବେହା ଜୀବଆ ଜରୁ ଖାଇ ବଧାଇଆ ପେଟୁ ।।
ନାନକ ସଚେ ନାମ ବିଣୁ ସଭୋ ଦୁସମନୁ ହେତୁ ।। ୨ ।।

ବାର ସୃଷ୍ଟ ୧୬, ସଲୋକ ୧, ୨

: ୯୫ :

ତୀରଥି ନାବଣ ଜାଉ ତୀରଥ ନାମୁ ହେ ।।
ତୀରଥ ସବଦ ବୀଚାରୁ ଅଂତରି ଗିଆନୁ ହେ ।।
ଗୁର ଗିଆନୁ ସାଚୁ ଥାନୁ ତୀରଥୁ ଦସ ପୁରବ ସଦା ଦସାହରା ।।
ହଉ ନାମୁ ହରି କା ସଦା ଜାଚଉ ଦେହୁ ପ୍ରଭ ଧରଣୀଧରା ।।
ସଂସାରୁ ରୋଗୀ ନାମୁ ଦାରୂ ମୈଲୁ ଲାଗୈ ସଚ ବିନା ।।
ଗୁରବାକୁ ନିରମଲ ସଦା ଚାନଣୁ ନିତ ସାଚୁ ତୀରଥୁ ମଜନା ।। ୧ ।।

ଧନାସରୀ ଛନ୍ତ

: ୯୬ :

ଚଂଚଲୁ ଚୀତୁ ନ ରହଈ ଠାଇ ।। ଚୋରୀ ମିରଗୁ ଅଂଗୂରୀ ଖାଇ ।।
ଚରନ କମଲ ଉରଧାରେ ଚୀତ ।। ଚିରୁ ଜୀବନୁ ଚେତନୁ ନିତ ନୀତ ।।
ଚିଂତତ ହୀ ଦୀସୈ ସଭୁ କୋଇ ।। ଚେତହି ଏକୁ ତହୀ ସୁଖୁ ହୋଇ ।।
ଚିତି ବସୈ ରାଚୈ ହରି ନାଇ ।। ମୁକତି ଭଇଆ ପତି ସିଉ ଘରି ଜାଇ ।। ୨୩ ।।

ରାମକଲୀ ଦଖଣୀ, ଓଂକାର

: ୯୭ :

ଇହୁ ଧନୁ ସରବ ରହିଆ ଭରପୂରି ।। ମନମୁଖି ଫିରହି ସି ଜାଣହି ଦୂରି ।। ୧ ।।
ସୋ ଧନୁ ବଖରୁ ନାମୁ ରିଦୈ ହମାରୈ ।। ଜିସୁ ତୂ ଦେହି ତିସୈ ନିସତାରେ ।। ୧ ।। ରହାଉ ।।
ନ ଇହୁ ଧନୁ ଜଲୈ ନ ତସକରୁ ଲୈ ଜାଇ ।। ନ ଇହୁ ଧନୁ ଡୂବୈ ନ ଇସୁ ଧନ କଉ ମିଲୈ ସଜାଇ ।। ୨ ।।
ଇସୁ ଧନ କୀ ଦେଖହୁ ବଡିଆଈ ।। ସହଜେ ମୋତେ ଅନଦିନୁ ଜାଈ ।। ୩ ।।
ଇକ ବାତ ଅନୂପ ସୁନହୁ ନର ଭାଈ ।। ଇସୁ ଧନ ବିନୁ କହହୁ କିନୈ ପରମ ଗତି ପାଈ ।। ୪ ।।
ଭଣତି ନାନକୁ ଅକଥ କୀ କଥା ସୁନାଏ ।। ସତିଗୁରୁ ମିଲୈ ତ ଇହୁ ଧନୁ ପାଏ ।। ୫ ।। ୮ ।।

ମାରୂ

ସେ ଚନରେ ଯଦ କଣବସନ୍ତ ଶହେତି ନନଦନୀୟ କର୍ମ ଗୁଣିରେ କରନ୍ତ ସହସ୍ରତି । ଇଶ୍ବରଙ୍କ ସ୍ତୁତ ଓ ଗୁଣାନୁବାଦ ନକର, ସେ ଲୋକ ଜୀବନଟା ତାର କଟାଇ ଦଏ, ଖାଲି ଅସ୍ଥି-ପଞ୍ଜର ଟାଣିବାରେ, ଖାଇ ଖାଇ କେବଳ ପେଟ ମୋଟା କରେ । ନାନକର କଥନ ଏହି ଯେ, ଏପର ଜୀବନ କେବଳ ଧିକ୍କାରଯୋଗ୍ୟ ଏବଂ ନାମ-ଭକ୍ତ ବନା ମନୁଷ୍ୟର ଅନ୍ୟ ସକଳ ଆସକ୍ତ କେବଳ ତାର ଶତ୍ରୁ ।

: ୯୫ :

ତୀର୍ଥଯାତ୍ରା କରବାକୁ ଯାଉଁଛ କି ? ଶୁଣ ଭାଇ, ନାମ ହିଁ ତୀର୍ଥ । ସତ୍ୟ ତୀର୍ଥ ହେଉଛ ଶବ୍ଦ-ବଚ୍ଚର ଓ ଅନ୍ତଜ୍ଞାନ । ଗୁରୁ-ଜ୍ଞାନ ହିଁ ସତ୍ୟ ତୀର୍ଥ ସ୍ନାନ, ଦଶପବ ଓ ଦଶମୀ-ସ୍ନାନର ଫଳ ସେଇଥିରୁ ହିଁ ତମେ ପାଇବ । ମୁଁ କେବଳ ହରନାମ ହିଁ ଭିକ୍ଷା କରେ । ହେ ପ୍ରଭୁ ଧରଣୀଧର, ମତେ କେବଳ ସେହି ଦାନ ହିଁ ଦଅ । ଏହି ସଂସାରରୂପକ ରୋଗର ତାହାହିଁ ଏକମାତ୍ର ଔଷଧ, ସତ୍ୟାଶ୍ରୟ ବନା ମନୁଷ୍ୟର ଦେହ-ମନରେ ମଳ ଜମିଯାଏ, ଗୁରୁବାକ୍ୟ ହିଁ ନର୍ମଳ ଓ ନତ୍ୟାଲୋକ, ହେ ଭାଇ ଶୁଚତା ପାଇଁ ସ୍ନାନ କର ତେବେ ସେହି ସତ୍ୟ ତୀର୍ଥରେ ।

: ୯୬ :

ଚଞ୍ଚଳ ଚତ୍ତ, ଧ୍ୟାନରେ ସ୍ଥିର ରହି ପାରେନା, ମିରଗ ଯେମିତି ଯେମିତି ଅଙ୍କୁର ଖାଇଲାପର ମନର ବ୍ୟବହାର, କନ୍ତୁ ଚତ୍ତରେ ତାଙ୍କର ଚରଣକମଳ ଯଦ ସୁପ୍ରତଷ୍ଠିତ ରହିଯାଏ, ତେବେ ମିଳିଯିବ ନତ୍ୟ-ଚେତନା ଓ ଅମରତ୍ବ । ମୁଁ ଦେଖେ ଯେ ଜଗତର ସବୁଲୋକ ସର୍ବଦା ଚନ୍ତିତ; କନ୍ତୁ ଯାହାର ଚତ୍ତ ଏକାଗ୍ର, ସେହି କେବଳ ସୁଖୀ, ଯାହାର ଚତ୍ତରେ ହରନାମ ସୁପ୍ରତଷ୍ଠିତ ସେ ଦୁଃଖମୁକ୍ତ, ସେ ଆଦର ସହିତ ଘରକୁ ଫେରେ ।

: ୯୭ :

ସେ ଧନ ସବୁ ସ୍ଥାନରେ ପରବ୍ୟାପ୍ତ ରହିଛ, ଅଥଚ ସ୍ବେଚ୍ଛାଚାରୀ ସଂସାରୀଭାବେ ଯେ ତାହା ଦୂର ଓ ଦୁଷ୍ପ୍ରାପ୍ୟ, ଏବଂ ସେଥିପାଇଁ ଭ୍ରମି ହେଉଥାଏ ଏଣେତେଣେ, କନ୍ତୁ ମୋର ହୃଦୟରେ ସେହି ନାମର ସନ୍ଧାନହିଁ ମିଳିଛ, ପ୍ରଭୁ ସେ ପଣ୍ୟ ଯାହାକୁ ଦେବେ, ତାର ହେବ ନଶ୍ଚିତ ଉଦ୍ଧାର । ଏ ଧନ ନିଆଁରେ ପୋଡ଼ି ଯାଏନା, ଚୋର ଏହାକୁ ନେଇ ପଳାଇ ଯିବନ, ଏ ଧନ ପାଣିରେ ବୁଡ଼ି ଯିବନ, ଏହା ଯୋଗୁଁ କୌଣସି ହେଲେ ଦଣ୍ଡ ଭୋଗ ହେବ ନାହିଁ । ଏହି ଧନର ଗାରମା ଏହି ଯେ, ଏହା ପ୍ରତ୍ୟହ ବଢ଼ି ଚାଲେ, ଏବଂ ଖର୍ଚ୍ଚ ହୁଏ କେବଳ ସହଜାନନ୍ଦ ଆଣିଦେବା ପାଇଁ । ଏଣୁ ଏହି ଅନୁପମ କଥା ଶୁଣ ଭାଇ, ଏହି ଧନ ସଂଚୟ ନ କର ପରମଗତ ପାଇବ ବୋଲି ଆଶା କର କପର ? ନାନକର କଥନ ଏହି ଯେ, ଏଇ ଯେ ମୁଁ ଶୁଣାଉଛ ତୁମକୁ, ଯାହାକି ଅନର୍ବଚନୀୟ, ତାହା ମିଳେ କେବଳ ସଦ୍‌ଗୁରୁଠାରୁ ।

: ୯୮ :

ହଉ ଗୁର ପୁଛଉ ଆପଣେ ଗୁର ପୁଛୁ କାର କମାଉ ॥
ସବଦ ସଲାହି ମନ ବସୈ ହଉମୈ ଦୁଖୁ ଜଲି ଜାଉ ॥
ସହଜେ ହୋଇ ମିଲାବଡ଼ା ସାଚେ ସାଚ ମିଲାଉ ॥ ୫ ॥
ସବଦ ରତେ ସେ ନିରମଲେ ତଜି କାମ କ୍ରୋଧୁ ଅହଂକାରୁ ॥
ନାମୁ ସଲାହନି ସଦ ସଦା ହରି ରାଖହି ଉରଧାରି ॥
ସୋ କିଉ ମନହୁ ବିସାରୀଐ ସଭ ଜୀଆ କା ଆଧାରୁ ॥ ୬ ॥
ସବଦ ମରୈ ସୋ ମରି ରହୈ ଫିରି ମରୈ ନ ଦୂଜୀ ବାର ॥
ସବଦୈ ହୀ ତେ ପାଈଐ ହରିନାମେ ଲଗୈ ପିଆରୁ ॥
ବିନୁ ସବଦୈ ଜଗୁ ଭୂଲା ଫିରୈ ମରି ଜନମୈ ବାଂରେ ବାର ॥ ୭ ॥
ସଭ ସାଲାହୈ ଆପ କଉ ବଡ଼ହୁ ବଡେରୀ ହୋଇ ॥
ଗୁର ବିନୁ ଆପୁ ନ ଚୀନୀଐ କହେ ସୁଣେ କିଆ ହୋଇ ॥
ନାନକ ସବଦ ପଛାଣୀଐ ହଉମୈ କରୈ ନ କୋଇ ॥ ୮ ॥ ୮ ॥

ସିରୀ ରାଗୁ ଅସଟପଦୀଆ

: ୯୯ :

ବାରହ ମହି ରାବଲ ଖପି ଜାବହି ଚହୁ ଛିଅ ମହି ସଂନିଆସୀ ॥
ଜୋଗୀ କାପଡ଼ୀଆ ସିର ଖୂଥେ ବିନୁ ସବଦୈ ଗଲି ଫାସୀ ॥ ୧ ॥
ସବଦ ରତେ ପୂରେ ବୈରାଗୀ ॥
ଅଉହଠି ହସତ ମହି ଭୀଖିଆ ଜାଚୀ ଏକ ଭାଇ ଲିବ ଲାଗି ॥ ୧ ॥
ବ୍ରହମଣ ବାଦୁ ପଡ଼ହି କରି କିରଆ କରଣୀ କରମ କରାଏ ॥
ବିନୁ ବୁଝେ କିଛୁ ସୁଝୈ ନାହୀ ମନମୁଖୁ ବିଛୁଡ଼ି ଦୁଖୁ ପାଏ ॥ ୨ ॥
ସବଦ ମିଲେ ସେ ସୂଚାଚାରୀ ସାଚୀ ଦରଗହ ମାନେ ॥
ଅନଦିନୁ ନାମି ରତନି ଲିବ ଲାଗେ ଜୁଗି ଜୁଗି ସାଚ ସମାନେ ॥ ୩ ॥
ସଗଲେ କରମ ଧରମ ସୁଚ ସଂଜମ ଜପ ତପ ତୀରଥ ସବଦ ବସେ ॥
ନାନକ ସତିଗୁର ମିଲେଂ ମିଲିଆ ଦୂଖ ପରାଛତ କାଲ ନସେ ॥ ୪ ॥ ୧୭ ॥

ପରଭାତୀ

: ୯୮ :

ମୁଁ ସର୍ବଦା ଗୁରୁଙ୍କୁ ସବୁ ସମସ୍ୟାରେ ପ୍ରଶ୍ନ କରେ, ଏବଂ ତାଙ୍କର ନିର୍ଦ୍ଦେଶ ଅନୁଯାୟୀ କର୍ମରତ ହୋଇଥାଏ । ମୁଁ ନିଜର ଚିନ୍ତନ କରିଥାଏ, କାରଣ ଚିତ୍ତରେ ନିଜେ ପ୍ରତିଷ୍ଠିତ ହେଲେ ଅହଂକାରରୂପକ ଦୁଃଖ ଜଳି ଭସ୍ମୀଭୂତ ହୋଇଯାଇଥାଏ । ସହଜ ମଧ୍ୟ ହୋଇଉଠେ ପ୍ରଭୁଙ୍କ ସହ ମିଳନ, ସତ୍ୟ ମିଳିଥାଏ ସତ୍ୟଦ୍ୱାରା । ଯେଉଁ ଲୋକ ଶବ୍ଦରତ, ସେ ନିର୍ମଳ ଚରିତ୍ର, ସେ କାମ-କ୍ରୋଧ ଅହଂକାରରୁ ମୁକ୍ତ, ସେ ନିତ୍ୟ ନାମର ପ୍ରଶସ୍ତି କରିଥାନ୍ତି, ଏବଂ ହୃଦୟରେ ପ୍ରତିଷ୍ଠିତ କରିଥାନ୍ତି ସର୍ବଦା ହରିଙ୍କୁ, ଯେ କି ସର୍ବଜୀବର ଆଧାର, ତାଙ୍କୁ ମନରୁ ବିସୋରି ଦେବ କିପରି ? ଶବ୍ଦଦ୍ୱାରା ଯେ ନିଜର ଅହଂକାରକୁ ମାରିଦିଏ, ତାର ଏପରି ଜୀବନରେ ମୃତ୍ୟୁ ହୁଏ, ଯେପରିକି ମୃତ୍ୟୁକୁ ସେ ଆଉ ଭେଟେନା । ଶବ୍ଦଦ୍ୱାରାହିଁ ପ୍ରଭୁ-ପ୍ରାପ୍ତି ଘଟେ, ଶବ୍ଦହିଁ ଆଣେ ହରିନାମ ପ୍ରତି ଆଦର । ଶବ୍ଦ ବିନା ସମସ୍ତ ଜଗତ ଭ୍ରାନ୍ତ, ଏବଂ ଦେହ ଯୋଗୁଁ ବାରବାର ମରେ, ଜନ୍ମେ ଓ ପୁଣି ମରେ । ସମସ୍ତେ ଆତ୍ମ-ପ୍ରଶଂସାରେ ରତ । ପ୍ରତ୍ୟେକ ଲୋକ ମନେ କରେ ଯେ, ସେ ବଡ଼ରୁ ମଧ୍ୟ ବଡ଼, କିନ୍ତୁ ଆତ୍ମାର ପ୍ରକୃତ ପରିଚୟ କେହି ପାଇପାରେନା ବିନା ଗୁରୁରେ; କେବଳ କହିବା-ଶୁଣିବା ବୃଥା । ନାନକ ତେଣୁ ଘୋଷଣା କରେ କି, କେବଳ ଶବ୍ଦଦ୍ୱାରାହିଁ ଆତ୍ମ-ପରିଚୟ ମିଳେ, କେବଳ ଶବ୍ଦ-ପ୍ରାପ୍ତି ପରେହିଁ ଅହଂକାର ଲୁପ୍ତ ହୁଏ ।

: ୯୯ :

ରଜା ବାର ବାଟରେ ନଷ୍ଟ ହେଲେ ସନ୍ନ୍ୟାସୀ ନଷ୍ଟ ଯାଏ ଛ-ଘର ବାଟରେ; ଶବ୍ଦ-ବିହୀନ କାପାଳିକ, ଯୋଗୀ ଓ ଜୈନୀ ଏ ସମସ୍ତଙ୍କ ବେକରେ ଫାଶ ବନ୍ଧା, ଜାଣିବ । ସଂପୂର୍ଣ୍ଣ ବୈରାଗୀ ହେଉ ଯେ କେବଳ ଶବ୍ଦବ୍ରହ୍ମାଶ୍ରୟୀ । ହାତରେ ଗୋଟେଇ ଆଣିଥିବା ଟିପରା ଧରି ଭିକ୍ଷା ମାଗୁଥିଲେହେଁ, ସେ କେବଳ ଏକ ପ୍ରେମରେ ଲଗ୍ନ-ଚିତ୍ତ । ବେଦବିଦ୍ ବ୍ରାହ୍ମଣ ଚିନ୍ତା କରେ ଓ କରାଉଥାଏ, କିନ୍ତୁ ଶବ୍ଦ-ବ୍ରହ୍ମର ମର୍ମ ନ ବୁଝିଲେ, ସେ ରହିଥାଏ ସମ୍ପୂର୍ଣ୍ଣ ଅଜ୍ଞ, ଏବଂ ସ୍ୱେଚ୍ଛାଚାରୀ ସଂସାରୀ ଲୋକ ପ୍ରଭୁଙ୍କଠାରୁ ଦୂରରେ ରହିବା ଫଳରେ ଚିରଦିନ ପାଉଥାଏ ଦୁଃଖ । ଯେ ଶବ୍ଦକୁ ଜାଣିପାରିଲେଣି, ତାଙ୍କର ସକଳ ଆଗ୍ରହ ଆପେ ଆପେ ଶୁଚି ହୋଇଉଠେ । ଅନୁଦିନ ନାମ-ରତିରେ ଜ୍ୟୋତି ଫୁଟିଉଠୁଛି, ଯୁଗଯୁଗ ଧରି ସତ୍ୟ ସେହିଠାରେ ଅବସ୍ଥିତ, ସକଳ କର୍ମ, ଧର୍ମ, ଶୁଚିତା ଓ ସଂଯମ, ସକଳ ଜପ, ତପ ଓ ତୀର୍ଥଯାତ୍ରାର ଫଳ, ସମସ୍ତହିଁ ଶବ୍ଦ-ବ୍ରହ୍ମରେ ଅବସ୍ଥିତ । ନାନକର କଥନ ଏହି ଯେ, ସଦ୍‌ଗୁରୁଙ୍କ ଭେଟ ହେଲେହିଁ ପ୍ରଭୁଙ୍କର ଭେଟ ହେବ, ଏବଂ ସେହି ସାଥେ ହେବ ପାପ ଓ ମୃତ୍ୟୁର ଅବସାନ ।

## ଗୁଣ-ଗାନ

: ୧୦୦ :

ବଣଜୁ କରହୁ ବଣଜାରହୋ ବଖରୁ ଲେହୁ ସମାଲି ॥
ତୈସୀ ବସରୁ ବିସାହୀଐ ଜୈସୀ ନିବହୈ ନାଲି ॥
ଅଗୈ ସାହୁ ସୁଜାଣୁ ହୈ ତୈସୀ ବସରୁ ସମାଲି ॥
ଭାଈ ରେ ରାମୁ କହହୁ ଚିତ ଲାଇ ॥
ହରିଜସୁ ବଖରୁ ଲୈ ଚଲହୁ ସହୁ ଦେଖୈ ପତୀଆଇ ॥ ୧ ॥ ରହାଉ ॥
ଜିନା ରାସି ନ ସଚୁ ହୈ କିଉ ତିନା ସୁଖୁ ହୋଇ ॥
ଖୋଟୈ ବଣଜି ବଣଂଜିଐ ମନୁ ତନୁ ଖୋଟା ହୋଇ ॥
ଫାହୀ ଫାଥେ ମିରଗ ଜିଉ ଦୂଖୁ ଘଣୋ ନିତ ରୋଇ ॥ ୨ ॥
ଖୋଟେ ପୋତୈ ନ ପବହି ତିନ ହରିଗୁର ଦରସୁ ନ ହୋଇ ॥
ଖୋଟେ ଜାତି ନ ପତି ହୈ ଖୋଟି ନ ସୀଝସି କୋଇ ॥
ଖୋଟେ ଖୋଟୁ କମାବଣା ଆଇ ଗଇଆ ପତି ଖୋଇ ॥ ୩ ॥
ନାନକ ମନୁ ସମଝାଈଐ ଗୁର କୈ ସବଦି ସାଲାହ ॥
ରାମନାମ ରଂଗି ରତିଆ ଭାରୁ ନ ଭରମୁ ତିନାହ ॥
ହରି ଜପି ଲାହା ଅଗଲା ନିରଭଉ ହରି ମନ ମାହ ॥ ୪ ॥

ସିରୀ ରାଗୁ

: ୧୦୧ :

ତୂ ସୁଲତାନୁ କହା ହଉ ମୀଆ ତେରୀ କବନ ବଡ଼ାଈ ॥
ଜୋ ତୂ ଦେହି ସୁ କହା ସୁଆମୀ ମୈ ମୂରଖ କହଣୁ ନ ଜାଈ ॥ ୧ ॥
ତେରେ ଗୁଣ ଗାବା ଦେହି ବୁଝାଈ ॥
ଜୈସେ ସଚ ମହି ରହଉ ରଜାଈ ॥ ୧ ॥ ରହାଉ ॥
ଜୋ କିଛୁ ହୋଆ ସଭୁ କିଛୁ ତୁଝ ତେ ତେରୀ ସଭ ଅସନାଈ ॥
ତେରା ଅଂତୁ ନ ଜାଣା ମେରେ ସାହିବ ମୈ ଅନ୍ଧୁଲେ କିଆ ଚତୁରାଈ ॥ ୨ ॥
କିଆ ହଉ କଥୀ କଥେ କଥି ଦେଖା ମୈ ଅକଥୁ ନ କଥନା ଜାଈ ॥
ଜୋ ତୁଧୁ ଭାବୈ ସୋଈ ଆଖା ତିଲୁ ତେରୀ ବଡିଆଈ ॥ ୩ ॥
ଏତେ କୂକର ହଉ ବେଗାନା ଭଉକା ଇସୁ ତନ ତାଈ ॥
ଭଗତି ହୀଣୁ ନାନକୁ ଜେ ହୋଇଗା ତା ଖସମୈ ନାଉ ନ ଜାଈ ॥ ୪ ॥ ୧ ॥

ବିଲାବଲୁ

: ୧୦୦ :

ହେ ବ୍ୟବସାୟୀ, ସାବଧାନରେ ସଉଦା କର, ଏପରି ପଦାର୍ଥ କିଣ, ଯାହା ତମ ସାଥିରେ ଯିବ । ପରଲୋକରେ ସ୍ୱୟଂ ପ୍ରଭୁହିଁ ଏକମାତ୍ର ସାହୁକାର ତେଣୁ ସେ ଯେଉଁ ଦ୍ରବ୍ୟ ନେବେ, କେବଳ ସେହି ଦ୍ରବ୍ୟହିଁ ପରଖି କରି କିଣ । ହେ ଭାଇ, ଚିତ୍ତକୁ ଏକାଗ୍ର କର, ମୁହଁରେ ରାମ-ନାମ ଉଚ୍ଚାରଣ କର, ଏବଂ ଏପ୍ରକାର ହରି-ଯଶ କିଣିରଖ, ଯେପରିକି ପରଲୋକର ସାହୁକାର ଆଖି ପକେଇଲେହିଁ ତାକୁ ବିଶ୍ୱାସ କରିବ । ଯାହାପାଖରେ ସତ୍ୟର ପୁଞ୍ଜି ନାହିଁ, ସେ କେବେହେଲେ ସୁଖ ଲାଭ କରିବ ନାହିଁ । ମନ୍ଦ ସ୍ୱାଦରେ ବଣିଜ କଲେ, ଲୋକର ତନମନ ମନ୍ଦ ହୋଇଯାଏ, ଜାଲରେ ପଡ଼ିଥିବା ମୃଗ ସମାନ ସେ ଲୋକ ଗଭୀର ଦୁଃଖ ପାଏ ଓ ନିତ୍ୟ କରିଥାଏ ବିଳାପ । ପ୍ରଭୁଙ୍କ ଖଜଣାଖାନାରେ ଖରାପ ଜିନିଷ ତମେ ତ ଦାଖଲ ଦେଇ ପାରିବ ନାହିଁ, ସେଥିରେ ବା ହରି ଓ ଗୁରୁଙ୍କ ଦର୍ଶନ ମିଳିବ କିପରି ? ମନ୍ଦ ଲୋକ ସମାଜରେ ଅପାଂକ୍ତେୟ ଓ ସମ୍ମାନହୀନ, ମନ୍ଦକର୍ମ କରି ଏ ଜଗତରେ କିଏ ବା ସଫଳ ହେବାକୁ ଆଶା କରିପାରେ ? ଖରାପ ଲୋକ ଖରାପ କାମ କରିଥାନ୍ତି ଏବଂ ଯା-ଆସ କରିଥାନ୍ତି ଅପମାନର ବୋଝ ମୁଣ୍ଡରେ ଧରି । ନାନକର କଥନ ତେଣୁ ଏହି ଯେ, ଗୁରୁଦତ୍ତ ନାମକୁ ଉଚ୍ଚସ୍ୱରରେ ରଟି କେବଳ ପ୍ରଭୁ-ଗୁଣ ଗାନ କର, ଯେ ରାମନାମର ରଙ୍ଗରେ ନିଜକୁ ରଞ୍ଜିତ କରିପକାନ୍ତି ସେ ହୋଇଉଠନ୍ତି ଭାର-ଶୂନ୍ୟ ଓ ଭ୍ରମ-ଶୂନ୍ୟ । ହରିନାମ ଜପରେ ଲାଭ ଛଡ଼ା କ୍ଷତିହିଁ ନାହିଁ; ତେଣୁ ହରିଙ୍କି ମନରେ ପ୍ରତିଷ୍ଠିତ କରି ସଂସାରରେ ନିର୍ଭୟ ହୋଇ ଚଳ-ପ୍ରଚଳ ହୁଅ ।

: ୧୦୧ :

ହେ ପ୍ରଭୁ, ତୁମେ ତ ସୁଲତାନ; ତେଣୁ ମୁଁ ଯେ ତୁମକୁ କହେ ମିଆଁ ବୋଲି, ସେଥିରେ ତୁମର ବଡ଼ାଇ ବର୍ଦ୍ଧିତ ହେଲା କିପରି ? ତମେ ଯେପରି ବୁଝାଉଛ, ମୁଁ ତାହାହିଁ କହୁଛି, କିନ୍ତୁ ମୁଁ ତ ଏକ ମୂର୍ଖ, ମୁଁ କ'ଣ ବା କହିପାରେ ? ମତେ ତମେ ଜ୍ଞାନ ନ ଦେଲେ, ମୁଁ ତମର କି ଗୁଣ କିପରି ଗାଇପାରେ ? ଚଳିବି ବା କିପରି ସତ୍ୟାନୁଗାମୀ ହୋଇ ? ଯାହା କିଛି ହୋଇଛି, ସେ ସମସ୍ତ କେବଳ ତୁମଠାରୁ ଆସିଛି ଯିନା । ସମସ୍ତହିଁ ତୁମରି ମହିମା କେବଳ । ତୁମର ଅନ୍ତ ଖୋଜି ପାଇବି, ଏ ଶକ୍ତି କାହିଁ ମୋର ? ମୁଁ ଯେ ଏକ ଅନ୍ଧ ଓ ବୁଦ୍ଧିହୀନ ଲୋକମାତ୍ର, ମୁଁ କି କଥନ କହିପାରେ ? ବରଂ ବହୁ କଥନ ପରେ ଏହାହିଁ ଜାଣିଛି ଯେ, ଅନିର୍ବଚନୀୟର କଥନ ମୋର କ୍ଷୁଦ୍ର ଶକ୍ତିର ବାହାରେ । ତୁମକୁ ଯାହା ଭଲ ଲାଗିବ, ତାହାହିଁ ଅନୁମାନ କରି ମୁଁ କହିଚାଲିଛି—ତାହା କିନ୍ତୁ ତୁମ ଗୁଣ-କୀର୍ତ୍ତନର ଛଳ ମାତ୍ର । ଏଠି ବହୁତ କୁକୁର ସଦାବେଳେ ଭୁକିଚାଲିଛନ୍ତି, କେବଳ ନିଜ ଦେହର ଆବଶ୍ୟକତା ଘେନି; କିନ୍ତୁ ମୁଁ ଏଠି ଏକପ୍ରକାର ବିଦେଶୀ ବୋଲି ନିଜକୁ ମନେକରେ । ନାନକ କହେ କି, ଯେ ଭକ୍ତିହୀନ, ତା'ଠାରେ ସ୍ୱାମୀର ମହିମା କିପରି ପ୍ରକଟିତ ହେବ ?

## ସତ୍‌ସଙ୍ଗତ, ସାଧୁ, ସନ୍ତ, ଗୁରୁମୁଖ

: ୧୦୨ :

ଉତ୍ତମ ସଂଗୀତ ଉତ୍ତମୁ ହୋବୈ ॥ ଗୁଣ କଉ ଧାବୈ ଅବଗଣ ଧୋବୈ ॥
ବିନୁ ଗୁର ସେବେ ସହଜୁ ନ ହୋବୈ ॥ ୭ ॥

ଆସା, ଅସଟପଦୀଆ

: ୧୦୩ :

କଲର କେରୀ ଛପଡ଼ୀ କଉଆ ମଲି ମଲି ନାଇ ॥
ମନୁ ତନୁ ମୈଲା ଅବଗୁଣୀ ଚିଂଜୁ ଭରୀ ଗନ୍ଧୀଆଇ ॥
ସରବରୁ ହଂସି ନ ଜାଣିଆ କାଗ କୁପଂଖୀ ସଙ୍ଗି ॥
ସାକତ ସିଉ ଐସୀ ପ୍ରୀତି ହୈ ବୁଝହୁ ଗିଆନୀ ରଙ୍ଗି ॥
ସନ୍ତ ସଭା ଜୈକାରୁ କରି ଗୁରମୁଖି କରମ କମାଉ ॥
ନିରମଲୁ ନାବଣୁ ନାନକା ଗୁରୁ ତୀରଥୁ ଦରୀଆଉ ॥ ୧୦ ॥

ସଲୋକ ବାର୍‌ ତେ ବଧୀକ

: ୧୦୪ :

ବୋଲହୁ ସାଚୁ ମିଥିଆ ନହୀଂ ରାଈ ॥ ଚାଲହୁ ଗୁରମୁଖି ହୁକମି ରଜାଈ ॥
ରହହୁ ଅତୀତ ସଚେ ସରଣାଈ ॥ ୧ ॥
ସଚ ଘରି ବୈସୈ କାଲୁ ନ ଜୋହୈ ॥ ମନମୁଖ କଉ ଆବତ ଜାବତ ଦୁଖୁ ମୋହୈ ॥ ୧ ॥ ରହାଉ ॥
ଅପିଉ ପୀଅଉ ଅକଥୁ କଥି କଥି ରହୀଐ ॥ ନିଜଘରି ବୈସି ସହଜ ଘରୁ ଲହୀଐ ॥
ହରି ରସି ମାତେ ଇହୁ ସୁଖୁ କହୀଐ ॥ ୨ ॥
ଗୁରମତି ଚାଲ ନିହଚଲୁ ନହୀ ଡୋଲୈ ॥ ଗୁରମତି ସାଚି ସହଜି ହରି ବୋଲୈ ॥
ପୀବୈ ଅମ୍ରିତୁ ତତୁ ବିରୋଲୈ ॥ ୩ ॥
ସତିଗୁରୁ ଦେଖିଆ ଦୀଖିଆ ଲୀନୀ ॥ ମନୁ ତନୁ ଅରପିଓ ଅନ୍ତରଗତି କୀନୀ ॥
ଗତି ମିତି ପାଈ ଆତମୁ ଚୀନୀ ॥ ୪ ॥
ଭୋଜନୁ ନାମୁ ନିରଞ୍ଜନ ସାରୁ ॥ ପରମ ହଂସୁ ସଚୁ ଜୋତି ଅପାର ॥
ଜହ ଦେଖଉ ତହ ଏକଂକାରୁ ॥ ୫ ॥
ରହୈ ନିରାଲମୁ ଏକା ସଚୁ କରଣୀ ॥ ପରମ ପଦୁ ପାଇଆ ସେବା ଗୁର ଚରଣୀ ॥
ମନ ତେ ମନୁ ମାନିଆ ଚୂକୀ ଅହଂ ଭ୍ରମଣୀ ॥ ୬ ॥
ଇନ ବିଧି କଉଣୁ କଉଣୁ ନହୀଂ ତାରିଆ ॥ ହରି ଜସି ସନ୍ତ ଭଗତ ନିସତାରିଆ ॥
ପ୍ରଭ ପାଏ ହମ ଅବରୁ ନ ଭାରିଆ ॥ ୭ ॥

: ୧୦୨ :

କେବଳ ଉତ୍ତମ ସଙ୍ଗରେ ମୁଁ ଉତ୍ତମ ହେବାର ଆଶା କରେ, ସଜ୍ଜନ-ସଙ୍ଗ ପ୍ରଣୋଦିତ କରେ ଗୁଣ ପାଇଁ ଉଦ୍ୟମ ଏବଂ ଧୋଇ ମଧ୍ୟ ଦିଏ ଅବଗୁଣର ମଇଳା, କିନ୍ତୁ ଗୁରୁସେବା ବିନା ଏସବୁ ସହଜରେ ଘଟେ ନାହିଁ ।

: ୧୦୩ :

ନାନା ଅବଗୁଣ ହେତୁ ମନ ଓ ଦେହ ମଇଳାରେ ଭର୍ତ୍ତି ମଧ୍ୟ ମଇଳାରେ ପୂର୍ଣ୍ଣ, ଉଠୁଛି ଦୁର୍ଗନ୍ଧ । କୁ-ପକ୍ଷୀର ସଙ୍ଗରେ ମାତ୍ର ରହିବାରୁ ମାନସରୋବରର ହଂସ ସହିତ ପରିଚୟ ଘଟି ପାରିଲା ନାହିଁ । ହେ ଜ୍ଞାନି, ତେଣୁ ଜାଣିରଖ ଯେ, ପାପୀ ଜନଙ୍କ ସହିତ ପ୍ରୀତିର ଏହି ଫଳ । ସନ୍ଥ୍ୟାନଙ୍କର ଜୟ ଜୟ କହ, ଅନୁକୂଳ କର୍ମ କର । ନାନକର କଥନ ଏହି ଯେ, ଗୁରୁହିଁ ଶ୍ରେଷ୍ଠ ତୀର୍ଥ ଓ ନିର୍ମଳ ସ୍ଥାନ ।

: ୧୦୪ :

କେବେହେଲେ ସାମାନ୍ୟତମ ମିଥ୍ୟା ନ କହି, ଯେ ସଦା ସତ୍ୟହିଁ କହେ, ଏବଂ ଗୁରୁଦୀକ୍ଷିତ ହୋଇ ତାଙ୍କର ଆଦେଶ ଅନୁଯାୟୀହିଁ ନିଜକୁ ପରିଚାଳିତ କରେ । ସତ୍ୟଶରଣାଶ୍ରିତ ହୋଇ ସେହି ସଜ୍ଜନ ସମାଜରୁ ନିଜକୁ ଭିନ୍ନ ରଖେ । ସତ୍ୟର ଘର ଚଳାଚଳି ହୁଅନ୍ତି, କାଳର ପ୍ରଭାବ ସେପରି ଲୋକଉପରେ ପଡ଼େନା । କିନ୍ତୁ ଯେ ସ୍ୱେଚ୍ଛାଚାରୀ, ସେ ଜନ୍ମ-ମୃତ୍ୟୁର ଯିବା ଆସିବା ଦେଇ ମୋହ-ଜନିତ ଦୁଃଖରେ ବରାବର ପୀଡ଼ିତ ହୁଏ । ଯେ ଗୁରୁ-ଦୀକ୍ଷିତ ସେ ଅପେୟ ପାନ କରେ, ଏବଂ ଯାହା ଅକଥନୀୟ, ତାହା ପ୍ରକଟିତ ହୁଏ ତାର ବଚନରୁ, ସେ ନିଜର ଗୃହ-ସଂସାରରେ ରହି ମଧ୍ୟ ସହଜର ଘରକୁ ପାଇଥାଏ, ଯେଉଁ ସହଜ-ସୁଖ କେବଳ ମିଳିଥାଏ ଲୋକ ହରି-ରସରେ ମଗ୍ନ ହେଲେ । ଗୁରୁନିଷ୍ଠ ଜନ ଚଞ୍ଚଳ ବା ଏଣେତେଣେ ହୁଅନ୍ତି ନାହିଁ, ସେ ରହନ୍ତି ନିଶ୍ଚଳ, ନିର୍ବିକାର, ଏବଂ ତାଙ୍କର ସତ୍ୟମୟ ବଚନ ଦେଇ ହରି ସହଜରେ ନିର୍ଗତ ହୋଇଥାନ୍ତି । ସେହି ଲୋକହିଁ ତତ୍ତ୍ୱ-ସମୁଦ୍ର-ମନ୍ଥନ କରି ଅମୃତ ପାନ କରିଥାଏ । ସଦ୍‌ଗୁରୁ ଭେଟି, ତାଙ୍କଦ୍ୱାରା ଦୀକ୍ଷିତ ହୋଇ ତାଙ୍କଠାରେ ଚିତ୍ତ ସମର୍ପିତ କରି ଦେଇ, ଅନ୍ତଃକରଣରେ ପ୍ରଭୁଙ୍କୁ ପ୍ରତିଷ୍ଠିତ କରି ସେହି ସଜ୍ଜନ ପାଆନ୍ତି ଆତ୍ମ-ପରିଚୟ ଓ ଗତି-ମୁକ୍ତି । ନିରଞ୍ଜନ-ନାମହିଁ ସେ ଲୋକର ଶ୍ରେଷ୍ଠ ଭୋଜନ, ସେ ପରମହଂସ ଓ ସତ୍ୟର ଅପାର ଜ୍ୟୋତି । ସେ ଚତୁର୍ଦ୍ଦିଗରେ ଦେଖନ୍ତି କେବଳ ଏକ ଓଁକାର । ତାଙ୍କର କର୍ମଯାନ ପରିଚାଳିତ ହୁଏ ସେହି ଏକ ସତ୍ୟଦ୍ୱାରା, ସେ ରହନ୍ତି କିନ୍ତୁ ସକଳ କର୍ମ ଭିତରେ ନିର୍ଲିପ୍ତ, ଗୁରୁସେବା ଭିତରେ ପାଇଥାନ୍ତି ପରମପଦ ।

ସାଚ ମହଲ ଗୁରି ଅଲଖୁ ଲଖାଇଆ ॥ ନିହଚଲ ମହଲୁ ନହୀଂ ଛାଇଆ ମାଇଆ ॥
ସାଚ ସଂତୋଖେ ଭରମୁ ଚୁକାଇଆ ॥ ୮ ॥
ଜିନ କୈ ମନି ବସିଆ ସଚୁ ସୋଇ ॥ ତିନ କୀ ସଂଗତି ଗୁରମୁଖି ହୋଇ ॥
ନାନକ ସାଚ ନାମି ମଲୁ ଖୋଇ ॥ ୯ ॥ ୧୫ ॥

ଗଉଡ଼ୀ ଅସଟପଦୀଆ

: ୧୦୫ :

ଗୁରମୁଖି ସାଚେ କା ଭଉ ପାବୈ ॥ ଗୁରମୁଖି ବାଣୀ ଅଘଡ଼ୁ ଘଡ଼ାବୈ ॥
ଗୁରମୁଖି ନିରମଲ ହରି ଗୁଣ ଗାବୈ ॥ ଗୁରମୁଖି ପବିତ୍ରୁ ପରମ ପଦୁ ପାବୈ ॥
ଗୁରମୁଖି ରୋମି ରୋମି ହରି ଧିଆବୈ ॥ ନାନକ ଗୁରମୁଖି ସାଚି ସମାବୈ ॥ ୨୭ ॥
ଗୁରମୁଖି ଧରତୀ ସାଚେ ସାଜୀ ॥ ତିସ ମହି ଓପତି ଖପତି ସୁ ବାଜୀ ॥
ଗୁର କୈ ସବଦି ରପୈ ରଂଗୁ ଲାଇ ॥ ସାଚି ରତଉ ପତି ସିଉ ଘରି ଜାଇ ॥
ସାଚ ସବଦ ବିନୁ ପତି ନହୀଂ ପାବୈ ॥ ନାନକ ବିନୁ ନାବୈ କିଉ ସାଚି ସମାବୈ ॥ ୩୦ ॥

ରାମକଲୀ ସିଧଗୋସଟି

୧୦୬ :

ଗୁରମୁଖି ନାମୁ ଦାନୁ ଇସନାନୁ ॥ ଗୁରମୁଖି ଲାଗୈ ସହଜି ଧିଆନୁ ॥
ଗୁରମୁଖି ପାବୈ ଦରଗହ ମାନୁ ॥ ଗୁରମୁଖି ଭଉ ଭଂଜନୁ ପରଧାନୁ ॥
ଗୁରମୁଖି କରଣୀ କାର କରାଏ ॥ ନାନକ ଗୁରମୁଖି ମେଲି ମିଲାଏ ॥ ୩୬ ॥
ଗୁରମୁଖି ସାସତ୍ର ସିମ୍ରିତି ବେଦ ॥ ଗୁରମୁଖି ପାବୈ ଘଟି ଘଟି ଭେଦ ॥
ଗୁରମୁଖି ବୈର ବିରୋଧ ଗବାବୈ ॥ ଗୁରମୁଖି ସଗଲୀ ଗଣତ ମିଟାବୈ ॥
ଗୁରମୁଖି ରାମ ନାମ ରଂଗି ରାତା ॥ ନାନକ ଗୁରମୁଖି ଖସମୁ ପଛାତା ॥ ୩୭ ॥

ରାମକଲୀ ସିଧଗୋସଟି

: ୧୦୭ :

ଗୁରମୁଖି ଅସଟସିଧୀ ସଭି ବୁଧୀ ॥ ଗୁରମୁଖି ଭବଜଲୁ ତରୀଐ ସଚ ସୁଧୀ ॥
ଗୁରମୁଖି ସର ଅପସର ବିଧି ଜାଣୈ ॥ ଗୁରମୁଖି ପରବିରତି ନରବିରତି ପଛାଣୈ ॥
ଗୁରମୁଖି ତାରେ ପାରି ଉତାରେ ॥ ନାନକ ଗୁରମୁଖି ସବଦି ନିସତାରେ ॥

ରାମକଲୀ ସିଧଗୋସଟି

ତାଙ୍କଠୁ ଚାଲିଯାଇଛି ଅହଙ୍କାର ଓ ମୋହ-ଭ୍ରମ, ମନରୁ ଚାଲିଯାଇଛି ସକଳ ଅଭିମାନ । ଏ ପଥରେ ଗଲେ ଉଦ୍ଧାର ନ ହେବ କିପରି ? କେବଳ ହରି-ଯଶ-ଗାନ ହିଁ ଅନେକ ସନ୍ଥ-ଭକ୍ତଙ୍କୁ ଦେଇପାରିଛି ମୁକ୍ତି । ପ୍ରଭୁଙ୍କ ଭେଟ ହିଁ ଏକମାତ୍ର ଲକ୍ଷ୍ୟ, ସେ ମିଳିଗଲେ ଯଦି, ଅନ୍ୟ ଅନ୍ୱେଷଣ କେବଳ ବୃଥା ନୁହେଁ କି ? ଅଲେଖ ଗୁରୁ କେବଳ ସତ୍ୟ-ମନ୍ଦିରରେ ଦେଖାଦିଅନ୍ତି, ସେ ମନ୍ଦିର ନିଶ୍ଚଳ ଓ ଛାୟା-ମାୟା-ଶୂନ୍ୟ, ସତ୍ୟ ଦିଏ ସନ୍ତୋଷ ଏବଂ ଭ୍ରାନ୍ତିକୁ ଦୂରୀଭୂତ କରେ । ଯାହାର ଚିତ୍ତରେ ସତ୍ୟ ପ୍ରତିଷ୍ଠିତ ହୋଇଯାଏ, ସେହି ସତ୍ୟର ସହବାସ ଦେଇ ହିଁ ହୋଇଯାଏ ତାଙ୍କର ଗୁରୁଦୀକ୍ଷା । ନାନକର କଥନ ଏହି କି, ସତ୍ୟ ନାମଦ୍ୱାରା ଚିତ୍ତର ସକଳ ମଳ ବିଦୂରିତ ହୋଇଯାଇଥାଏ ।

: ୧୦୫ :

ଗୁରୁଦୀକ୍ଷିତ ସଜ୍ଜନର ଚିତ୍ତରେ ସର୍ବଦା ରହିଥାଏ ସତ୍ୟ ପ୍ରତି ଭୟ, ଗୁରୁନିଷ୍ଠ ସଜ୍ଜନ, ଗୁରୁର ବାଣୀ ନେଇ ଅନିର୍ମଳ ଓ ଦୁର୍ବିନୀତ ମନକୁ ଶାନ୍ତ, ନିର୍ମଳ କରି ଦେଇଥାନ୍ତି । ଗୁରୁନିଷ୍ଠର ନିର୍ମଳ ମନ କେବଳ ହରି-ଗୁଣ ଗାଏ, ପବିତ୍ର ଗୁରୁନିଷ୍ଠ ପରମ ପଦବୀ ପାଇଥାନ୍ତି ଗୁରୁନିଷ୍ଠର ପ୍ରତିଟି ପ୍ରେମ ହରିଧ୍ୟାନରେ ଲଗ୍ନ, ନାନକର କଥନ ଏହି କି, ଗୁରୁନିଷ୍ଠ ଜନ ସତ୍ୟରେ ହିଁ ଅଧିବାସ କରିଥାନ୍ତି । ପ୍ରଭୁ ଏ ଧରଣୀ ସୃଷ୍ଟି କରିଛନ୍ତି । ଗୁରୁନିଷ୍ଠ ସଜ୍ଜନମାନଙ୍କପାଇଁ ସେହି ପ୍ରଭୁ, ଉତ୍ପତ୍ତି-ନାଶ ଯାହାଙ୍କର ସହାସ୍ୟ ଲୀଳା, ଗୁରୁଙ୍କ ଉପଦେଶରେ ଯେଉଁମାନେ ନିଜକୁ ମକ୍ଷିତ କରିଦିଅନ୍ତି, ସେହି ସତ୍ୟଲୀନ ସଜ୍ଜନମାନେ ସହଜରେ ଘରକୁ ଫେରିଥାନ୍ତି । ସତ୍ୟ ବିନା ମାନ୍ୟତା ମିଳେନା । ନାନକ ପଚାରେ, ନାମ ବିନା ସତ୍ୟ ଅଉ କେଉଁଠି ଥାଏ କି ?

: ୧୦୬ :

ଗୁରୁପଦିଷ୍ଟ ଲୋକର ଲକ୍ଷଣ ହେଲା ହରିନାମ ଭଜନ, ଦାନ ଓ ସ୍ନାନ, ନିଷ୍ଠାର ସହିତ ଗୁରୁପଦେଶ ପାଳନ କରୁଥିବା ଲୋକକୁ ଧ୍ୟାନ ସହଜସାଧ୍ୟ ହୋଇଥାଏ, ଏବଂ ଏହିପରି ଗୁରୁପଦିଷ୍ଟ ଲୋକ ଈଶ୍ୱରଙ୍କ ପାଦତଳେ ସମ୍ମାନ ଲାଭ କରିଥାନ୍ତି, ସେ ଭବଭୟଭଂଜନ ଓ ସମାଜରେ ପ୍ରଧାନ ବ୍ୟକ୍ତି । ଗୁରୁମୁଖୀ ବ୍ୟକ୍ତି ନିଜର କର୍ତ୍ତବ୍ୟ କେବଳ କରନ୍ତି ନାହିଁ, ଅନ୍ୟମାନଙ୍କୁ ସେ ନିଜ ନିଜର କର୍ତ୍ତବ୍ୟ କରିବାରେ ସାହାଯ୍ୟ ମଧ୍ୟ କରିଥାନ୍ତି । ନାନକର କଥନ ତେଣୁ ଏହି ଯେ, ଗୁରୁମୁଖୀ ଲୋକହିଁ ଈଶ୍ୱର-ସାକ୍ଷାତ କରାଇ ପାରିବେ । ଗୁରୁମୁଖୀ ଶାସ୍ତ୍ର ସ୍ମୃତି ଓ ବେଦର ସହଜଜ୍ଞାତା ହୁଏ ଏବଂ ଯେଉଁ ଈଶ୍ୱର ପ୍ରତି ଘଟରେ ବିରାଜମାନ ସେ ସେହି ଘଟ ଓ ଘଟସ୍ଥ ପ୍ରଭୁର ଭେଦ ଦେଖି-ପାରେ । ଗୁରୁମୁଖୀର ବ୍ୟକ୍ତିତ୍ୱର ବୈର-ବିରୋଧ-ଭାବ ଏକାବେଳକେ ଲୁପ୍ତ ହୋଇଯାଏ, ଲୁପ୍ତ ମଧ୍ୟ ହୋଇଯାଏ ମନୁଷ୍ୟ ମନୁଷ୍ୟ ଭିତରେ ମୁଁ-ଅନ୍ୟ-ଗଣନା-ଭାବ ଓ ଅନ୍ୟୋନ୍ୟ-ଭେଦ ଭାବ । ସେ ହୋଇଉଠନ୍ତି ଏକାନ୍ତରେ ରାମ ନାମ ଅନୁରାଗୀ । ନାନକର କଥନ ଏହି ଯେ, ଗୁରୁମୁଖୀ ହିଁ ପ୍ରଭୁଙ୍କ ସହିତ ପରିଚିତ କରାଇ ଦେଇଥାନ୍ତି ।

: ୧୦୭ :

ଗୁରୁମୁଖୀହିଁ ସହଜରେ ପ୍ରାପ୍ତ ହୋଇଥାନ୍ତି ଅଷ୍ଟସିଦ୍ଧି ଏବଂ ସର୍ବାଙ୍ଗୀନ ବୁଦ୍ଧି, ସେ କେବଳ ସତ୍ୟ ଓ ଶୌଚ ଉପରେ ନିର୍ଭର କରିହିଁ ପାରହୋଇଥାନ୍ତି ଏହି ଭବସାଗର । ଗୁରୁମୁଖ ଜାଣନ୍ତି କର୍ମର ବେଳା ଓ ବିଧି ଏବଂ ପ୍ରବୃତ୍ତି-ଓ-ନିବୃତ୍ତି-ଜ୍ଞାନ ତାଙ୍କ ନିକଟରେ ସୁପରିଚିତ । ସେ ତେଣୁ ଏହି ଭବସାଗରର ପାର-ଉତ୍ତର-ନିସ୍ତାରେ ଅନ୍ୟମାନଙ୍କର ସହାୟକ ହୋଇଥାନ୍ତି ଏବଂ ସେ ତାହା କରିଥାନ୍ତି କେବଳ ଶବ୍ଦ-ବ୍ରହ୍ମ ସାହାଯ୍ୟରେ ।

: ୧୦୮ :

ଜପୁ ତପୁ ସଂଜମୁ ସାଧୀଐ ତୀରଥି କୀଚୈ ବାସୁ ॥
ପୁଂନ ଦାନ ଚଂଗିଆଈଆ ବିନୁ ସାଚେ କିଆ ତାସୁ ॥
ଜେହା ରାଧେ ତେହା ଲୁଣେ ବିନୁ ଗୁଣ ଜନମୁ ବିଣାସୁ ॥ ୧ ॥
ମୁଂଧେ ଗୁଣ ଦାସୀ ସୁଖୁ ହୋଇ ॥ ଅବଗୁଣ ତିଆଗି ସମାଈଐ ଗୁରମତି ପୂରା ସୋଈ ॥ ୧ ॥ରହାଉ ॥
ବିଣୁ ରାସୀ ବାପାରୀଆ ତକେ କୁଂଡା ଚାରି ॥ ମୂଲୁ ନ ବୁଝୈ ଆପଣା ବସତୁ ରହୀ ଘରବାରି ॥
ବିଣୁ ବଖର ଦୁଖୁ ଅଗଲା କୂଡି ମୁଠୀ କୂଡିଆରି ॥ ୨ ॥

ସିରୀ ରାଗୁ ଅସଟପଦୀଆ

: ୧୦୯ :

ସିଦକୁ ସବୂରୀ ସାଦକା ସବରୁ ତୋସା ମଲାଇକାଂ ॥
ଦୀଦାରୁ ପୂରେ ପାଇସା ଥାଉ ନାହୀ ଖାଇକା ॥ ୨ ॥

ବାର ସିରୀ ରାଗୁ ପଉଡ଼ୀ ୨, ସଲୋକ ୨

: ୧୧୦ :

ଗଲୀଂ ଅସୀ ଚଂଗୀଆ ଆଚାରୀ ବୁରୀଆହ ॥
ମନହୁ କୁସୁଧା କାଲୀଆ ବାହରି ଚିଟବୀଆହ ॥
ରୀସା କରହ ତିନାଡ଼ୀଆ ଜୋ ସେବହି ଦରି ଖଡୀଆହ ॥
ନାଲି ଖସମୈ ରତୀଆ ମାଣହି ସୁଖି ରଲୀଆହ ॥
ହୋଦେ ତାଣି ନିତାଣୀଆ ରହହି ନିମାନଣୀଆହ ॥
ନାନକ ଜନମୁ ସକାରଥା ଜେ ତିନ କୈ ସଂଗି ମିଲାହ ॥ ୨ ॥

ବାର ସିରୀ ରାଗୁ ପଉଡ଼ୀ ୭, ସଲୋକ ୨

: ୧୧୧ :

ଗୁଣା କା ହୋବୈ ବାସୁଲା କଢି ବାସୁ ଲଈଜୈ ॥
ଜେ ଗୁଣ ହୋବନି ସାଜନା ମିଲି ସାଝ କରୀଜୈ ॥
ସାଝ କରୀଜୈ ଗୁଣହ କେରୀ ଛୋଡି ଅବଗୁଣ ଚଲୀଐ ॥
ପହିରେ ପଟଂବର କରି ଅଡ଼ଂବର ଆପଣା ପିଡୁ ମଲୀଐ ॥
ଜିଥୈ ଜାଇ ବହୀଐ ଭଲା କହୀଐ ଝୋଲି ଅଂମ୍ରିତୁ ପୀଜୈ ॥
ଗୁଣା କା ହୋବୈ ବାସୁଲା କଢି ବାସୁ ଲଈଜୈ ॥ ୩ ॥ ୧ ॥ ୪ ॥

ସୂହୀ ଛନ୍ତ

: ୧୦୮ :

ସାଧନା ନାମରେ ଯେତେ ଜପ, ତପ କର ବା କର ତୀର୍ଥବାସ ବା କର ଦାନାଦି ତଥାକଥିତ ଶୁଭକର୍ମ, କିନ୍ତୁ ଯଦି ସତ୍‌ସଙ୍ଗରହିତ ହେଲ, ତେବେ ଏସବୁରୁ କି ଲାଭ ଆଶା କର ? ତମେ ଯେ ପ୍ରକାର ବୀଜ ବପନ କର, କେବଳ ସେହି ପ୍ରକାର ଶସ୍ୟ ପାଇବାହିଁ ଆଶା କରିପାର ଏବଂ ଗୁଣର ବୀଜ ବପନ ନ କଲେ, ତମର ସମଗ୍ର ମାନବ-ଜନ୍ମ ହିଁ ନଷ୍ଟ ହେଲା ବୋଲି ଜାଣିବ । କେବଳ ଗୁଣାବଳୀର ଦାସତ୍ୱହିଁ ତୁମକୁ ଦେଇପାରେ ସୁଖ, ଯେ ଅବଗୁଣମାନଙ୍କୁ ପରିତ୍ୟାଗ କରି ଗୁରୂପଦେଶ ମାନି ଚଳନ୍ତି ଏବଂ ସେହି ହିଁ ଆଶା କରିପାରନ୍ତି ପରିତୃପ୍ତି । ଯେଉଁ ବେପାରୀର ପୁଞ୍ଜି ନାହିଁ ସେ ଚତୁର୍ଦ୍ଦିଗ ବୃଥାରେ ଏଣେତେଣେ ଧାଁ-ଧଉଡ଼ କରିବା ଛଡ଼ା ଆଉ କ'ଣ କରିପାରେ ? ଅଥଚ ସାଧକର ପୁଞ୍ଜି ତା'ର ନିଜ ଘରେ ଅଛି, ସେ ତା'ର ସଂଧାନ ନେଇନାହିଁ, ସେହି ମୂଳ-ପୁଞ୍ଜିର ଅଭାବରୁ ଦୁଃଖ ହୁଏ ଘନୀଭୂତ, ଯେ ମିଥ୍ୟାକୁ କରେ ପୂଜା, ସତ୍ୟକୁ ଘୋଡ଼ି, ତାକୁ ଠକି ନେଇଥାଏ ଆଉ ଏକ ମିଥ୍ୟାବାଦୀ ।

: ୧୦୯ :

ପ୍ରକୃତ ଧର୍ମନିଷ୍ଠ ଲୋକର ପାଥେୟ ହେଲା ସତ୍ୟତା; ଦେବଦୂତର ପ୍ରତୀକ ହେଲା ସନ୍ତୋଷ । ଏହିପରି ଲୋକ ପାଇଥାନ୍ତି ପରିପୂର୍ଣ୍ଣ ଭାବରେ ଈଶ୍ୱରଙ୍କୁ ଯେଉଁ ଧାମରେ ସ୍ଥାନ ନାହିଁ ଅଜ୍ଞାନୀ ମୂର୍ଖଙ୍କର ।

: ୧୧୦ :

ମୁଁ ଅତ୍ୟନ୍ତ ବଚନ-ପଟୁ, କିନ୍ତୁ ମୋର ଦୈନନ୍ଦିନ ଆଚାର ଅତି ମନ୍ଦ, ବାହାରେ ମୁଁ ବେଶ ସଫା-ସୁତୁରା ନିଜକୁ ରଖିଲେହେଁ, ମୋର ଅଭ୍ୟନ୍ତର ଅତ୍ୟନ୍ତ ଅଶୁଦ୍ଧ ଓ କାଳିମାମୟ । ମୁଁ ତେଣୁ ଅନେକ ସମୟରେ ନିଜକୁ ସେହି ଭାଗ୍ୟବାନମାନଙ୍କ ସହିତ ତୁଳନା କରିଥାଏ, ଯେଉଁମାନେ ଦାରିଦ୍ର୍ୟ ଯୋଗୁଁ ମୋ ଦ୍ୱାରରେ ଭିକ୍ଷା କଲେ ମଧ୍ୟ, ପରସେବାରେ ନିଯୁକ୍ତ ଓ ଈଶ୍ୱରାନୁଗ୍ରହରେ ବଢ଼ି ତାଙ୍କ ସହ ଲୀଳା-ରଙ୍ଗରେ ସୁଖମୟ ମୁହୂର୍ତ୍ତ କଟାଇଥାନ୍ତି । ମୁଁ ନିଷ୍ପ୍ରାଣ ଓ ମାନହୀନ । ନାନକର କଥନ ଏହିକି ଯେ, କେବଳ ସେହିମାନଙ୍କର ଜନ୍ମ ସଫଳ, ଯେଉଁମାନେ ଦାରିଦ୍ର୍ୟ ସତ୍ତ୍ୱେ ଈଶ୍ୱର-ଭକ୍ତିମୟ ବିଶୁଦ୍ଧ ଜୀବନ ଯାପନ କରନ୍ତି ।

: ୧୧୧ :

ମୋ ପାଖରେ ଗୁଣର ପେଡ଼ି ଯଦି ଥାଏ, ତେବେ ତାକୁ ଖୋଲି କେବଳ ଗୁଣର ସୌରଭହିଁ ଗ୍ରହଣ କର । କେବଳ ଗୁଣୀ ଥିବା ଲୋକ ସହିତହିଁ ମିତ୍ରତା କର ଏବଂ ତାର ସ୍ୱକୀୟ ଗୁଣଗୁଡ଼ିକୁ ନିଜସ୍ୱ କର । ଅନ୍ୟ ଲୋକର ଗୁଣର ଭାଗିଦାର ହେବାପାଇଁ ସର୍ବଦା ଜାଗ୍ରତ ରହ, ଏବଂ ଯେଉଁଠି ଅବଗୁଣର ସଂଧାନ ପାଇଲ, ତାକୁ ତତ୍‌କ୍ଷଣାତ୍ ସେହି ସ୍ଥାନରେହିଁ ଘୋଡ଼ି ପକାଅ । ତମେ ନିଜ ସ୍ଥାନରେହିଁ ନିଜ ଗୁଣର-ପଟ୍ଟ-ବସ୍ତ୍ର ପରିଧାନ କରି ଦୃଢ଼ଭାବରେ ଦଣ୍ଡାୟମାନ ରହ, ତମର ଗୁଣରେ ଆକୃଷ୍ଟ ହୋଇ ଅନ୍ୟମାନେ ଆସିବେ ତମ ପାଖକୁ, ଏବଂ ତମେ ନିଜ ଆସ୍ଥାନ ଘୋଡ଼ି କେଉଁଠିକି ଯିବ; ମନେ ରଖ ଯେ ସେଠି ତମର ଗୁଣ କୀର୍ତ୍ତିତ ହେଉଛି । ଏହା ସମ୍ଭବ ହେବ କେବଳ ଅସାର ବସ୍ତୁ ତ୍ୟାଗ କରି, ଆମେ ଯଦି କେବଳ ଅମୃତ ହିଁ ସର୍ବଦା ପାନ କରୁଁ ଏବଂ ଆମେ ସେ ପ୍ରକାର ଗୁଣ-ପିଟକର ଅଧିକାରୀ ହେଉଁ, ଯାହାକୁ ଖୋଲି ଅନ୍ୟମାନେ ସୁଗନ୍ଧ ଉପଭୋଗ କରିବେ ।

: ୧୧୨ :

ଗୁରୁ ସାଗରୋ ରତନାଗରୁ ତିରୁ ରତନ ଘଣେରେ ରାମ ॥
କରି ମଜନୋ ସପତ ସରେ ମନ ନିରମଲ ମେରେ ରାମ ॥
ନିରମଲ ଜଲ ନାଏ ଜା ପ୍ରଭ ଭାଏ ପଞ୍ଚ ମିଲେ ବୀଚାରେ ॥
କାମୁ କରୋଧୁ କପଟୁ ବିଖିଆ ତଜି ସଚୁ ନାମୁ ଉରି ଧାରେ ॥
ହଉମେ ଲୋଭ ଲହରି ଲବ ଥାକେ ପାଏ ଦୀନ ଦଇଆଲା ॥
ନାନକ ଗୁର ସମାନ ତୀରଥୁ ନାହୀଂ କୋଇ ସାଚେ ଗୁରୁ ଗୋପାଲା ॥ ୩ ॥

ଆସା ଛନ୍ତ

: ୧୧୩ :

ଅଉଗୁଣ ଛୋଡି ଗୁଣା କଉ ଧାଵହୁ କରି ଅଵଗୁଣ ପଛୁତାହୀ ଜୀଉ ॥ ୧ ॥
ସର ଅପସର କୀ ସାର ନ ଜାଣହି ଫିରି ଫିରି କୀଚ ବୁଡାହୀ ଜୀଉ ॥ ୨ ॥ ୨୨ ॥
ଅଂତରି ମୈଲୁ ଲୋଭ ବହୁ ଝୂଠେ ବାହରି ନାଵହୁ କାହୀ ଜୀଉ ॥
ନିରମଲ ନାମୁ ଜପହୁ ସଦ ଗୁରମୁଖି ଅଂତର କୀ ଗତି ତାହୀ ଜୀଉ ॥ ୩ ॥
ପରହରି ଲୋଭୁ ନିନ୍ଦା କୂଡୁ ତିଆଗହୁ ସଚୁ ଗୁରବଚନୀ ଫଲୁ ପାହୀ ଜୀଉ ॥
ଜିଉ ଭାଵୈ ତିଉ ରାଖହୁ ହରି ଜୀଉ ଜନ ନାନକ ସବଦ ସଲାହୀ ଜୀଉ ॥ ୪ ॥ ୯ ॥

ସୋରଠି

[ ସିଂହଳ ଦ୍ୱୀପର ରାଜା ଶିବନାଭ ଗୁରୁନାନକଙ୍କର ପ୍ରତୀକ୍ଷାରେ ଥିଲେ । ସେ ମନ ମଧ୍ୟରେ ଚିନ୍ତା କଲେ ଗୁରୁ ନାନକଙ୍କର ପରିଚୟ ମୁଁ କିପରି ପାଇବି ? ସେ ମନ ମଧ୍ୟରେ ଏକ ଉପାୟ ଚିନ୍ତା କଲେ । ତାର ନଗରୀକୁ କୌଣସି ସାଧୁ ପ୍ରବେଶ କଲେ ତାକୁ ପ୍ରଲୁବ୍ଧ କରିବାକୁ ରାଜା ସୁନ୍ଦରୀ ନର୍ତ୍ତକୀମାନଙ୍କୁ ପଠାଇଥିଲେ । ତାଙ୍କର ବିଶ୍ୱାସ ଥିଲା ଗୁରୁଙ୍କୁ ଏ ନର୍ତ୍ତକୀମାନେ ପ୍ରଲୁବ୍ଧ କରିପାରିବେନି; କାରଣ ଗୁରୁଜୀଙ୍କର ଏହି ରଚନା ଏହିସବୁ ସୁନ୍ଦରୀ ନର୍ତ୍ତକୀଙ୍କ ଉଦ୍ଦେଶ୍ୟରେ ରଚିତ । ]

: ୧୧୪ :

ଗାଛହୁ ପୁତ୍ରୀ ରାଜକୁଆରି ॥ ନାମୁ ଭଣହୁ ସଚୁ ଦୋତୁ ସବାରି ॥
ପ୍ରିଉ ସେଵହୁ ପ୍ରଭ ପ୍ରେମ ଅଧାରି ॥ ଗୁର ସବଦୀ ବିଖୁ ତିଆସ ନିବାରି ॥୨॥
ମୋହନି ମୋହି ଲୀଆ ମନୁ ମୋହି ॥ ଗୁର କୈ ସବଦି ପଛାନା ତୋହି ॥
ନାନକ ଠାଢ଼େ ଚାହହି ପ୍ରଭୂ ଦୁଆରି ॥ ତେରେ ନାମି ସଂତୋଖେ କିରପା ଧାରି ॥ ୮ ॥ ୧ ॥

ବସନ୍ତ ଅସଟପଦୀଆ

: ୧୧୨ :

ସତ୍‌ଗୁରୁଙ୍କର ଅନ୍ୟ ନାମ ରତ୍ନାକର; ତାଙ୍କଠାରେ ରତ୍ନ ସବୁ ଘନୀଭୂତ ହୋଇ ରହିଥାନ୍ତି । ଗୁରୁ ହିଁ ସପ୍ତ-ସରୋବର ଯେଉଁଠି, ହେ ମନ, ସ୍ନାନ କଲେ ଚିତ୍ତ ନିର୍ମଳ ହୋଇଉଠେ । ଈଶ୍ୱରଙ୍କର କୃପା ହେଲେ ହିଁ ସେ ପ୍ରକାର ନିର୍ମଳ ଜଳରେ ସ୍ନାନ କରିବାର ଓ ପଞ୍ଚ ସହିତ ବିଚାର କରିବାର ସୁଯୋଗ ମିଳେ । ଏଥିପାଇଁ, ହେ ମନ, ପରିତ୍ୟାଗ କର କାମ, କ୍ରୋଧ, କପଟାଚାର, ଗୁଡ଼ ବିଷୟାସକ୍ତି, ଏବଂ ନିଜ ହୃଦୟରେ ସୁପ୍ରତିଷ୍ଠିତ କର ସତ୍ୟ ନାମକୁ । କେବଳ ଅହମିକା ଓ ଲୋଭର ଚଞ୍ଚଳ ତରଙ୍ଗସମୂହ ତମଠାରେ ଶାନ୍ତ ହେଲେ ଯାଇ, ତମେ ଭେଟିବ, ହେ ମନ, ସେହି ଦୀନ-ଦୟାଳୁ ପ୍ରଭୁଙ୍କୁ । ନାନକ ତେଣୁ କହେ ଯେ, ଗୁରୁ ହିଁ ଶ୍ରେଷ୍ଠ ତୀର୍ଥ, ଗୁରୁ ହିଁ ସାକ୍ଷାତ୍ ଶ୍ରୀକୃଷ୍ଣ ।

: ୧୧୩ :

ହେ ଭାଇ, ଅବଗୁଣକୁ ପରିତ୍ୟାଗ କର, ସର୍ବଦା କେବଳ ଗୁଣାର୍ଜନ ପାଇଁ ଗତି କର, କାରଣ ଅବଗୁଣର ଶେଷ ଫଳ ହିଁ ପଶ୍ଚାତ୍ତାପ, ଯେଉଁମାନେ ଗୁଣରେ ସୁ ଅବସର ଓ ଅବଗୁଣରେ କୁ-ଅବସର ସମ୍ପର୍କରେ ଜ୍ଞାନହୀନ, ସେମାନେ ବୁଡ଼ନ୍ତି ବାରମ୍ବାର ପଙ୍କରେ । ଭିତରେ ତ ଭରିରହିଛି ଯାବତୀୟ ଲୋଭ ଓ ମିଥ୍ୟାର ମଇଳା, ବାହାରେ ଦେହକୁ ବାରମ୍ବାର ଧୋଇଲେ କି ଲାଭ ? ଗୁରୁଦତ୍ତ ନିର୍ମଳ ମନ୍ତ୍ର ଜପିଚାଲିଲେ ହିଁ ଜାଣିପାରିବ ଅନ୍ତରର ଗତିବିଧି । ତ୍ୟାଗ କର ତେଣୁ ଲୋଭ ଓ ଅସତ୍ୟ, ଯଦି ପାଇବାକୁ ଇଚ୍ଛା ଗୁରୁଙ୍କଠାରୁ ସତ୍ୟର ଫଳ । ହେ ହରି, ମତେ ସେହିପରି ରଖ, ଯେପରି କେବଳ ତମର ଇଚ୍ଛା । ନାନକର କଥନ ଏହି କି ମୁଁ ତମର କେବଳ ଦାସ ମାତ୍ର, ହେ ପ୍ରଭୁ ! ନାମ-ମନ୍ତ୍ର ଦେଇ ହିଁ କେବଳ ତୁମର ଗୁଣ-ଗାନ କରିପାରେ ଯଦ୍ଭକଣ୍ଠିତ୍ତ ।

[ସିଂହଳ ଦ୍ୱୀପରେ ରାଜା ଶିବନାଥ ଗୁରୁ ନାନକଙ୍କର ସାକ୍ଷାତ୍ ପ୍ରତୀକ୍ଷାରେ ଥାଆନ୍ତି ଏବଂ ଭାବୁଥାନ୍ତି କିପରି ତାଙ୍କ ସହିତ ପରିଚିତ ହେବେ । ସେଥିପାଇଁ ସେ ଏକ ଉପାୟ ପାଞ୍ଚିଲେ । ତାଙ୍କ ନଗର ଭିତରକୁ କୌଣସି ସାଧୁ ପ୍ରବେଶ କଲାମାତ୍ରେ, ତାଙ୍କୁ ପ୍ରଲୋଭିତ କରିବା ଲକ୍ଷ୍ୟରେ ସେ ସୁନ୍ଦରୀ ନର୍ତ୍ତକୀମାନଙ୍କୁ ଯୋଗାଇ ରଖିଲେ । ତାଙ୍କର କିନ୍ତୁ ଏ ବିଶ୍ୱାସ ମଧ୍ୟ ଥିଲା ଯେ, କୌଣସି ନର୍ତ୍ତକୀ ଗୁରୁ ନାନକଙ୍କୁ ପ୍ରଲୋଭିତ କରିପାରିବେ ନାହିଁ ଏବଂ ସେ ସେହି ସମ୍ବାଦ ପାଇ ହିଁ ଜାଣିବେ ଯେ ଗୁରୁ ନାନକ ତାଙ୍କ ନଗରକୁ ଆସିଛନ୍ତି । ଯେଉଁ ରାଜପ୍ରେରିତ ସୁନ୍ଦରୀ ନର୍ତ୍ତକୀ ଗୁରୁ ନାନକଙ୍କୁ ପ୍ରଲୋଭିତ କରିବା ପାଇଁ ଯାଇଥିଲେ, ନିମ୍ନର ଗୀତଟି ତା'ର ଉଦ୍ଦେଶ୍ୟରେ ରଚିତ ହୋଇଥିଲା ।]

: ୧୧୪ :

ହେ ସୁନ୍ଦରୀ, ହେ ରାଜକୁମାରୀ, ତମେ ଚାଲିଯାଅ ଏଠୁ, ଏବଂ ନିଜକୁ ଘରେ ଯାଇ ଅଳଙ୍କୃତ କର କେବଳ ନାମ-ମନ୍ତ୍ରର ଜପ ନେଇ । ତମର ପ୍ରିୟ-ସ୍ୱାମୀର ହିଁ ସେବା କର ଏବଂ ନିଜକୁ ଆଧାର କର ପ୍ରଭୁ-ପ୍ରେମର । ଗୁରୁଦତ୍ତ ମନ୍ତ୍ର ଦ୍ୱାରା ସମଗ୍ର ବିଷୟାସକ୍ତି ପରିତ୍ୟାଗ କର । ମୋର ମନ ମୁଁ ସମଗ୍ରଭାବରେ ଈଶ୍ୱରରୂପକ ମୋହନଙ୍କୁ ଦେଇ-ଦେଇଛି, ଅନ୍ୟ କାହାରିକି ତାହା ଦେଇପାରିବିନି, ଏବଂ ଗୁରୁଦତ୍ତ ମନ୍ତ୍ର-ଜ୍ଞାନ ବଳରେ ହିଁ ହେ ସୁନ୍ଦରୀ, ମୁଁ ତମକୁ ସାଙ୍ଗେ ସାଙ୍ଗେ ଚିହ୍ନିପାରିଲି । ନାନକ କେବଳ ଈଶ୍ୱରଙ୍କ ଦ୍ୱାରା ଦେଶରେ ହିଁ ସର୍ବଦା ଛିଡ଼ାହୋଇବାକୁ ଚାହେଁ । ତେଣୁ ହେ ପ୍ରଭୁ, କୃପା କର, ଯେପରି ସେପ୍ରକାର ସ୍ୱାମୀ-ସେବାରୁ ହିଁ, ମୁଁ ପ୍ରାଣର ସକଳ ସନ୍ତୋଷ ପାଇପାରେ ।

# ଦୈନ୍ୟ

ନୀଚୁ ଅଂଦରି ନୀଚ ଜାତି ନୀଚୀ ହୂ ଅତି ନୀଚୁ ॥
ନାନକୁ ତିନ କୈ ସଙ୍ଗି ସାଥି ବଡ଼ିଆ ସିଉ କିଆ ରୀସ ॥
ଜିଥୈ ନୀଚ ସମାଲିଅନି ତିଥୈ ନଦରି ତେରୀ ବଖସୀସ ॥ ୧

ଶ୍ରୀ ରାଗୁ

୧. ଯେଉଁମାନେ ଜନ୍ମରେ ନୀଚୁଠନୀଚ, ନାନକ ସେହିମାନଙ୍କର ହିଁ ସଖା, ଉଚ୍ଚ ବର୍ଣ୍ଣ-ଜାତମାନଙ୍କ ସହିତ ନାନକର ନେଣ-ଦେଣ କ'ଣ ଅଛି ? ହେ ପ୍ରଭୁ, ଯେଉଁଠି ନୀଚ ଜନର ରକ୍ଷା ହେଉଛି, ତୁମର କୃପା ମୁଁ ସେଇଠି କେବଳ ଦେଖିପାରେ ।

: ୧୧୫ :

ହୁକମ ଛାଡ଼ୀ ବେକାରୁ କାରେ ଲଇଆ ।। ସଚ ହହୈ କେ ବାର ଧୂରହୁ ଫୁରମାଇଆ ।।
ଛାଢୀ ସଚେ ମହଲ ଖସମି ଭୁଲାଇଆ ।। ସଚୀ ସିଫତ ସାଲାହ କପଡ଼ା ପାଇଆ ।।
ସଚୁ ଅମୃତ ନାମୁ ଭୋଜନୁ ଆଇଆ ।। ଗୁରମତୀ ଖାଧା ରଜ ତିନ ସୁଖୁ ପାଇଆ ।।
ଛାଢୀ କରେ ପସାଉ ସବଦୁ ବଜାଇଆ ।। ନାନକ ସଚୁ ସାଲାହ ପୂରା ପାଇଆ ।। ୧୭ ।।

ବାର ମାଝ ପଉଡ଼ୀ ୧୭

: ୧୧୬ :

ସିଂମଲ ରୁଖୁ ସରାଇରା ଅତି ଦୀରଘ ଅତି ମୁଚୁ ।।
ଓଇ ଜି ଆବହି ଆସ କରି ଜାହି ନିରାସେ କିତୁ ।।
ଫଲ ଫିକେ ଫୁଲ ବକବକେ କମି ନ ଆବହି ପତ ।।
ମିଠତୁ ନୀବୀ ନାନକା ଗୁଣ ଚଂଗିଆଈଆ ତତୁ ।।
ସଭୁ କୋ ନିବୈ ଆପ କଉ ପରକଉ ନିବୈ ନ କୋଇ ।।
ଧରି ତାରାଜୂ ତୋଲୀଐ ନିବୈ ସୁ ଗଉରା ହୋଇ ।।
ଅପରାଧୀ ଦୂଣା ନିବୈ ଜୋ ହଂତା ମିରଗାହି ।।
ସୀସି ନିବାଇଐ କିଆ ଥୀଐ ଜା ରିଦୈ କୁସୁଧେ ଜାହି ।। ୧ ।।

ବାର ଆସା ପଉଡ଼ୀ ୧୪ ସଲୋକ ୧

: ୧୧୭ :

ନା ଜାଣା ମୂରଖୁ ହୈ କୋଈ ନା ଜାଣା ସିଆଣା ।।
ସଦା ସାହିବ କୈ ରଙ୍ଗେ ରାତା ଅନଦିନୁ ନାମୁ ବଖାଣା ।। ୧ ।।
ବାବା ମୂରଖୁ ହା ନାବୈ ବଲି ଜାଉ ।।
ତୂ କରତା ତୂ ଦାନା ବୀନା ତେରୈ ନାମି ତରାଉ ।। ୧ ।। ରହାଉ ।।
ମୂରଖୁ ସିଆଣା ଏକୁ ହୈ ଏକ ଜୋତି ଦୁଇ ନାଉ ।।
ମୂରଖା ସିରି ମୂରଖୁ ହୈ ଜି ମଂନେ ନାହୀ ନାଉ ।। ୨ ।।

ମାରୂ ଅସଟପଦୀଆ

: ୧୧୫ :

ମୁଁ ଜଣେ ସକଳ ଯୋଗ୍ୟତାହୀନ ବଢ଼ପାଟିଆ ଗାୟକ ମାତ୍ର, ଅଥଚ ପ୍ରଭୁ ମତେ ଗାନ-କର୍ମରେ ନିଯୋଜିତ କରିଛନ୍ତି । ତାଙ୍କର ଦରବାରରୁ ମୋ ନିକଟକୁ ଆଦେଶପତ୍ର ଆସିଲା, ଦିନରାତି କେତେ ଥର ମୋର ଯଶୋଗାନ କର, ଏବଂ ଏହି ଭାଟକୁ ପ୍ରଭୁ ଡକାଇ ପଠାଇଲେ ସତ୍ୟର ପ୍ରାସାଦରେ ଉପସ୍ଥିତ ହେବାକୁ । ତାଙ୍କର ଗୁଣଗାନ ପରେ ପ୍ରଭୁ ମତେ ପିନ୍ଧାଇଦେଲେ ଔପାଧିକ ବସ୍ତ୍ର ଏବଂ ଖୁଆଇଲେ ନାମର ସତ୍ୟାମୃତ । ଗୁରୂପଦେଶ ଦେଇ ମୁଁ ତାହା ଖାଇ ତୃପ୍ତ ଓ ସୁଖୀ । ଏଇ ସାମାନ୍ୟ ଭାଟ ଉପରେ ପ୍ରଭୁଙ୍କର ଏହା ମହାନୁଗ୍ରହ ଯେ, ମୁଁ ତାଙ୍କର ନାମ-ବାଦନ କରୁଁ କରୁଁ ତଲ୍ଲୀନ ହୋଇପଡ଼ିଲି । ନାନକର କଥନ ଏହି ଯେ, ଯେ କେହି ସତ୍ୟର ଗୁଣଗାନ କରିବ, ସେ ନିଶ୍ଚୟ ପୂର୍ଣ୍ଣଭାବରେ ପ୍ରଭୁଙ୍କୁ ପାଇବ ।

: ୧୧୬ :

ଶିମୁଳୀ ଗଛ ଅତି ସିଧା ଓ ଉଚ୍ଚ, ମନରେ ନାନା ଆଶା ଧରି ପକ୍ଷୀମାନେ ତା'ଠିକି ଆସନ୍ତି, କିନ୍ତୁ ସେଠି ନିରାଶ ହେଲେ, ସେମାନେ ଅନ୍ୟ କେଉଁଠିକି ଯିବେ ? ଶିମୁଳୀ ଗଛ ଫଳ ଫିକା, ଫୁଲ ଗନ୍ଧହୀନ ଓ ପତ୍ର କୌଣସି ହେଲେ ପ୍ରୟୋଜନ ପାଇଁ ଅନାବଶ୍ୟକ । କିନ୍ତୁ ଗୁଣ ଅଛି ଶାଳ୍ମଳୀର, ଯାହା ହେତୁ ସେ ଦ୍ରୁ ପକ୍ଷୀର ଆଶ୍ରୟ ହୋଇଥାଏ । ମନୁଷ୍ୟ ସମାଜରେ ପ୍ରତ୍ୟେକେ ଅନ୍ୟଠାରୁ ନମ୍ରତା ଚାହିଁଲେ ମଧ, କେହି ଅନ୍ୟପ୍ରତି ସହଜରେ ନମ୍ର ହୋଇନଥାନ୍ତି । ସମସ୍ତଙ୍କର ସ୍ମରଣ ରଖିବା ଉଚିତ ଯେ, ନିକିତିର ତଉଲ ବେଳେ, ତଳକୁ ଝୁଙ୍କି ପଡ଼ିବା ହିଁ ଓଜନର ସୂଚନା ଦେଇଥାଏ । ଅବଶ୍ୟ ସାଧାରଣ ଅପରାଧ କରିଥିବା ବ୍ୟକ୍ତି ମଧ, ପରର ମୃଗ ମାରିଲାପରି ଦୁଇଗୁଣ ମୁଣ୍ଡ ନୁଆଁଇଥାଏ, କିନ୍ତୁ ବାହାରଦେଖା ପାଇଁ ମୁଣ୍ଡ ନୁଆଁଇଲେ କି ହେବ, ଯଦି ହୃଦୟ ରହିଥାଏ ଅଶୁଦ୍ଧ ?

: ୧୧୭ :

ଏହି ମନୁଷ୍ୟ ସମାଜରେ କିଏ ସତ୍ୟରେ ମୂର୍ଖ ଓ କିଏ ବୁଦ୍ଧିମାନ୍, ମୁଁ ଜାଣେନା । ପ୍ରଭୁଙ୍କର ରଙ୍ଗରେ ରଞ୍ଜିତ ହୋଇ ମୁଁ ଅନୁଦିନ କେବଳ ତାଙ୍କର ନାମ-କୀର୍ତ୍ତନ କରି ଚାଲିଛି । ମୁଁ ଏକ ମୂର୍ଖ ବୋଲି ହିଁ ନିଜକୁ ମନେ କଲେ ହେଁ, ମୁଁ ସେହି ନାମର ହିଁ ସେବକ । ହେ ପ୍ରଭୁ, ତୁମେ କର୍ତ୍ତା, ତୁମେ ଦୂରଦର୍ଶୀ, ତୁମର ନାମଗାନ ଦେଇ ହିଁ ମୋର ତ୍ରାଣ ସମ୍ଭବ ଏବଂ ମୂର୍ଖାତିମୂର୍ଖ ନିଶ୍ଚୟ ସେହି ଲୋକ, ଯାହାର ଆସ୍ଥା ନାହିଁ ତୁମର ନାମରେ ।

# ଲୋକସେବା

ସତୁ କରଣୀ ଅଭ ଅଂତର ସେବା ।
ମନୁତୃପତାସିଆ ଅଲଖ ଅଭେବା ॥ ୧

ଗଉଡ଼ୀ ଅସଟପଦୀଆ

୧. ହେ ଭାଇ, ତମର କର୍ମ ଶୁଭ ହିଁ ହେଉ ସର୍ବଦା, ଏବଂ ବକ୍ଷରେ ପ୍ରତିଷ୍ଠିତ କର ସେବା-ଭାବକୁ, ତେବେ ହିଁ ସନ୍ତୋଷ ପାଇବ ତମେ ମନରେ, ଏବଂ ସାକ୍ଷାତ୍ ପାଇବ ପ୍ରଭୁ ଅଲେଖଙ୍କର ।

: ୧୧୮ :

ସେବ କୀତୀ ସନ୍ତୋଖୀଈ ଜିନ୍ହୀ ସଗେ ସଚୁ ଧିଆଇଆ ॥
ଓନ୍ହୀ ମନ୍ଦେ ପୈରୁ ନ ରଖିଓ କରି ସୁକ୍ରିତୁ ଧରମୁ କମାଇଆ ॥
ଓନ୍ହୀ ଦୁନିଆ ତୋଡ଼େ ବଂଧନା ଅଂନୁ ପାଣୀ ଥୋଡ଼ା ଖାଇଆ ॥
ତୂଂ ବଖସୀସୀ ଅଗଲା ନିତ ଦେବହି ଚଡ଼ହି ସବାଇଆ ॥
ବଡିଆଈ ବଡା ପାଇଆ ॥ ୭ ॥

ବାର ଆସା ପଉଡ଼ୀ ୭

: ୧୧୯ :

ସେବା ସୁରତି ରହସି ଗୁଣ ଗାବା ଗୁରମୁଖି ଗିଆନୁ ବୀଚାରା ॥
ଖୋଜୀ ଉପଜୈ ବାଦୀ ବିନସୈ ହଉ ବଲି ବଲି ଗୁର କରତାରା ॥
ହମ ନୀଚ ହୋତେ ହୀଣମତି ଝୂଠେ ତୂ ସବଦି ସବାରଣହାରା ॥
ଆତମ ଚୀନି ତହା ତୂ ତାରଣ ସଚୁ ତାରେ ତାରଣହାରା ॥ ୩ ॥

ମଲାର

: ୧୨୦ :

ଇତୁ ତନି ଲାଗୈ ବାଣୀଆ ॥ ସୁଖୁ ହୋବୈ ସେବ କମାଣୀଆ ॥
ସଭ ଦୁନିଆ ଆବଣ ଜାଣୀଆ ॥ ୩ ॥
ବିଚି ଦୁନିଆ ସେବ କମାଈଐ ॥ ତା ଦରଗହ ବୈସଣୁ ପାଈଐ ॥
କହୁ ନାନକ ବାହ ଲୁଡାଈଐ ॥ ୪ ॥ ୨୩ ॥

ସିରୀ ରାଗୁ

: ୧୨୧ :

ହଉମୈ ଗରବୁ ଗବାଇ ପାଈଐ ବୀଚାରୁ ॥
ସାହିବ ସିଉ ମନୁ ମାନିଆ ଦେ ସାଚୁ ଅଧାରୁ ॥ ୨ ॥
ଅହିନସି ନାମି ସନ୍ତୋଖୀଆ ସେବା ସଚୁ ସାଈ ॥
ତା କଉ ବିଘନୁ ନ ଲାଗଈ ଚାଲୈ ହୁକମି ରଜାଈ ॥ ୩ ॥

ଆସା ଅସଟପଦୀଆ

: ୧୨୨ :

ବ୍ରହମ, ବିସନୁ ରଖୀ ମୁନୀ ସଂକରୁ ଇନ୍ଦୁ ତପୈ ଭେଖାରୀ ॥
ମାନୈ ହୁକମୁ ସୋହୈ ଦରି ସାଚୈ ଆକୀ ମରହି ଅଫାରୀ ॥
ଜଙ୍ଗମ ଜୋଧ ଜତୀ ସଂନିଆସୀ ଗୁରି ପୂରୈ ବୀଚାରୀ ॥
ବିନୁ ସେବା ଫଲୁ କବହୁ ନ ପାବସି ସେବା କରଣୀ ସାରୀ ॥ ୨ ॥

ମାରୂ

: ୧୧୮ :

ସେହି କେବଳ ପ୍ରକୃତ ଜନସେବା କରିପାରେ ଯାହାର ମନରେ ଅଛି ସନ୍ତୋଷ, ଏବଂ ଯେ ଧ୍ୟାନ କରିଥାନ୍ତି ପ୍ରତ୍ୟହ ସତ୍ୟାତିସତ୍ୟ ଭଗବାନଙ୍କର । ଏପରି ଲୋକ ଚକ୍ଷୁରେ କେବେ କୁକର୍ମୀର କ୍ରିୟାଙ୍କୁ ସ୍ଥାନ ଦିଅନ୍ତି ନାହିଁ, ଏବଂ ସର୍ବଦା ରତଥାନ୍ତି ସୁକୃତ ଓ ଧର୍ମପାଳନରେ । ଏହିପରି ଲୋକହିଁ ସଂସାର-ବନ୍ଧନକୁ ସହଜରେ ଭାଙ୍ଗିଦେଇ ପାରିଥାନ୍ତି, ଏବଂ ଅତି ଅଳ୍ପ ହିଁ ରହିଥାଏ ତାଙ୍କର ପାନ-ଭୋଜନର ଆବଶ୍ୟକତା । ହେ ପ୍ରଭୁ, ତୁମେ ମହାଦାନୀ, ତମେ ନିତ୍ୟହିଁ ଦାନକରି ଚାଲିବ କେବଳ, ତମର ଦାନର ପରିମାଣ ଯେ ବଢ଼ିଚାଲିଛି ପ୍ରତ୍ୟହ । କେବଳ ଗୁଣଗାନଦ୍ୱାରା ହିଁ ଯେ ତୁମପରି ମହାଗୁଣୀଙ୍କର ସାକ୍ଷାତ୍ ମିଳେ, ଏଥିରେ ବିସ୍ମୟ କି ଅଛି ?

: ୧୧୯ :

ଗୁରୁଦେବଙ୍କ ଏହି ଜ୍ଞାନ ମନରେ ଦୃଢ଼ୀଭୂତ ହୋଇଯାଇଛି ଯେ, ଜନସେବାରେ ଆଗ୍ରହ ରଖି ପ୍ରଭୁଙ୍କ ଗୁଣଗାନ କରି ଚାଲିଲେ ହିଁ ମିଳିବ ଜୀବନରେ ପ୍ରକୃତ ଆନନ୍ଦ । ଜ୍ଞାନ ବଢ଼େ ଜିଜ୍ଞାସା ଯୋଗୁଁ, କିନ୍ତୁ ବିନଷ୍ଟ ହୁଏ ବିବାଦରେ, ମୋର କିନ୍ତୁ କେବଳ ଗୁରୁକୃପା କଣିକା ହିଁ ଏକମାତ୍ର ଆଶ୍ରୟ । କାରଣ ମୁଁ ଥିଲି ନୀଚ, ମତିଭ୍ରଷ୍ଟ ଓ ମିଥ୍ୟାଚାରୀ, ଗୁରୁ ହିଁ ଶବ୍ଦ-ବ୍ରହ୍ମ ଦେଇ ମତେ ସଜାଡ଼ି ଦେଇଛନ୍ତି, ଆତ୍ମ-ପରିଚୟର ସେହି ହିଁ କର୍ଣ୍ଣଧାର, ସେହି ହିଁ ସତ୍ୟ ଦାତା, ଯେ ଭବ-ସମୁଦ୍ରକୁ ପାରକରାଇ ଦେଇଥାନ୍ତି ।

: ୧୨୦ :

ଏହି ଶରୀର ପାପ-ବାଣ-ବିଦ୍ଧ, କେବଳ ସେବାଦ୍ୱାରା ହିଁ ପାପ-ବାଣର କ୍ଷତ ଶୁଖି ଅଧିକନ୍ତୁ ସୁଖ ମିଳିବ । ନିଖିଳ ସଂସାର ପ୍ରତି ମୁହୂର୍ତ୍ତରେ କେବଳ ଯାଉଛି ଓ ଆସୁଛି, ତମେ ଏହି ଦ୍ରୁତ ଚଳନଶୀଳ ଦୁନିଆରେ ସେବା କରି ପାରିଲେହିଁ ପାଇବ ସ୍ଥାନ, ପ୍ରଭୁ ଚରଣରେ । ନାନକ କହେ ଯେ, ସେବାର ଧନ୍ୟତାରେ ହିଁ ତମେ ହାତ ହଲାଇ, ନିଶ୍ଚିନ୍ତରେ, ପ୍ରଭୁଙ୍କ ପାଖେ ଯାଇ ପହଞ୍ଚିଯିବ ।

: ୧୨୧ :

ଗର୍ବ ଓ ଅହଙ୍କାରର ବିନାଶ ହେଲେହିଁ ଚିତ୍ତରେ ବିବେକ-ବିଚାର ବିକଶିତ ହୁଏ ଏବଂ ମନକୁ ଯଦି ସତ୍ୟର ଆଧାର ମିଳିଯାଏ, ତେବେ ସେ ମନ ପ୍ରଭୁଙ୍କୁ ହିଁ ମାନିନିଏ । ସେତେବେଳେ ଯାଇ ପ୍ରକୃତ ସେବା ହେଲା ବୋଲି ବୁଝାଯିବ, ଯେତେବେଳେ ମନ ଅହର୍ନିଶ ପ୍ରଭୁଙ୍କ ନାମ ନେଇ ସନ୍ତୋଷ ଲାଭ କରେ । ଯେ ପ୍ରଭୁଙ୍କ ନିର୍ଦ୍ଦେଶ ମାନି ଚଳେ, ତା'ର ସାଧନମାର୍ଗରେ କୌଣସି ବାଧା-ବିଘ୍ନ ଘଟେନାହିଁ ।

: ୧୨୨ :

ବ୍ରହ୍ମା, ବିଷ୍ଣୁ, ଋଷି, ମୁନି, ଶଙ୍କର ଆଦି ତପସ୍ୟା କରି କରି ମଧ୍ୟ ଭିକାରି ସମାନ ହୋଇଯାନ୍ତି, ପ୍ରଭୁ-ଚରଣ-ପ୍ରାନ୍ତରେ ସେହି ହିଁ କେବଳ ଅଳଙ୍କୃତ ହୋଇଥାନ୍ତି, ଯେ ପ୍ରଭୁଙ୍କ ଆଜ୍ଞା ମାନି ଚଳିଥାନ୍ତି । ଏବଂ ଅହଙ୍କାରୀ ଅବଜ୍ଞାକାରୀ ବାଟବଣା ହୋଇ ବୁଲୁଥାନ୍ତି । ଜଙ୍ଗମ, ଯୋଦ୍ଧା, ଯତି, ସନ୍ନ୍ୟାସୀ ସମସ୍ତଙ୍କ ପାଇଁ ଗୁରୂପଦେଶ ସଂପୂର୍ଣ୍ଣ ଆବଶ୍ୟକ । ପୁଣି ବିନା ସେବାରେ ମଧ୍ୟ ଫଳ ମିଳେ ନାହିଁ । ସେବା ହିଁ ତେଣୁ ଶ୍ରେଷ୍ଠ ସାଧନା ।

## ପରମାତ୍ମାଙ୍କ ସହ ପ୍ରେମ

: ୧୨୩ :

ଜଉ ତଉ ପ୍ରେମ ଖେଲଣ କା ଚାଉ ॥ ସିରୁ ଧର ତଲୀ ଗଲୀ ମେରୀ ଆଉ ॥
ଇତୁ ମାରଗି ପୈରୁ ଧରୀଜୈ ॥ ସିରୁ ଦୀଜୈ କାଣି ନ କୀଜୈ ॥ ୨୦ ॥

ସଲୋକ ବାରାଂ ତେ ବଧୀକ

: ୧୨୪ :

ରେ ମନ ଐସୀ ହରି ସିଉ ପ୍ରୀତି କରି ଜୈସୀ ଜଲ କମଲେହି ॥
ଲହରୀ ନାଲି ପଛାଡ଼ୀଐ ଭୀ ବିଗସୈ ଅସନେହି ॥
ଜଲ ମହି ଜୀଅ ଉପାଇ କୈ ବିନୁ ଜଲ ମରଣୁ ତିନେହି ॥ ୧ ॥
ମନ ରେ କିଉ ଛୁଟହି ବିନୁ ପିଆର ॥
ଗୁରମୁଖି ଅନ୍ତରି ରବି ରହିଆ ବଖସେ ଭଗତି ଭଣ୍ଡାର ॥ ୧ ॥ ରହାଉ ॥
ରେ ମନ ଐସୀ ହରି ସିଉ ପ୍ରୀତି କରି ଜୈସୀ ମଛୁଲୀ ନୀର ॥
ଜିଉ ଅଧିକଉ ତିଉ ସୁଖୁ ଘଣୋ ମନି ତନି ସାନ୍ତି ସରୀର ॥
ବିନୁ ଜଲ ଘଡ଼ୀ ନ ଜୀବଈ ପ୍ରଭୁ ଜାଣୈ ଅଭ ପୀର ॥ ୨ ॥
ରେ ମନ ଐସୀ ହରି ସିଉ ପ୍ରୀତି କରି ଜୈସୀ ଚାତ୍ରିକ ମେହ ॥
ସର ଭରି ଥଲ ହରୀଆବଲେ ଇକ ବୂନ୍ଦ ନ ପବଈ କେହ ॥
କରମି ମିଲୈ ସୋ ପାଈଐ କିରତୁ ପଇଆ ସିରି ଦେହ ॥ ୩ ॥
ରେ ମନ ଐସୀ ହରି ସିଉ ପ୍ରୀତି କରି ଜେସୀ ଜଲ ଦୁଧ ହୋଇ ॥
ଆବଟଣୁ ଆପେ ଖବୈ ଦୁଧ କଉ ଖପଣି ନ ଦେଇ ॥
ଆପେ ମେଲି ବିଛୁନିଆ ସଚି ବଡ଼ିଆଈ ଦେଇ ॥ ୪ ॥
ରେ ମନ ଐସୀ ହରି ସିଉ ପ୍ରୀତି କରି ଜୈସୀ ଚକବୀ ସୂର ॥
ଖିନୁ ପଲୁ ନୀଦ ନ ସୋବଈ ଜାଣୈ ଦୂରି ହଜୂରି ॥
ମନମୁଖୀ ସୋଝୀ ନା ପବୈ ଗୁରମୁଖି ସଦା ହଜୂରି ॥ ୫ ॥

ସିରୀ ରାଗୁ ଅସଟପଦୀଆ

: ୧୨୫ :

ନାନକ ଗାଲୀ କୂଡ଼ୀଆ ବାଝୁ ପରୀତି କରେଇ ॥
ତିଚରୁ ଜାଣୈ ଭଲା କରି ଜିଚରୁ ଲେବୈ ଦେଇ ॥ ୨ ॥

ବାର ବଡ଼ହଂସ ପଉଡ଼ୀ ୨୦ ସଲୋକ

: ୧୨୩ :

ଯଦି ତୁମଠାରେ ପ୍ରେମ-କ୍ରୀଡ଼ା ପାଇଁ ସତ୍ୟରେ ଆଗ୍ରହ ଅଛି, ତେବେ ଆସ ମୋ ପାଖକୁ ଏବଂ ପ୍ରସ୍ତୁତ ତମ ମଥା ହାଣକାଠରେ; କାରଣ ଏ ମାର୍ଗରେ ଚାଲିବାକୁ ଯେଉଁମାନେ ଇଚ୍ଛୁକ ସେମାନେ ମୁଣ୍ଡକୁ ପାଣି ଛଡ଼େଇବା ପାଇଁ ଆଦୌ ଦ୍ୱିଧା ନ କରିବାରହିଁ ଆଶା କରାଯାଏ ।

: ୧୨୪ :

ରେ ମନ, ସେହିପରି ପ୍ରେମ କର କେବଳ ହରିଙ୍କ ସାଥିରେ ଯେପରି ପ୍ରେମ ଜଳ ଓ କମଳର । ଜଳ କମଳକୁ ସର୍ବଦା ଲହରିର ଧକ୍କା ଦେଲେହେଁ କମଳର ସ୍ନେହଭାବ ଅଧିକରୁ ଅଧିକ ବିକଶିତ ହୋଇ ରହେ । କମଳର ଜନ୍ମ ହିଁ ହେଲା ଜଳରେ, ଜଳ ବିନା କମଳର ମୃତ୍ୟୁ ନିଶ୍ଚିତ । ସେହିପରି ରେ ମନ, ପ୍ରଭୁ-ପ୍ରେମ ବ୍ୟତୀତ ତମେ କିପରି ବଞ୍ଚିପାରିବ, ନିଶ୍ଚିନ୍ତ ହୋଇ ? ଗୁରୁଙ୍କ କୃପାରୁ ତୁମର ଅନ୍ତର ଯେତେବେଳେ ହୋଇଉଠିବ ପ୍ରଭୁମୟ, ସେତେବେଳେ ଭକ୍ତିର ସମଗ୍ର ଭଣ୍ଡାରକୁ ତାଙ୍କ ପାଦତଳେ ଦାନ କରିଦିଅ । ରେ ମନ, ଜଳ-କମଳ ପରି ଜଳ-ମତ୍ସ୍ୟ ନ୍ୟାୟରେ ମଧ୍ୟ ହରି ସହ ପ୍ରେମ କର । ଜଳ ଯେତେ ଅଧିକ, ମତ୍ସ୍ୟର ମନରେ ସେତିକି ସୁଖ ଓ ଶରୀରରେ ସେତିକି ଶାନ୍ତି । ଜଳ ବିନା ମତ୍ସ୍ୟ ଏକ ଘଡ଼ି ମଧ୍ୟ ବଞ୍ଚିପାରେ ନାହିଁ । ତାର ଓ ସକଳର ଅନ୍ତରର ପୀଡ଼ା ପ୍ରଭୁ ଜାଣନ୍ତି । ରେ ମନ, ଜଳ-କମଳ ଓ ଜଳ-ମତ୍ସ୍ୟର ପ୍ରେମ ପରି ମେଘ-ଚାତକ ରୀତିରେ ମଧ୍ୟ ପ୍ରେମ କର ହରିଙ୍କ ସାଥିରେ । ଜଳରେ ସରୋବର ସବୁ ପୂର୍ଣ୍ଣ ଓ ଜଳପ୍ରାଚୁର୍ଯ୍ୟ ଯୋଗୁ ମରୁଦେଶ ଶସ୍ୟ-ଶ୍ୟାମଳ ହୋଇ ଉଠିଲେ ମଧ୍ୟ, ଚାତକକୁ ବୁନ୍ଦାଏ ଜଳ ମିଳେନା କିପରି ? ଚାତକ ଈଶ୍ୱର-କୃପା ଉପରେ ନିର୍ଭର କରି ହିଁ ତା' ପାଏ । ପ୍ରତ୍ୟେକ ଲୋକ ତାର କପାଳ-ଲିଖନ ଅନୁଯାୟୀ ଫଳ ପ୍ରାପ୍ତ ହୋଇଥାଏ । ରେ ମନ, ଜଳ-କମଳ, ଜଳ-ମତ୍ସ୍ୟ ଓ ମେଘ-ଚାତକ ସର୍ବୋପରି ଜଳ-ଦୁଗ୍ଧ ତୁଲ୍ୟ ମଧ୍ୟ ପ୍ରେମ କର ହରିଙ୍କ ସହିତ । ଦୁଗ୍ଧ ଆହୁଟା ହେଲେ ପାଣି ନିଜକୁ ନଷ୍ଟ କରେ ଦୁଧକୁ ରକ୍ଷାକରି । ଈଶ୍ୱର-ବିଯୁକ୍ତ ଲୋକଙ୍କୁ ପ୍ରଭୁ ନିଜେ ଶିଖାଇଥାନ୍ତି ସତ୍ୟର ମହିମା । ରେ ମନ, ଜଳ-କମଳ, ଜଳ-ମତ୍ସ୍ୟ, ମେଘ-ଚାତକ ଓ ଜଳ-ଦୁଗ୍ଧ ପରି ପ୍ରେମ କର ମଧ୍ୟ ହରିଙ୍କ ସାଥିରେ । ସୂର୍ଯ୍ୟ ଓ ଚକ୍ରବାକ ପରି ଚକ୍ରବାକ ତାର ପ୍ରିୟ ଅତି ନିକଟରେ ହିଁ ତା'ଠୁ ବିଚ୍ଛିନ୍ନ ଥିଲେହେଁ ସେ ବହୁଦୂର ଚାଲିଯାଉଛି ମନେକରି ବିରହ-ଅନଳଦ୍ୱାରେ କାଳ କାଟେ । ମନସୁଖ ବ୍ୟକ୍ତି ଜାଣିପାରେ ନାହିଁ ଯେ, ଗୁରୁମୁଖି ବ୍ୟକ୍ତି ହିଁ ହରିଙ୍କି ନିତ୍ୟ ତା' ନିକଟରେ ଥିବାର ଅନୁଭବ କରେ ।

: ୧୨୫ :

ନାନକର ଘୋଷଣା ଏହି ଯେ, ପ୍ରେମ ବିନା ସକଳ ଉପଦେଶ ବାକ୍ୟ କେବଳ ଅସତ୍ୟ, ଯେ ପର୍ଯ୍ୟନ୍ତ ମୁଁ ପ୍ରଭୁଙ୍କ ପ୍ରେମର ସହିତ ଉତ୍ତମରୂପେ ଜାଣିପାରିଛି ସେ ପର୍ଯ୍ୟନ୍ତ ମୁଁ ତାଙ୍କଠାରୁ ବରାବର ସହାୟତା ପାଉଥିବ ବୋଲି ମୋର ଦୃଢ଼ ବିଶ୍ୱାସ ।

: ୧୬ :

ସୁହା ରଙ୍ଗୁ ସୁପନୈ ନିସୀ ବନୁ ଗାରେ ଗଲ୍ ହାରୁ ॥
ସଚୁ ରଙ୍ଗୁ ମଜୀଠ କା ଗୁରମୁଖି ବ୍ରହମ ବୀଚାରୁ ॥
ନାନକ ପ୍ରେମ ମହା ରସୀ ସଭି ବୁରିଆଇଆ ଛାରୁ ॥ ୨ ॥

ବାର ସୂହୀ ପଉଡ଼ୀ ୪ ସଲୋକ

: ୧୭ :

ମୋରି ରୁଣ୍ଝୁଣ ଲାଇଆ ଭୈଣେ ସାବଣୁ ଆଇଆ ॥
ତେରେ ମୁଂଧ କଟାରେ ଜେବଡ଼ା ତେନି ଲୋଭି ଲୋଭ ଲୋଭାଇଆ ॥
ତେରେ ଦରସନ ବିଟହୁ ଖନୀଐ ବଞା ତେରେ ନାମ ବିଟହୁ କୁରବାଣୋ ॥
ଜା ତୂ ତା ମୈ ମାଣୁ କୀଆ ହୈ ତୁଧୁ ବିନୁ କେହା ମେରା ମାଣୋ ॥
ଚୂଡ଼ା ଭଂନୁ ପଲଂଘ ସିଉ ମୁଂଧେ ସଣୁ ବାହୀ ସଣୁ ବାହା ॥
ଏତେ ବେସ କରେଦୀଏ ମୁଂଧେ ସହୁ ରାତୋ ଅବରାହା ॥
ନା ମନୀଆରୁ ନ ଚୂଡ଼ୀଆ ନା ସେ ବଂଗୁଡ଼ୀଆହା ॥
ଜୋ ସହ କଣ୍ଠି ନ ଲଗୀଆ ଜଲନୁ ସି ବାହଡ଼ୀଆହା ॥
ସଭି ସହୀଆ ସହୁ ରାବଣି ଗଈଆ ହଉ ଦାଧୀ କୈ ଦରି ଜାବା ॥
ଅଂମାଲୀ ହଉ ଖରୀ ସୁଚଜୀ ତୈ ସହ ଏକି ନ ଭାବା ॥
ମାଠି ଗୁନ୍ଦାଈ ପଟୀଆ ଭରୀଐ ମାଗ ସଂଧୂରେ ॥
ଅଗୈ ଗଈ ନ ମଂନୀଆ ମରଉ ବିସୂରି ବିସୂରେ ॥
ମୈ ରୋବଂଦୀ ସଭୁ ଜଗୁ ରୁନା ରୁଂନଡ଼େ ବଣହୁ ପଂଖେରୂ ॥
ଇକୁ ନ ରୁନା ମେରେ ତନ କା ବିରହା ଜିନି ହଉ ପିରହୁ ବିଛୋଡ଼ୀ ॥
ସୁପନୈ ଆଇଆ ଭୀ ଗଇଆ ମୈ ଜଲୁ ଭରିଆ ରୋଇ ॥
ଆଇ ନ ସକା ତୁଝ କନି ପିଆରେ ଭେଜି ନ ସକା କୋଇ ॥
ଆଉ ସଭାଗୀ ନୀଦଡ଼ୀଏ ମତୁ ସହୁ ଦେଖା ସୋଇ ॥
ତୈ ସାହିବ କୀ ବାତ ଜି ଆଖୈ କହୁ ନାନକ କିଆ ଦୀଜୈ ॥
ସୀସୁ ବଢେ କରି ବୈସଣୁ ଦୀଜୈ ବିଣୁ ସିର ସେବ କରୀଜୈ ॥
କିଉ ନ ମରୀଜୈ ଜୀଅଡ଼ା ନ ଦୀଜୈ ଜା ସହୁ ଭଇଆ ବିଡାଣା ॥ ୩ ॥

ବଡ଼ହଂସ

: ୧୮ :

ଜାଂ ହଉ ତେରା ତା ସଭୁ କିଛୁ ମେରା ହଉ ନାହୀ ତୂ ହୋବହି ॥
ଆପେ ସକତା ଆପେ ସୁରତା ସକତୀ ଜଗତୁ ପରୋବହି ॥

: ୧୬ :

ନାନକ ଘୋଷଣା କରେ ଯେ, ପ୍ରକୃତ ଲାଲରଙ୍ଗ ତା'ର ବିନା କଣ୍ଠହାରର କଳ୍ପନା ପରି ଓ ରାତିର ସ୍ୱପ୍ନ ପରି । ପ୍ରକୃତ ଲାଲରଙ୍ଗ କେବଳ ମଞ୍ଜିଷ୍ଠାରେ ଥାଏ ଏବଂ ସେହିପରି ମିଳିଥାଏ ବ୍ରହ୍ମ-ବିଗ୍ରହ, କେବଳ ସଦ୍‌ଗୁରୁଙ୍କଠାରେ । ସେହିପରି ପ୍ରେମ ହିଁ ଏକମାତ୍ର ମହାରସ ଏ ସୃଷ୍ଟିରେ, ଯାହା ସକଳ ଦୁର୍ଗୁଣ ଓ ଦୁଷ୍କର୍ମକୁ ବିନଷ୍ଟ କରିପକାଏ ।

: ୧୭ :

ହେ ଭଗିନି, ଶ୍ରାବଣ ଆସିଗଲା, ମୁଦିତମନା ମୟୂରକୁଳ କେକା ରବ କଲେଣି, ତୁମେ ଶୁଣିପାରୁନା କି ? ପ୍ରିୟ ମତେ ତାଙ୍କ ଗୃହିଣୀରେ ମୁଗ୍‌ଧ କରି ବାନ୍ଧିରଖିଛନ୍ତି, ଯେପରିକି ଏକ ଦଉଡ଼ିରେ ଏବଂ ତାଙ୍କର ସେହି କଟାକ୍ଷ କଟାରି ହୋଇ ଯେପରି ମୋର ହୃଦୟକୁ କାଟିଚାଲିଛି । ମୁଁ କିନ୍ତୁ ତାଙ୍କ ନାମୋଦ୍ଦେଶ୍ୟରେ ଉତ୍ସର୍ଗୀକୃତ, ତାଙ୍କର ଦର୍ଶନ ପାଇଁ ହିଁ ଏକମାତ୍ର ଉତ୍ସାହ ମୋ ମନରେ । ତାଙ୍କ ପ୍ରେମ-କଟାରିରେ ମୁଁ ଖଣ୍ଡ ଖଣ୍ଡ ହୋଇଯିବା ପାଇଁ ପ୍ରସ୍ତୁତ, କାରଣ ତାଙ୍କ ପ୍ରେମ ବିନା ମୋର ଆଉ ଗର୍ବ କରିବାର କି ଅଛି ? ହେ ମୁଗ୍‌ଧେ, ପୁଷ୍ପ-ଚୂଡ଼ାକୁ ଫିଙ୍ଗିଦେ, ଭାଙ୍ଗିଦେ ସଜ୍ଜିତ ପଲଙ୍କ, କାରଣ ମୁଗ୍‌ଧା ମୁଁ, ମୋର ପ୍ରିୟ ଅନ୍ୟଠାରେ ଅନୁରକ୍ତ ନ ହେଉନ୍ତୁ ଭାବି ନିଜକୁ କେତେ ଭାବରେ ଅଳଙ୍କୃତ ନ କରିଥିଲି । କିନ୍ତୁ, ମୋର ମଣିହାର, ନୂପୁର ଚୂଡ଼ି ଓ ସ୍ୱର୍ଣ୍ଣର ବାଙ୍କିଆ—ଏ ସମସ୍ତହିଁ ବ୍ୟର୍ଥ ହେଲା ଯେ । ପ୍ରିୟ କଣ୍ଠରେ ଯେଉଁ ବାହୁଯୁଗଳ ଆଲିଙ୍ଗନବଦ୍ଧ ନ ହୋଇପାରିଲା, ତାହା ଆଉ କି ଲାଭ ? ସେହି ପ୍ରିୟଙ୍କର ଚୁମ୍ବନାସ୍ୱାଦନ ପାଇଁ ମୋର ସଖିମାନେ ଚାଲିଗଲେ, ମୁଁ ପୋଡ଼ାମୁହିଁ କିନ୍ତୁ ଯାଏ ଏବେ କେଉଁ ଗାଡ଼କୁ ? ସଖିରେ, ମୋର ଏକ ଅହମିକା ଥିଲା ଯେ, ମୁଁ ବଡ଼ ଚତୁରୀ, କିନ୍ତୁ ପତିଙ୍କ ପସନ୍ଦ ଆଣିବାରେ ମୋର ଚାତୁର୍ଯ୍ୟ କି କାମ ଦେଲା ? କେଶବିନ୍ୟାସ କଲି ଯତ୍ନରେ, ମାଙ୍ଗରେ ସିନ୍ଦୂର ଦେଲି, ତଥାପି ମୁଁ ତାଙ୍କର ସାମାନ୍ୟ ମାନ୍ୟତା ନ ପାଇ, ଏଠି ଝୁରି-ଝୁରି ମରୁଛି । ମୁଁ କାନ୍ଦୁଛି, ସାରା ଜଗତ କାନ୍ଦୁଛି, କାନ୍ଦୁଛନ୍ତି ବନପକ୍ଷୀଗଣ ମୋ ପ୍ରତି ସହାନୁଭୂତିରେ । କିନ୍ତୁ ମୋ-ବିରହ ଦୁଃଖରେ ଶାନ୍ତି କାହିଁ ?

ମୁଁ ଯେ ପ୍ରିୟ-ବିଚ୍ଛିନ୍ନା ଏକ ଦୁର୍ଭାଗା ନାରୀ । ପ୍ରିୟସଙ୍ଗସୁଖ, କେବଳ ସ୍ୱପ୍ନରେ ଆସିଲା ଓ ଚାଲିଗଲା, ଆଖି ଭରିଉଠିଲା ଅଶ୍ରୁରେ, ବିରହ-ବିଧୁରା ମୁଁ ବିଳାପ କରି ମରୁଛି । ହେ ସୋହାଗିନୀ ନିଦ୍ରା, ତୁ ଆଉ ଥରେ ହେଲେ ମୋ ପ୍ରିୟଙ୍କୁ ସ୍ୱପ୍ନରେ ଦେଖା, କିନ୍ତୁ ଯେ ମୋର ପ୍ରିୟ-ପ୍ରଭୁଙ୍କର ସମ୍ବାଦ ମତେ ଦେବ, ନାନକ, ତୁ ତାକୁ କି ବଧାଇ ଦେବୁ ? ସେହି ପରମୋପକାରୀର ଆସନ ପାଇଁ ତୋର ମୁଣ୍ଡଟା ତୁ କାଟିଦେବୁ ନାହିଁ କି ? ଏବଂ ନ କରିବୁ କି ତା'ର ସେବା, ତୋର ଶିରହୀନ ଶରୀର ଦେଇ ତୁ ଯେବେ ହେଲେ ମରନ୍ତୁନ କି ନାନକ ? ପ୍ରିୟ ପତି ଯେତେବେଳେ ପରହୋଇଗଲେ, ତେବେ ପ୍ରାଣର ଲୋଭ କାହିଁକି ?

: ୧୮ :

ମୁଁ ଯେପର୍ଯ୍ୟନ୍ତ ତୁମର, ହେ ପ୍ରଭୁ, ସେପର୍ଯ୍ୟନ୍ତ ମୋର ସବୁ ଅଛି, କାରଣ ଯେତେବେଳେ 'ମୁଁ' ନଥାଇ କେବଳ 'ତୁ' ଥାଉ । ତୁମେଇ ପ୍ରଭୁ, ସର୍ବଶକ୍ତିମୟ ଓ ସର୍ବଜ୍ଞ । ଏହି ନିଖିଳ ସଂସାର ତୁମର ଶକ୍ତିରୂପକ ସୂତ୍ରରେହିଁ ଗୁନ୍ଥା ।

ଆପେ ଭେକେ ଆପେ ସଦେ ରଚନା ରଚି ରଚ ବେଖୈ ॥
ନାନକ ସଚୁ ସଚୀ ନାଇ ନଚୁ ପବେ ଧୁର ଲେଖେ ॥ ୨ ॥

ବାର ସାରଙ୍ଗ ପଉଡ଼ୀ ୧୩ ସଲୋକ

: ୧୨୯ :

ବୈଦୁ ବୁଲାଇଆ ବୈଦଗୀ ପକଡ଼ି ଢଣ୍ଡୋଲେ ବାଂହ ॥
ଭୋଲା ବୈଦୁ ନ ଜାଣଈ କରକ କଲେଜେ ମାହ ॥ ୧ ॥

ବାର ମଲାର ପଉଡ଼ୀ ୧୭ ସଲୋକ

ଆଦେଶ ଏବଂ ସମ୍ମତି

: ୧୩୦ :

ସୋଚେ ସୋଚ ନ ହୋବଈ ଜେ ସୋଚୀ ଲଖ ବାର ॥
ଚୁପେ ଚୁପି ନ ହୋଇବ ହୋବଈ ଜେ ଲାଇ ରହା ଲିବତାର ॥
ଭୁଖିଆ ଭୁଖ ନ ଉତରୀ ଜେ ବନା ପୁରୀଆ ଭାର ॥
ସହସ ସିଆଣପା ଲଖ ହୋହି ତ ଇକ ନ ଚଲୈ ନାଲି ॥
କିବ ସଚିଆରା ହୋଇଐ କିବ କୂଡ଼େ ତୁଟୈ ପାଲି ॥
ହୁକମି ରଜାଈ ଚଲଣା ନାନକ ଲିଖିଆ ନାଲି ॥ ୧ ॥
ହୁକମି ହୋବନି ଆକାର ହୁକମୁ ନ କହିଆ ଜାଈ ॥
ହୁକମୀ ହୋବନି ଜୀଅ ହୁକମି ମିଲୈ ବଡ଼ିଆଈ ॥
ହୁକମୀ ଉତମୁ ନୀଚୁ ହୁକମି ଲିଖି ଦୁଖ ସୁଖ ପାଈଅହି ॥
ଇକନା ହୁକମୀ ବଖସୀସ ଇକି ହୁକମୀ ସଦା ଭବାଈଅହି ॥
ହୁକମୈ ଅନ୍ଦରି ସଭୁ କୋ ବାହରି ହୁକମ ନ କୋଇ ॥
ନାନକ ହୁକମୈ ଜେ ବୁଝୈ ତ ହଉମୈ କହୈ ନ କୋଇ ॥ ୨ ॥

ଜପୁ ପଉଡ଼ୀ ୧ ଓ ୨

: ୧୩୧ :

ହୁକମେ ଆଇଆ ହୁକମି ସମାଇଆ ॥ ହୁକମେ ଦୀସୈ ଜଗତୁ ଉପାଇଆ ॥
ହୁକମେ ସୁରଗୁ ମଛୁ ପଇଆଲା ହୁକମେ କଲା ରହାଇଦା ॥ ୧୦ ॥
ହୁକମେ ଧରତୀ ଧଉଲ ସିର ଭାରଂ ॥ ହୁକମେ ପଉଣ ପାଣୀ ଗୈଣାରଂ ॥
ହୁକମେ ସିବ ସକତୀ ଘରି ବାସା ହୁକମେ ଖେଲ ଖେଲାଇଦା ॥ ୧୧ ॥

ତୁମେହି ପ୍ରଭୁ ଆମମାନଙ୍କୁ ଏଠିକି ପଠାଉଛ ଏବଂ ନିଜେହି ଏଠୁ ଡାକିନେଇ ଯାଉଛ, ସୃଷ୍ଟି କରୁଛ ଏବଂ ସୃଷ୍ଟିକୁ ରକ୍ଷଣାବେକ୍ଷଣ କରୁଛ । ନାନକର କଥନ ଏହି ଯେ, ହେ ପ୍ରଭୁ, ତୁମେ ଓ ତୁମର ନାମ ହିଁ ଏ ସୃଷ୍ଟିରେ ଏକମାତ୍ର ସତ୍ୟ, ଜଗତର ବର୍ଣ୍ଣନାରେ ଏକମାତ୍ର ମୂଲ୍ୟବାନ୍ ବସ୍ତୁ କେବଳ ସେହି ସତ୍ୟ ।

: ୧୨୯ :

ବ୍ୟାଧିର ନିଦାନ ଜାଣିବା ପାଇଁ ବୈଦ୍ୟକୁ ଡକାଗଲା, ଏବଂ ବୈଦ୍ୟ ଅଣ୍ଟାଳି ଅଣ୍ଟାଳି ହାତର ନାଡ଼ି ଚିପିଲା; କିନ୍ତୁ ବୈଦ୍ୟଟିକେ ଭୋଳା । ତାକୁ ଏତିକି ମାଲୁମ୍ ନାହିଁ ଯେ, ରୋଗପୀଡ଼ା ତ ମୋର ବାହାରେ ନାହିଁ, ଅଛି ଭିତରେ ।

: ୧୩୦ :

ଲକ୍ଷ ଥର ଚିନ୍ତା କରି ବସିଲେହେଁ, ଭାବନାର ଶେଷ ନାହିଁ, ଚୁପ୍ ରହିବାକୁ ଇଚ୍ଛା କଲେ ମଧ୍ୟ ଚୁପ୍ ରହିପାରୁନି; କାରଣ ଅନ୍ତରରେ ମୋର ଅଗ୍ନିଶିଖା ଜଳୁଛି, ଅନ୍ତରର ସତ୍ୟର କ୍ଷୁଧା ମେଣ୍ଟିବାକୁ ନାହିଁ । ଲକ୍ଷ ସହସ୍ର ଚତୁରତା ମନରେ ଉଠୁଛି, କିନ୍ତୁ ସେଥିରୁ ଗୋଟିଏ ହେଲେ ସତ୍ୟର କ୍ଷୁଧା ମେଣ୍ଟାଇବାରେ ସମର୍ଥ ନୁହେଁ । କିପରି ସତେ ମୁଁ ସତ୍ୟରୂପ ହେବି ? କିପରି ଡେଇଁପାରିବି ଅସତ୍ୟର ପ୍ରାଚୀର ? ପ୍ରଭୁଙ୍କ ଇଚ୍ଛା ଓ ହୁକୁମ ହିଁ ମୋର ଭାଲପଟରେ ବିଧି-ଲିପିରୂପେ ଲିଖିତ ରହିଛି । ଏହାହିଁ ନାନକର କଥନ ଯେ, ପ୍ରଭୁଙ୍କ ହୁକୁମ୍ ଅନୁସାରେ ହିଁ ଆମର ଏ ଜନ୍ମ ଓ ଦେହ, ପ୍ରଭୁଙ୍କ ହୁକୁମ୍‌ର ମହିମା କିଏ ବର୍ଣ୍ଣିପାରିବ ? ସେହି ହୁକୁମ୍‌ରେ ତ ଜୀବ ଯାଉଛି ଓ ଆସୁଛି ଏବଂ ଗୌରବ ଲାଭ କରିବାକୁ ଆମେ ଆଶା କରିପାରୁ କେବଳ ସେହି ହୁକୁମ୍ ବଳରେ । ଲୋକ ଉତ୍ତମ ବା ଅଧମ ମଧ୍ୟ ହୁଏ ସେହି ହୁକୁମ୍ ଯୋଗୁଁ, ସେହି ହୁକୁମ୍ ହିଁ ଦିଏ ସୁଖ ବା ଦୁଃଖ, ସେହି ହୁକୁମ୍‌ର ସାଧକ ହିଁ ପାଏ ଭବବନ୍ଧନରୁ ମୁକ୍ତି ବା ଜନ୍ମ-ମୃତ୍ୟୁ ଦେଇ ଯନ୍ତ୍ରଣାମୟ ଆବର୍ତ୍ତନ । ପ୍ରଭୁଙ୍କ ହୁକୁମ୍ ଉପରେହିଁ ନିର୍ଭର କରେ ନିଖିଳ ସୃଷ୍ଟିର ସ୍ଥିତି । ଏ ସୃଷ୍ଟିରେ କେହି ହିଁ ସେ ହୁକୁମ୍‌ର ବାହାରେ ରହିବା ଅସମ୍ଭବ । ନାନକର କଥନ ଏହି ଯେ, ସେହି ପ୍ରଭୁଙ୍କ ହୁକୁମ୍‌ରେ ଯାହାଠାରେ ଉଦିତ ହୁଏ ଅନ୍ତର୍ଜ୍ଞାନ, ସେ ସର୍ବାଦୌ ହୋଇଉଠେ ସମ୍ପୂର୍ଣ୍ଣ ନିରହଙ୍କାର ।

: ୧୩୧ :

ପ୍ରଭୁଙ୍କ ହୁକୁମ୍‌ରେ ହିଁ ଆମେ ସମସ୍ତେ ଏଠାରେ ସମାବିଷ୍ଟ, ଏହି ନିଖିଳ ଦୃଶ୍ୟମାନ ଜଗତର ଅସ୍ତିତ୍ୱ କେବଳ ସେହି ହୁକୁମ୍‌ରୁ ସମ୍ଭବ ହୋଇଛି । ପ୍ରଭୁ ଆଜ୍ଞାରେ ସ୍ୱର୍ଗ, ନର୍କ, ପାତାଳର ଜନ୍ମ ସ୍ଥିତି । ସେହି ଆଜ୍ଞାରେ ହିଁ ବାସୁକୀ ଟେକି ଧରିଛି ତା' ଫଣାରେ ଏହି ବିପୁଳା ଧରଣୀକୁ । ସେହି ଆଜ୍ଞାରୁ ଜାତ ହୋଇଛି ପବନ, ଜଳ ଓ ଆକାଶ । ସେହି ଆଜ୍ଞା-ବଳରେ ଶିବ ଆସି ଶକ୍ତିର ଘରେ ଗୃହସ୍ଥ ହୋଇଛନ୍ତି । ସେହି ଆଜ୍ଞା ଚାଳିତ କରୁଛି ସଂସାରର ସବୁ ଖେଳ । ନିରଳମ୍ବ

ହୁକମେ ଆଡ଼ାଣେ ଆଗାସୀ ॥ ହୁକମେ ଜଲ ଥଲ ତ୍ରିଭବଣ ବାସୀ ॥
ହୁକମେ ସାସ ଗିରାସ ସଦା ଫୁନି ହୁକମେ ଦେଖି ଦଖାଇଦା ॥ ୧୨ ॥
ହୁକମି ଉପାଏ ଦସ ଅଉତାର ॥ ଦେବ ଦାନବ ଅଗଣତ ଅପାର ॥
ମାନୈ ହୁକମୁ ସୁ ଦରଗହ ପୈନ୍ଥୈ ସାଚ ମିଲାଇ ସମାଇଦା ॥ ୧୩ ॥
ହୁକମେ ଜୁଗ ଛତୀହ ଗୁଦାରେ ॥ ହୁକମେ ସିଧ ସାଧିକ ବୀଚାରେ ॥
ଆପି ନାଥୁ ନାଥୀ ସଭ ଜା କୀ ବଖସେ ମୁକତି କରାଇଦା ॥ ୧୪ ॥

ମାରୂ ସୋଲହେ

: ୧୩୨ :

ନାନକ ବୋଲଣୁ ଝଖଣା ଦୁଖ ଛଡି ମଂଗୀଅହି ସୁଖ ॥
ସୁଖୁ ଦୁଖୁ ଦୁଇ ଦର କପଡେ ପହିରହି ଜାଇ ମନୁଖ ॥
ଜିଥୈ ବୋଲଣି ହାରୀଐ ତିଥୈ ଚଂଗୀ ଚୁପ ॥ ୧ ॥

ବାର ମାଝ ପଉଡ଼ୀ ୨୪ ସଲୋକ

## ପାଣ୍ଡିତ୍ୟ ଓ ସଦାଚାର

: ୧୩୩ :

ପଡ଼ି ପଡ଼ି ଗଡୀ ଲଦୀଅହି ପଡ଼ି ପଡ଼ି ଭରୀଅହି ସାଥ ॥
ପଡ଼ି ପଡ଼ି ବେଡ଼ୀ ପାଈଐ ପଡ଼ି ପଡ଼ି ଗଡ଼ୀଅହି ଖାତ ॥
ପଡ଼ୀଅହି ଜେତେ ବରସ ବରସ ପଡ଼ୀଅହି ଜେତେ ମାସ ॥
ପଡ଼ୀଐ ଜେତୀ ଆରଜା ପଡ଼ୀଅହି ଜେତେ ସାସ ॥
ନାନକ ଲେଖୈ ଇକ ଗଲ ହୋରୁ ହଉମୈ ଝଖଣା ଝାଖ ॥ ୧ ॥

ବାର ଆସା ପଉଡ଼ୀ ୯

: ୧୩୪ :

ଉଚଡ଼ୀ ଆଦି ପୁରଖୁ ହୈ ଦାତା ଆପେ ସଚୁ ସୋଇ ॥
ଏନା ଅଖରା ମହି ଜୋ ଗୁରମୁଖି ବୂଝୈ ତିସୁ ସିରି ଲେଖୁ ନ ହୋଇ ॥ ୨ ॥
ଙଙୈ ଙିଆନୁ ବୂଝୈ ଜେ କୋଈ ॥ ପଢ଼ିଆ ପଂଡିତୁ ସୋଈ ॥
ସରବ ଜୀଆ ମହି ଏକୋ ଜାଣୈ ତା ହଉମୈ କହୈ ନ କୋଈ ॥ ୪ ॥

ଆସା ପଟୀ

ହୋଇ ମଧ୍ୟ ବିପୁଳ ବ୍ୟୋମ ଠିଆହୋଇଛି କେବଳ ସେହି ହୁକୁମ୍ ବଳରେ; ସେହି ହୁକୁମ୍ ବଞ୍ଚାଇ ରଖିଛି ଜଳ ଓ ସ୍ଥଳରେ ତ୍ରିଭୁବନର ସକଳ ଜୀବଙ୍କୁ, ସେହି ହୁକୁମ୍ ଦେଉଛି ପ୍ରତ୍ୟେକଟି ଜୀବକୁ ତାର ଗ୍ରାସ ଓ ରକ୍ଷଣାବେକ୍ଷଣ । ବିଷ୍ଣୁର ଦଶାବତାର ସେହି ବାଣୀ ଆଜ୍ଞାରୁ ଏବଂ ସେହିପରି ମଧ୍ୟ ଅଗଣିତ ଦେବ-ଦାନବ । ଯିଏ ପ୍ରଭୁଙ୍କ ହୁକୁମ୍ ମାନି ଚଳେ, ସେ ପ୍ରଭୁ-ଚରଣରେ ମାନ୍ୟତାପ୍ରାପ୍ତ ହୋଇଥାଏ ଏବଂ ସତ୍ୟ ସହିତ ମିଳିତ ହୋଇ, ହୋଇଯାଏ ସତ୍ୟ ସ୍ୱରୂପ । ଏକ ପରେ ଏକ ଛତିଶ ଯୁଗ ଚାଲିଛି ପ୍ରଭୁଙ୍କ ହୁକୁମ୍‌ରେ । ଏ ପୃଥିବୀର ସିଦ୍ଧ-ସାଧକବୃନ୍ଦ କେବଳ ସେହି ହୁକୁମ୍‌ର ବିଚାର କରିଥାନ୍ତି । କାରଣ ପ୍ରଭୁହିଁ ଆମ ସମସ୍ତଙ୍କର ଏକମାତ୍ର ନାଥ; ତାଙ୍କଠାରେ ଗୁନ୍ଥା ସକଳ ଭୁବନ, ଏବଂ କେବଳ ତାଙ୍କର କୃପା ହେଲେହିଁ, ଆମେ ମୁକ୍ତି ଆଶା କରିପାରିବା ।

: ୧୩୨ :

ନାନକ କହନ୍ତି ଯେ, ଦୁଃଖ ଗ୍ରସ୍ତ କେବଳ ସୁଖ ମାଗିବା ବାଣୀର ଅପବ୍ୟୟ ମାତ୍ର । ବିଧାତାର ଦ୍ୱାରଦେଶରେ ଦୁଃଖ ଓ ସୁଖର ଦୁଇଟି ପୋଷାକ ମିଳେ, ଆମେ ସେ ଦୁଇଟିକୁ ପିନ୍ଧି ଏଠାକୁ ଆସିଯାଇଛୁ । ଯେଉଁଠି ଜିଜ୍ଞାସାର କେବଳ ନିରୁତ୍ତର ପରାଜୟହିଁ ଫଳ, ସେଠି ମୌନହିଁ ଯଥାଯୋଗ୍ୟହିଁ କର୍ମ ।

: ୧୩୩ :

ପୁସ୍ତକ ଉପରେ ପୁସ୍ତକ ପଢ଼ି ପଢ଼ି ଗାଡ଼ି ଓ ଓଟପିଠିରେ ଲଦି ଚାଲିଲେ, ପଢ଼ା ବହି ସବୁ ଭର୍ତ୍ତିକଲେ ନାଆ, ନାଆ, ପଢ଼ିଚାଲ ଯଦି ମାସ ମାସ ବର୍ଷସାରା, ଏବଂ ସେହି ଖାଲି ପଢ଼ାରେହିଁ ବିତିଯାଏ ଆମର ଆୟୁ ଓ ଶ୍ୱାସ । ନାନକ କହନ୍ତି ଯେ, ଶେଷ ହିସାବ-ପତ୍ରରୁ କେବଳ ଗୋଟିଏ କଥା ଜଣାଯିବ ଯେ ସେହି ପ୍ରଭୁଙ୍କ ବିନା ମନୁଷ୍ୟଗୁଡ଼ିକ କେବଳ ଅହଂକାରରେ ଡୁବିଛନ୍ତି ।

: ୧୩୪ :

ସେ ପ୍ରଭୁ ଆଦିପୁରୁଷ, ସେ ସ୍ୱୟଂ ସତ୍ୟ ସମସ୍ତଙ୍କର ଦାତା, ସେହି ଅକ୍ଷର-ପୁରୁଷଙ୍କୁ ଯେ ଗୁରୁପଦସ୍ଥ ହୋଇ ଜାଣିପାରେ, ସେ ସୁଖ ଦୁଃଖମୟ ଅଦୃଷ୍ଟରୁ ମୁକ୍ତ । ସେହି ଜ୍ଞାନମୟଙ୍କୁ ଯେ ଜାଣିରଖେ, ସେହିହିଁ ପ୍ରକୃତ ସାକ୍ଷର ଓ ପ୍ରକୃତ ପଣ୍ଡିତ । ଯେ ସକଳ ଜୀବ-ଜାତି ଭିତରେ ଦେଖନ୍ତି କେବଳ ସେହି ଏକଙ୍କୁ, ସେହି କେବଳ ଅହଂକାରମୁକ୍ତ ବୋଲି ବୁଝାଯିବେ ।

: ୧୩୫ :

ପାଧା ପଢ଼ିଆ ଆଖୀଐ ବିଦିଆ ବିଚରୈ ସହଜି ସୁଭାଇ ॥
ବିଦିଆ ସୋଧୈ ତତୁ ଲହୈ ରାମ ନାମ ଲିବ ଲାଇ ॥
ମନମୁଖ ବିଦିଆ ବିକ୍ରଦା ବିଖୁ ଖଟେ ବିଖୁ ଖାଇ ॥
ମୂରଖୁ ସବଦୁ ନ ଚୀନଈ ସୂଝ ବୂଝ ନହ କାଇ ॥ ୫୩ ॥
ପାଧା ଗୁରମୁଖି ଆଖୀଐ ଚାଟଡ଼ିଆ ମତି ଦେଇ ॥
ନାମୁ ସମାଲହୁ ନାମୁ ସଂଗରହୁ ଲାହା ଜଗ ମହି ଲେଇ ॥
ସଚୀ ପଟୀ ସଚୁ ମନି ପଢ଼ୀଐ ସବଦୁ ସୁ ସାରୁ ॥
ନାନକ ସୋ ପଢ଼ିଆ ସୋ ପଂଡିତୁ ବୀନା ଜିସୁ ରାମ ନାମୁ ଗଲି ହାରୁ ॥ ୫୪ ॥ ୧ ॥

ରାମକଲୀ ଦଖଣୀ, ଓଁକାରୁ

: ୧୩୬ :

ମାହା ରୁତୀ ସଭ ତୂ ଘଡ଼ୀ ମୂରତ ବୀଚାରା ॥
ତୂ ଗଣତୈ କିନୈ ନ ପାଇଓ ସଚେ ଅଲଖ ଅପାରା ॥
ପଢ଼ିଆ ମୂରଖୁ ଆଖୀଐ ଜିସୁ ଲବୁ ଲୋଭ ଅହଂକାରା ॥
ନାଉ ପଢ଼ୀଐ ନାଉ ବୁଝୀଐ ଗୁରମତୀ ବୀଚାରା ॥
ଗୁରମତୀ ନାମୁ ଧନୁ ଖଟିଆ ଭଗତୀ ଭରେ ଭଣ୍ଡାରା ॥
ନିରମଲୁ ନାମୁ ମଂନିଆ ଦରି ସଚେ ସଚିଆରା ॥
ଜିସ ଦା ଜୀଉ ପରାଣୁ ହୈ ଅଂତରି ଜୋତି ଅପାରା ॥
ସଚା ସାହୁ ଇକୁ ତୂ ହୋରୁ ଜଗତୁ ବଣଜାରା ॥ ୬ ॥

ବାର ମାଝ, ପଉଡ଼ୀ ୬

## ଆନ୍ତରିକ ପରିବର୍ତ୍ତନ ବିନା ବେଶ, ବ୍ରତ, ମନ୍ତ୍ର, ପୂଜା, ଜପ, ତପ, ତୀର୍ଥାଟନ ଓ ସଂଯମ ବୃଥା

: ୧୩୭ :

ଇକି କନ୍ଦ ମୂଲୁ ଚୁଣି ଖାହି ବଣ ଖଣ୍ଡି ବାସା ॥
ଇକି ଭଗବା ବେସୁ କରି ଫିରହି ଜୋଗୀ ସଂନିଆସା ॥
ଅଂଦରି ତ୍ରିସନା ବହୁତୁ ଛାଦନ ଭୋଜନ କୀ ଆସା ॥
ବିରଥା ଜନମୁ ଗବାଇ ନ ଗିରହୀ ନ ଉଦାସା ॥
ଜମ କାଲୁ ସିରହୁ ନ ଉତରୈ ତ୍ରିବିଧି ମନସା ॥
ଗୁରମତୀ କାଲୁ ନ ଆବୈ ନେଡ଼ୈ ଜା ହୋବୈ ଦାସ ନିଦାସା ॥

: ୧୩୫ :

ଯିଏ ସହଜ ଭାବରେ ବିଦ୍ୟା ବିତରଣ କରିଥାନ୍ତି, କରିଥାନ୍ତି ବିଦ୍ୟାର ଅନୁସନ୍ଧାନ, ଆହରଣ କରନ୍ତି ବିବିଧ ତତ୍ତ୍ୱ ଏବଂ ମଗ୍ନ ହୁଅନ୍ତି ରାମନାମରେ, ତାଙ୍କୁହିଁ କୁହାଯିବ ପ୍ରକୃତ ଉପାଧ୍ୟାୟ । ଯେ ବିଦ୍ୟା ବିକ୍ରୟ କରେ, ସେ କେବଳ ବିଷ ରୋଜଗାର କରୁଛି ଓ ବିଷ ଖାଉଛି, କହିବାକୁ ହେବ । ଏ ପ୍ରକାର ମୂର୍ଖ ଶବ୍ଦ-ବ୍ରହ୍ମଙ୍କୁ ଜାଣିବ କିପରି ? ଏବଂ ଅନ୍ୟ କେହି ତାକୁ ବିଚାରକୁ ମଧ୍ୟ ଆଣନ୍ତି ନାହିଁ । ସେହି କେବଳ ପ୍ରକୃତ ଶିକ୍ଷକ, ଯେ ଶିଷ୍ୟମାନଙ୍କୁ ଶିଖାନ୍ତି, ରାମନାମ ସ୍ମରଣ ଓ ସଂଗ୍ରହ କରିବାକୁ, ତାହା ଇହଜୀବନରେ ଶ୍ରେଷ୍ଠ ଲାଭ ବୋଲି ପ୍ରଚାର କରି—ହେ ଭାଇ, ସତ୍ୟର ଗଣନାକୁ ସତ୍ୟ ମନରେ ପଢ଼ ଏବଂ ମନେରଖ ଯେ ଏ ଜଗତରେ ଶବ୍ଦ-ବ୍ରହ୍ମହିଁ ସାର ପାଠ । ନାନକର କଥନ ଏହି ଯେ, ସେହିହିଁ ପ୍ରକୃତ ବିଦ୍ୱାନ, ପଣ୍ଡିତ ଓ ବ୍ୟାଖ୍ୟାପକ, ଯାହାର ଗଳାରେ ସର୍ବଦା ରାମନାମର ମାଳା ପ୍ରଲମ୍ବିତ ।

: ୧୩୬ :

ମୁଁ ସକଳ ଋତୁ, ମାସ, ଘଡ଼ି ଓ ମୁହୂର୍ତ୍ତ ଧରି ପ୍ରଭୁଙ୍କର ଧ୍ୟାନ କରିଛି; କିନ୍ତୁ ହେ ସତ୍ୟ, ଅଲେଖ, ତୁ ଅପାର; ତତେ କିଏ ଜାଣିପାରିବ ଗଣନାଦ୍ୱାରା ? ଯେ ଲୋଭ, ମୋହ, ଅହଙ୍କାରକୁ ଛାଡ଼ିପାରିନି, ସେ ଲେଖାପଢ଼ା ଜାଣିଥିଲେ ମଧ୍ୟ, କହିବାକୁ ହେବ ଯେ ସେ ମୂର୍ଖ । ଗୁରୁଙ୍କର ଉପଦେଶ ଏହିକି, ଅନ୍ୟ ପୁସ୍ତକ କେବଳ ନାମହିଁ ପଢ଼ ଓ ନାମକୁହିଁ ବୁଝିବାକୁ ଚେଷ୍ଟା କର । ଗୁରୂପଦେଶରେ ହିଁ ଏହି ରାମନାମ ରୂପକ ସଂପଦ ଅର୍ଜନ କରାଯାଇ-ପାରେ ଏବଂ କେବଳ ଭକ୍ତିରେ ଭଣ୍ଡାର ପୂର୍ଣ୍ଣ କରାଯାଇପାରେ । ନାମକୁ ମାନିନେଲେହିଁ ଲୋକ ନିର୍ମଳ ହୋଇ-ଉଠେ, ସତ୍ୟାଚାରୀ ପହଞ୍ଚେ ଯାଇ ସତ୍ୟର ଦ୍ୱାରଦେଶରେ । ହେ ପ୍ରଭୁ, ତୁହିହିଁ ପ୍ରତ୍ୟେକ ଜୀବ ଭିତରର ପ୍ରାଣ, ସକଳର ଅନ୍ତର କେବଳ ତୁମରି ଆଲୋକରେ ଆଲୋକିତ । ତୁମେଇ ଏକମାତ୍ର ସତ୍ୟର ସାହୁକାର, ଏହି ସମଗ୍ର ଜଗତ ହିଁ ତୋର ପଣ୍ୟଶାଳା ।

: ୧୩୭ :

ଯୋଗୀ ଓ ସନ୍ନ୍ୟାସୀମାନଙ୍କ ଭିତରୁ କେହି କେହି କନ୍ଦମୂଳ ଖାଆନ୍ତି ଓ ବଣରେ ରହନ୍ତି । କେତେକ ଗୈରିକ ବସନ-ଧାରୀ ଓ ନିତ୍ୟ ଭ୍ରମଣଶୀଳ । କିନ୍ତୁ ବସ୍ତୁତଃ ସେମାନଙ୍କ ଭିତରେ ବହୁତ ତୃଷ୍ଣା ଓ ଭୋଜନ-ବସନର ଆଶା ଏପର୍ଯ୍ୟନ୍ତ ବଞ୍ଚିରହିଛି । ସେମାନଙ୍କର ଜନ୍ମ ବୃଥା ଗଲା ବୋଲି କହିବାକୁ ହେବ; କାରଣ ସେମାନେ ନାହିଁ ହେଲେ ଉତ୍ତମ ଗୃହସ୍ଥ ବା ଉତ୍ତମ ବୈରାଗୀ । ସେମାନଙ୍କ ଭାଲପଟରୁ ଯମଦଣ୍ଡଲିଖନ ଲିଭିନାହିଁ, ଏବଂ ସେମାନଙ୍କର ମନ ତ୍ରିଗୁଣର ବଶୀଭୂତ ହୋଇ ରହିଛି । କେବଳ ଗୁରୂପଦେଶ ମାନି ଚଳିଲେ ଓ ନିଜକୁ ମନେ କଲେ ପ୍ରଭୁ ଦାସର ଦାସ, ତେବେ ଯାଇଁ କାଳ ପାଖ ପଶିପାରେନା । କେବଳ ସତ୍ୟମସ୍ତ ଚିତ୍ତରେହିଁ ସତ୍ୟବ୍ରହ୍ମ ଅଧିବାସ କରିପାରନ୍ତି; ତେଣୁ

ସଚୁ ସବଦୁ ସଚୁ ମନ୍ନ ଘର ହୀ ମାହି ଉଦାସା ॥
ନାନକ ସତିଗୁରୁ ସେବନି ଆପଣା ସେ ଆସା ତେ ନିରାସା ॥ ୫ ॥

ବାର ମାହ ପଉଡ଼ୀ ୫

: ୧୩୮ :

ଜଗୁ ପରବୋଧହି ମଡ଼ୀ ବଧାବହି ॥ ଆସଣୁ ତିଆଗି କାହେ ସଚୁ ପାବହି ॥
ମମତା ମୋହୁ କାମଣି ହିତକାରୀ ॥ ନା ଅଉଧୂତୀ ନା ସଂସାରୀ ॥ ୧ ॥
ଜୋଗୀ ବୈସି ରହହୁ ଦୁବିଧା ଦୁଖୁ ଭାଗୈ ॥ ଘରି ଘରି ମାଗତ ଲାଜ ନ ଲାଗୈ ॥ ୧ ॥ ରହାଉ ॥
ଗାବହି ଗୀତ ନ ଚୀନହି ଆପୁ ॥ କିଉ ଲାଗୀ ନିବରୈ ପରତାପୁ ॥
ଗୁର କୈ ସବଦି ରଚୈ ମନ ଭାଇ ॥ ଭିଖିଆ ସହଜ ବୀଚାରୀ ଖାଇ ॥ ୨ ॥
ଭସମ ଚଢ଼ାଇ କରହି ପାଖଂଡୁ ॥ ମାଇଆ ମୋହି ସହହି ଜମ ଡଂଡୁ ॥
ଫୂଟୈ ଖାପରୁ ଭୀଖ ନ ଭାଇ ॥ ବଂଧନି ବାଧିଆ ଆବୈ ଜାଇ ॥ ୩ ॥
ବିନ୍ଦୁ ନ ରାଖହି ଜତୀ କହାବହି ॥ ମାଈ ମାଗତ ତ୍ରୈ ଲୋଭାବହି ॥
ନିରଦଇଆ ନହୀ ଜୋତି ଉଜାଲା ॥ ବୂଡତ ବୂଡେ ସରବ ଜଂଜାଲା ॥ ୪ ॥
ଭେଖ କରହି ଖିଂଥା ବହୁ ଥଟୂଆ ॥ ଝୂଠୋ ଖେଲୁ ଖେଲୈ ବହୁ ନଟୂଆ ॥
ଅଗନି ଅଗନ ଚିନ୍ତା ବହୁ ଜାରେ ॥ ବିଣୁ କରମା କୈସେ ଉତରସି ପାରେ ॥ ୫ ॥
ମୁଂଦ୍ରା ଫଟକ ବନାଈ କାନି ॥ ମୁକତି ନହୀଂ ବିଦିଆ ବିଗିଆନି ॥
ଜିହବା ଇନ୍ଦ୍ରୀ ସାଦି ଲୋଭାନା ॥ ପସୂ ଭଏ ନହୀଂ ମିଟୈ ନୀସାନା ॥ ୬ ॥
ତ୍ରିବିଧି ଲୋଗା ତ୍ରିବିଧି ଜୋଗା ॥ ସବଦୁ ବୀଚାରୈ ଚୂକସି ସୋଗା ॥
ଊଜଲୁ ସାଚୁ ସୁ ସବଦୁ ହୋଇ ॥ ଜୋଗୀ ଜୁଗତି ବୀଚାରେ ସୋଇ ॥ ୭ ॥
ତୁଝ ପହି ନଉନିଧି ତୂ କରଣୈ ଜୋଗୁ ॥ ଥାପି ଉଥାପେ କରେ ସୁ ହୋଗୁ ॥
ଜତୁ ସତୁ ସଂଜମୁ ସଚୁ ସୁ ଚୀତୁ ॥ ନାନକ ଜୋଗୀ ତ୍ରିଭବଣ ମୀତୁ ॥ ୮ ॥ ୨ ॥

ରାମକଲୀ ଅସଟପଦୀଆ

: ୧୩୯ :

ଇକ ବନ ମାହି ବୈସହି ଡୂଗରି ଅସଥାନୁ ॥ ନାମୁ ବିସାରି ପଚହି ଅଭିମାନୁ ॥
ନାମ ବିନା କିଆ ଗିଆନ ଧିଆନୁ ॥ ଗୁରମୁଖି ପାବହି ଦରଗହି ମାନୁ ॥ ୩ ॥
ହଠୁ ଅହଂକାରୁ କରୈ ନହୀଂ ପାବୈ ॥ ପାଠ ପଢ଼ୈ ଲେ ଲୋକ ସୁଣାବୈ ॥
ତୀରଥି ଭରମସି ବିଆଧି ନ ଜାବୈ ॥ ନାମ ବିନା କୈସେ ସୁଖୁ ପାବୈ ॥ ୪ ॥
ଜତନ କରୈ ବିନ୍ଦୁ କିବୈ ନ ରହାଈ ॥ ମନୂଆ ଡୋଲୈ ନରକେ ପାଈ ॥
ଜମପୁରି ବାଧୋ ଲହୈ ସଜାଈ ॥ ବିନୁ ନାବୈ ଜୀଉ ଜଲି ବଲି ଜାଈ ॥ ୫ ॥

ସଂସାର ପ୍ରତି ଉଦାସୀନ ରହି । ନାନକ କହେ ଯେ, ଯେ ସଦ୍‌ଗୁରୁସେବାରେ ମନ ଦିଏ, ସେ ମୁକ୍ତ ହୋଇଉଠେ ସାଂସାରିକ ଆଶା-ବନ୍ଧନରୁ ।

: ୧୩୮ :

ଯେ ମଠାଧୀଶ ହୋଇ ଦୁନିଆକୁ ଉପଦେଶ ଦେଉଛି, ସେ ଆସନ ତ୍ୟାଗ କରିପାରିବ ନା ଶାନ୍ତି ପାଇବ ? ସେ ହିତକାରୀ ମମତା, ମୋହ ଓ କାମିନୀମାନଙ୍କର; କିନ୍ତୁ ନୁହେଁ ଗୃହସ୍ଥ ବା ନୁହେଁ ଅବଧୂତ । ଯେ ପ୍ରକୃତ ଯୋଗୀ ସେ ନିଜ ଆସନରେ ଦୃଢ଼ ହୋଇ ବସିରହି, ଦୁର୍ଭାଗ୍ୟ ଆପେ ଆପେ ଚାଲିଯିବ; ଅଥଚ ହେ ଯୋଗୀ, ତମେ ଯେ ଘର ଘର କରି ଭିଖ ମାଗୁଛ, ତୁମକୁ ଲଜ୍ଜା ଲାଗୁନି ? ବହୁ ଭଜନ ତ ଗାଉଛ, କିନ୍ତୁ ନିଜେ ନିଜକୁ ଚିହ୍ନିଲଣି କି ? ତା ଯଦି ନ ହୋଇଛି, କିପରି ଭାବୁଛ ଯେ ଚାଲିଯିବ ତମର ପରିତାପ ସବୁ ? ହେ ଯୋଗୀ, ମନରେ ଅଧିଷ୍ଠିତ କର ପ୍ରେମକୁ, ପ୍ରଭୁ ନାମରେ ତନ୍ମୟ କରିଦିଅ ନିଜକୁ, ତେବେ ସହଜରେହିଁ ମିଳିଯିବ ତୁମକୁ ଈଶ୍ୱରର ଭିକ୍ଷା । ଖାଲି ବାହାରେ ଭସ୍ମ-ବିଲେପିତ ହୋଇ ନିଜକୁ କାହିଁକି ବନାଉଛ ଏକ ପାଷଣ୍ଡ କରି ? ମାୟା-ମୋହ ପ୍ରତି ଆସକ୍ତ ରହିଲେ, ବୈରାଗୀର ସମସ୍ତ ଆଭରଣ ସତ୍ତ୍ୱେ ଯମର କଠୋର ଦଣ୍ଡ ନିଶ୍ଚୟ ସହିବ । ଫଟା ଖପରରେ ଭିକ୍ଷା ବି ତ ଗଳିଯିବ, ଏବଂ ବନ୍ଧନ ଆସିବଇ ଆସିବ କପଟତା ହେତୁ । ଯତି ବୋଲାଇ ବ୍ରହ୍ମଚର୍ଯ୍ୟ ତ ରକ୍ଷାକରି ପାରୁନା, ମା'ମାନଙ୍କୁ ଭିକ୍ଷା ମାଗୁଛ, ଫେରି ସେଇମାନଙ୍କୁ ଲୋଭାଉଛ ? ତମ ନିଜ ଭିତରେ ଆଲୋକ ନାହିଁ, ତାହା ଅନ୍ଧକାରମୟ; ତେଣୁ ମଥାରୁ ପାଦ ପର୍ଯ୍ୟନ୍ତ ତମେ ବୁଡ଼ିରହିଛ ଅଜ୍ଞାନରେ । ଚରକଦାର ପୋଷାକ ପିନ୍ଧି ନଟ ସାଜିଛ, କିନ୍ତୁ ଭିତରେ ଚିତ୍ତ ଜଳୁଛି ଚିନ୍ତାଗ୍ନିରେ, ସତ୍‌କର୍ମ ବିନା ଭବସାଗର ପାରିହେବୁ ରେ ମୂଢ଼ ? କାନରେ ପିନ୍ଧିଛୁ ସ୍ଫଟିକ-ମଣି-ମୁକ୍ତା; କିନ୍ତୁ ରହିଛୁ ବିଦ୍ୟା-ବିଜ୍ଞାନ-ହୀନ, କିପରି ତେଣୁ ଆଶା କରୁ ମୁକ୍ତି ପାଇବୁ ବୋଲି ? ତୋର ରସନା ସବୁବେଳେ ଖୋଜୁଛି ସ୍ୱାଦ, ତାହା କେବଳ ପଶୁର ଲକ୍ଷଣ । ହାୟ, ଯୋଗୀ ଓ ଯୋଗୀତର ଲୋକ, ସମସ୍ତେ ତ୍ରିଗୁଣରେ ବଶୀଭୂତ ରହିଛନ୍ତି, ଅଥଚ ଲୋକେ ଭୁଲି ଯାଉଛନ୍ତି ଯେ, ପ୍ରଭୁନାମ ସମସ୍ତ ଶୋକକୁ କାଟି ପକାଇବ; ପ୍ରଭୁନାମ ଅନ୍ତରକୁ କରେ ପବିତ୍ର ଓ ଉଜ୍ଜ୍ୱଳ, ପ୍ରକୃତ ଯୋଗୀ ଯୋଗର ଏହି ତତ୍ତ୍ୱ ଜାଣନ୍ତି । ହେ ଭାଇ, ତମ ପାଖରେ ଗଚ୍ଛିତ ରହିଛି ନବନିଧି ତୁମେ, ସକଳ ସିଦ୍ଧି ପାଇଁ ସମର୍ଥ, ତୁମେ ନିଜକୁ ନିଜେ କରିପାରିବ ସ୍ଥାପିତ ବା ବିସ୍ଥାପିତ, ତେଣୁ ଚିତ୍ତରେ ହୁଅ ସତ୍ୟ-ଜପ-ତପ-ସଂଯମ-ସଂପନ୍ନ । ନାନକ କହେ ଯେ, ପ୍ରକୃତ ଯୋଗୀ ହେଉଛି ତ୍ରିଭୁବନର ମଣି ।

: ୧୩୯ :

ଯୋଗୀ ବଣ-ପର୍ବତରେ ବାସ କରି ମଧ୍ୟ ମାନ-ଅଭିମାନରେ ଜଳିବାର ଦେଖାଯାଇଛି; କାରଣ ସେମାନେ ଉତ୍ତମ ଭାବରେ ପ୍ରଭୁନାମକୁ ଗ୍ରହଣ କରି ନାହାନ୍ତି । ପ୍ରଭୁନାମ ବିନା କି ଜ୍ଞାନ, କି ଧ୍ୟାନ ? ଗୁରୁପଦେଶ ଅନୁସାରେ ଚଳି ଯେଉଁମାନେ ପ୍ରଭୁନାମରେ ତନ୍ମୟ ହୋଇ ରହନ୍ତି ସେହିମାନେହିଁ ପ୍ରଭୁଙ୍କ ସମୀପରେ ପାଇଥାନ୍ତି ମାନ୍ୟତା । ଜିଦ୍‌ ବା ଅହଂକାରରେ ପ୍ରଭୁ ମିଳନ୍ତି ନାହିଁ । ନିଜେ ବହୁ ଗ୍ରନ୍ଥ ପାଠ କର ବା ପଢ଼ି ପଢ଼ି ଲୋକଙ୍କୁ ଶୁଣାଅ, କର ବା ତୀର୍ଥାଟନ; କିନ୍ତୁ ଏସବୁ ଦ୍ୱାରା ମନର ବ୍ୟାଧି ଘୁଞ୍ଚିଯିବନି । ପ୍ରଭୁ-ନାମ ବିନା ଏ ସଂସାରରେ ସୁଖ କାହିଁ ? ପ୍ରକୃତରେ ନିଷ୍ଠାବାନ ରହିଲେ ବ୍ରହ୍ମଚର୍ଯ୍ୟରେ ହାନି ଘଟନ୍ତା କି ? ଏପ୍ରକାର ଅଧଃପତନ ଯା'ର ଘଟେ ତାହାର ଚିତ୍ତ ବରାବର ବିଚଳିତ ରହୁଛି ଏବଂ ଏହାର ନିଶ୍ଚିତ ଫଳ ହେବ—ନରକ-ଭୋଗ । ପ୍ରଭୁନାମ ବିନା ଜୀବ ଯମପୁରରେ ବନ୍ଦୀ ହୋଇ କେବଳ ନିଆଁରେ ପୋଡ଼ିହେଉଥିବ । ଅନ୍ୟ ପକ୍ଷରେ ଯେତେ ବଡ଼ ସିଦ୍ଧ, ସାଧକ, ମୁନି ବା ଦେବ ହେଉନ୍ତୁ, କେବଳ ହଠ-ଯୋଗର କାରସାଦିରେ ସେ କେବେହେଲେ ଆତ୍ମାର ତୃପ୍ତି ପାଇପାରିବେ

ସିଧ ସାଧିକ କେତେ ମୁନି ଦେବା ॥ ହଠି ନିଗ୍ରହି ନ ତୃପତାବହି ଭେବା ॥
ସବଦୁ ବୀଚାରି ଗହହି ଗୁର ସେବା ॥ ମନି ତନି ନିରମଲ ଅଭିମାନ ଅଭେବା ॥ ୬ ॥
କରମି ମିଲୈ ପାବୈ ସଚୁ ନାଉ ॥ ତୁମ ସରଣାଗତି ରହଉ ସୁଭାଉ ॥
ତୁମ ତେ ଉପଜଉ ଭଗତୀ ଭାଉ ॥ ଜପୁ ଜାପଉ ଗୁରମୁଖି ହରି ନାଉ ॥ ୭ ॥
ହଉମେ ଗରବୁ ଜାଇ ମନ ଭୀନେ ॥ ଝୂଠି ନ ପାବସି ପାଖଣ୍ଡି କୀନେ ॥
ବିନୁ ଗୁର ସବଦ ନାହୀ ଘରୁ ବାରୁ ॥ ନାନକ ଗୁରମୁଖି ତତୁ ବୀଚାରୁ ॥ ୮ ॥ ୬ ॥ ରାମକଲୀ ଅସଟପଦୀଆ

: ୧୪୦ :

ହିନ୍ଦୂ କୈ ଘରି ହିନ୍ଦୂ ଆବୈ ॥ ସୂତୁ ଜନେଊ ପଢ଼ି ଗଲି ପାବୈ ॥
ସୂତୁ ପାଇ କରେ ବୁରିଆଈ ॥ ନାତା ଧୋତା ଥାଇ ନ ପାଈ ॥
ମୁସଲମାନୁ କରେ ବଡ଼ିଆଈ ॥ ବିନୁ ଗୁର ପୀରୈ କୋ ଥାଇ ନ ପାଈ ॥
ରାହୁ ଦସାଇ ଓଥୈ କୋ ଜାଇ ॥ କରଣୀ ବାଝହୁ ଭିସତି ନ ପାଇ ॥
ଜୋଗୀ କୈ ଘରି ଜୁଗତି ଦସାଈ ॥ ତିତୁ କାରଣି କନି ମୁନ୍ଦ୍ରା ପାଈ ॥
ମୁନ୍ଦ୍ରା ପାଇ ଫିରୈ ସଂସାରି ॥ ଜିଥୈ କିଥୈ ସିରଜଣହାରୁ ॥
ଜେତେ ଜୀଅ ତେତେ ବାଟାଊ ॥ ଚୀରୀ ଆଈ ଢିଲ ନ କାଊ ॥
ଏଥୈ ଜାଣୈ ସୁ ଜାଇ ସିଞ୍ଞାଣୈ ॥ ହୋରୁ ଫକଡ଼ୁ ହିନ୍ଦୂ ମୁସଲମାଣୈ ॥
ସଭନା କା ଦରି ଲେଖା ହୋଇ ॥ କରଣୀ ବାଝହୁ ତରୈ ନ କୋଇ ॥
ସଚୋ ସଚୁ ବଖାଣୈ କୋଇ ॥ ନାନକ ଅଗୈ ପୁଛ ନ ହୋଇ ॥ ୨ ॥

ବାର ରାମକଲୀ ପଉଡ଼ୀ ୧୧ ସଲୋକ

: ୧୪୧ :

କୁବୁଧି ଡୂମଣୀ କୁଦଇଆ କସାଇଣି ପର ନିନ୍ଦା ଘଟ ଚୂହଡ଼ୀ ମୁଠୀ କ୍ରୋଧି ଚଣ୍ଡାଲି ॥
କାରୀ କଢ଼ୀ କିଆ ଥୀଐ ଜାଂ ଚାରେ ବୈଠୀଆ ନାଲି ॥
ସଚୁ ସଂଜମୁ କରଣୀ କାରାଂ ନାଵଣୁ ନାଉ ଜପେହୀ ॥
ନାନକ ଅଗୈ ଉତମ ସେଈ ଜି ପାପାଂ ପଂଦ ନ ଦେହୀ ॥

ବାର ସିରୀ ରାଗୁ ପଉଡ଼ୀ ୨୦ ସଲୋକ

: ୧୪୨ :

ସୂଚେ ଏହି ନ ଆଖୀଅହି ବହନି ଜି ପିଂଡା ଧୋଇ ॥
ସୂଚେ ସେଈ ନାନକା ଜିନ ମନି ବସିଆ ସୋଇ ॥ ୨ ॥ ବାର ଆସା ପଉଡ଼ୀ ୧୭

ନାହିଁ । କେବଳ ପ୍ରଭୁନାମ ନେଇ ଯିଏ ଗୁରୁସେବାରେ ନିଜକୁ ଲଗାଇପାରନ୍ତି, ତାଙ୍କର ତନ, ମନ ନିର୍ମଳ ହୋଇଯାଏ ଏବଂ ବିନଷ୍ଟ ହୁଏ ମଧ୍ୟ ଅହଙ୍କାର । ପ୍ରଭୁଙ୍କର କୃପା ହେଲେ ହିଁ ଲୋକ ସତ୍ୟନାମ ପାଇଥାଏ, ଏବଂ ସେ ସହଜରେ ହୋଇଯାନ୍ତି ପ୍ରଭୁଙ୍କର ସପ୍ରେମ ଶରଣାଗତ । ତୁମଠାରେ ବି ହରିଭକ୍ତିଭାବ ଜାଗ୍ରତ ହେବ, ଯଦି ଗୁରୁପଦିଷ୍ଟ ହୋଇ ଜପ କର ହରିନାମ ଏବଂ ମନ ଯଦି ନାମରେ ଆର୍ଦ୍ର ହୋଇଉଠେ, ତେବେ ଘୁଞ୍ଚିଯିବ ଗର୍ବ, ଅହଙ୍କାର ଓ ମିଥ୍ୟା । ପାଷଣ୍ଡତାରେ କିଛି ହିଁ ଲାଭ ମିଳିବ ନାହିଁ, ଗୁରୁ-ମନ୍ତ୍ର ବିନା କେହି ନିଜର ଘର ଫେରିପାଇବେନି । ନାନକ କହେ ଯେ, ଗୁରୁପଦେଶର ଏହାହିଁ ହେଲା ସାରକଥା ।

: ୧୪୦ :

ହିନ୍ଦୁ ଧର୍ମରେ ଯେତେବେଳେ ଲୋକ ହିନ୍ଦୁତ୍ୱରେ ପ୍ରବେଶ କରେ, ସେତେବେଳେ ବ୍ରାହ୍ମଣ ମନ୍ତ୍ର ପାଠକରି ବେକରେ ସୂତାର ଏକ ପଇତା ଗୁଡ଼ାଇଦିଏ । କିନ୍ତୁ ସେ ପଇତା ପିନ୍ଧି ହିନ୍ଦୁ ଏପରି ବିବିଧ ଦୁଷ୍କର୍ମ କରିଚାଲେ, ଯାହା କୌଣସି ବାହ୍ୟ ସ୍ନାନ ଧୋଇ ଦେଇ ନପାରେ । ସାଧାରଣ ମୁସଲମାନ ତାର ଧର୍ମକୁ ସାଧାରଣ ହିନ୍ଦୁ ଅପେକ୍ଷା ଅଧିକ ଭଲପାଏ; ତଥାପି କୌଣସି ମୁସଲମାନ ସଦ୍ ପୀର-ଗୁରୁର ଉପଦେଶ ବିନା ଦରଗାରେ ସ୍ଥାନ ପାଇବାର ଆଶା କରି ନ ପାରେ । କିନ୍ତୁ ଗୁରୁ ପ୍ରଦର୍ଶିତ ମାର୍ଗ ଧରି ମଧ୍ୟ କଷ୍ଟରେ ଚାଲନ୍ତି କେତେ ଜଣ ? ଏବଂ ଗୁରୂପଦିଷ୍ଟ ଭାବରେ ସତ୍କର୍ମାଦି ନ କରି, ସ୍ୱର୍ଗଗମନର ଆଶା ବା କରିବ କିପରି ? ଯୋଗୀର ମାର୍ଗରେ ଯିବାର ଇଚ୍ଛା ପ୍ରକାଶ କଲେ ଭବିଷ୍ୟତ ସାଧକର କାନରେ ଯୋଗ-ରହସ୍ୟ କୁହାଯାଇଥାଏ । କାନରେ ମୁଦ୍ରିକା ଧାରଣର ଏହାହିଁ ପ୍ରକୃତ ତାତ୍ପର୍ଯ୍ୟ । କିନ୍ତୁ ନିଖିଳ-ବିଶ୍ୱର କର୍ତ୍ତା ଈଶ୍ୱର ଏଠି, ସେଠି ଓ ସବୁଠି ଥିଲାବେଳେ, କାନରେ ଯୋଗ-ପଥ-ଗ୍ରହଣର ପ୍ରତୀକରୂପେ ମୁଦ୍ରିକା ଧାରଣ କରି, ଲୋକ ଦେଶାଟନ କରିଯିବ କାହିଁକି ? ଜୀବନ-ପଥରେ ଯେତେ ଅଗଣିତ ପ୍ରାଣୀ ଚଳମାନ ଅଛନ୍ତି, ସେହି ପ୍ରତ୍ୟେକଙ୍କ ପାଖକୁ ଯେତେବେଳେ ମୃତ୍ୟୁର ପରବାନା ଆସିଯିବ, କେହି କି ତାକୁ ରୋକିପାରିବ ? କିନ୍ତୁ ଯେଉଁ ଲୋକ ଈଶ୍ୱରଙ୍କୁ ଇହଲୋକରେ ଜାଣିଯାଏ, ସେ ତାଙ୍କୁ ପରଲୋକରେ ଚିହ୍ନି ପାରିବ, ଅନ୍ୟଥା ହିନ୍ଦୁ ଓ ମୁସଲମାନ ଉଭୟଙ୍କର ଧର୍ମ-ହୁଙ୍କାର ଏକାନ୍ତ ବ୍ୟର୍ଥ ବୋଲି ଜାଣିବାକୁ ହେବ । ପ୍ରଭୁଙ୍କ ମନ୍ଦିରଦ୍ୱାରରେ ଏହା ଉତ୍କୀର୍ଣ୍ଣ ରହିଛି ଯେ, ସତ୍କର୍ମ ବିନା ହିନ୍ଦୁ, ମୁସଲମାନ କେହି ହିଁ ମୁକ୍ତି ପାଇବାର ଆଶା କରି ନ ପାରନ୍ତି । କେବଳ ସତ୍ୟ, ଶୁଦ୍ଧ ସତ୍ୟରେ ରହିଥିବା ଲୋକ ସତ୍ୟରେ ଏ ଜଗତରେ ଏକାନ୍ତ ବିରଳ । ନାନକର କଥନ ଏହି ଯେ, ଏ ପ୍ରକାର ସତ୍ୟବନ୍ତ ଓ ସତ୍ୟାଶ୍ରୟୀ ସାଧକ ପରଲୋକରେ କୌଣସି ହେଲେ ପରୀକ୍ଷାରେ ହସ୍ତଖୀନ ହୋଇ ନଥାନ୍ତି ।

: ୧୪୧ :

ମନୁଷ୍ୟର କୁବୁଦ୍ଧି ଏକ ଡୋମଣୀ, ମନୁଷ୍ୟଠାରେ ଦେଖାଦେବା ନିଷ୍ଠୁରତା ଏକ ଘୃଣ୍ୟ କଂସେଇ, ପରନିନ୍ଦା ଏକ ହାଡ଼ିଆଣୀ, କ୍ରୋଧରୂପକ ଚଣ୍ଡାଳୁଣୀ ବାରମ୍ବାର ଆମ୍ଭକୁ ଠକିଥାନ୍ତି । ଏ ଚାରି ବିଭତ୍ସତା ଘର ଭିତରେ ତମର ସଙ୍ଗୀ-ସଙ୍ଗିନୀ ହୋଇ ବାସ କରୁଥିଲାବେଳେ, ଘରର ବାହାରଟାକୁ ନାନା ନକ୍ସା ଟାଣି ସଜେଇବାରେ କି ଲାଭ ? ସତ୍ୟ ହିଁ ପ୍ରକୃତ ସଂଯମ, ସତ୍କର୍ମ ଚଉରେଖା, ଏବଂ ପ୍ରଭୁଙ୍କ ନାମ-ଜପହିଁ ପ୍ରକୃତ ସ୍ନାନ । ନାନକର କଥନ ଏହି ଯେ, ଅନ୍ୟ ଲୋକକୁ ପାପ-ପଥର ଶିକ୍ଷା କେବେହେଲେ ଦିଅନାହିଁ, ଅନ୍ତତଃ ସେତିକି ହେଲେ, ପରଲୋକରେ ତମେ ଉତ୍ତମ ମାନ୍ୟତା ପାଇବାକୁ ଆଶା କରିପାର ।

: ୧୪୨ :

ବାହ୍ୟ ଭାବରେ ଶରୀରଟିକୁ ପରିଚ୍ଛନ୍ନ କରି ସେ ଯେଉଁ ଲୋକ ବସିଛି, ସେ ଆଦୌ ନିର୍ମଳ ନୁହେଁ । ନାନକର କଥନ ଏହି ଯେ, କେବଳ ସେହି ଲୋକ ପ୍ରକୃତରେ ସ୍ୱଚ୍ଛ, ଯାହାର ଚିତ୍ତରେ ଈଶ୍ୱର ଅଧିଷ୍ଠିତ ।

: ୧୪୩ :

ଜେ ରତୁ ଲଗୈ କପଡ଼ୈ ଜାମା ହୋଇ ପଲୀତୁ ॥
ଜୋ ରତୁ ପୀବହି ମାଣସା ତିନ କିଉ ନିରମଲୁ ଚୀତୁ ॥
ନାନକ ନାଉ ଖୁଦାଇ କା ଦିଲ ହଛୈ ମୁଖି ଲେହୁ ॥
ଅବରି ଦିବାଜେ ଦୁନୀ କେ ଝୂଠେ ଅମଲ କରେହୁ ॥ ୧ ॥

ବାର ମାଝ ପଉଡ଼ୀ ୭ ସଲୋକ

ମନକୁ ଜିଣିଲେ ଜଗତ ଜିଣିବ

: ୧୪୪ :

ମନୁ ମୈଗଲୁ ସାକତୁ ଦେବାନା ॥ ବନଖଂଡି ମାଇଆ ମୋହି ହୈରାନା ॥
ଇତ ଉତ ଜାହି କାଲ କେ ଚାପେ ॥ ଗୁରମୁଖି ଖୋଜି ଲହୈ ଘରୁ ଆପେ ॥ ୧ ॥
ବିନୁ ଗୁର ସବଦୈ ମନୁ ନହୀ ଠଉରା ॥
ସିମରହୁ ରାମ ନାମୁ ଅତି ନିରମଲୁ ॥ ଅବର ତିଆଗହୁ ହଉମୈ କଉରା ॥ ୧ ॥ ରହାଉ ॥
ଇହୁ ମନୁ ମୁଗଧୁ କହହୁ କିଉ ରହସୀ ॥ ବିନୁ ସମଝେ ଜମ କା ଦୁଖୁ ସହସୀ ॥
ଆପେ ବଖସେ ସତିଗୁରୁ ମେଲୈ ॥ କାଲୁ କଂଟକୁ ମାରେ ସଚୁ ପେଲୈ ॥ ୨ ॥
ଇହୁ ମନୁ କରମା ଇହୁ ମନୁ ଧରମା ॥ ଇହୁ ମନୁ ପଂଚ ତତୁ ତେ ଜନମା ॥
ସାକତୁ ଲୋଭୀ ଇହୁ ମନୁ ମୂଡ଼ା ॥ ଗୁରମୁଖି ନାମୁ ଜପୈ ମନୁ ରୂଡ଼ା ॥ ୩ ॥
ଗୁରମୁଖି ମନୁ ଅସଥାନେ ସୋଈ ॥ ଗୁରମୁଖି ତ୍ରିଭବଣି ସୋଝୀ ହୋଈ ॥
ଇହୁ ମନୁ ଜୋଗୀ ଭୋଗୀ ତପୁ ତାପୈ ॥ ଗୁରମୁଖି ଚୀନ୍ହୈ ହରି ପ୍ରଭୁ ଆପୈ ॥ ୪ ॥
ମନୁ ବୈରାଗୀ ହଉମୈ ତିଆଗୀ ॥ ଘଟି ଘଟି ମନସା ଦୁବିଧା ଲାଗୀ ॥
ରାମ ରସାଇଣୁ ଗୁରମୁଖି ଚାଖୈ ॥ ଦରି ଘରି ମହଲୀ ହରି ପତି ରାଖୈ ॥ ୫ ॥
ଇହୁ ମନୁ ରାଜା ସୂର ସଂଗ୍ରାମି ॥ ଇହୁ ମନୁ ନିରଭଉ ଗୁରମୁଖି ନାମି ॥
ମାରେ ପଂଚ ଅପୁନୈ ବସି କୀଏ ॥ ହଉମୈ ଗ୍ରାସି ଇକତୁ ଥାଇ କୀଏ ॥ ୬ ॥
ଗୁରମୁଖି ରାଗ ସୁଆଦ ଅନ ତିଆଗେ ॥ ଗୁରମୁଖି ଇହୁ ମନୁ ଭଗତୀ ଜାଗେ ॥
ଅନହଦ ସୁଣି ମାନିଆ ସବଦୁ ବୀଚାରୀ ॥ ଆତମୁ ଚୀନ୍ହି ଭଏ ନିରଂକାରୀ ॥ ୭ ॥
ଇହୁ ମନୁ ନିରମଲୁ ଦରି ଘରି ସୋଈ ॥ ଗୁରମୁଖି ଭଗତି ଭାଉ ଧୁନି ହୋଈ ॥
ଅହିନିସି ହରି ଜସୁ ଗୁରପରସାଦି ॥ ଘଟି ଘଟି ପ୍ରଭୁ ଆଦି ଜୁଗାଦି ॥ ୮ ॥
ରାମ ରସାଇଣି ଇହୁ ମନୁ ମାତା ॥ ସରବ ରସାଇଣୁ ଗୁରମୁଖି ଜାତା ॥
ଭଗତି ହେତୁ ଗୁର ଚରଣ ନିବାସା ॥ ନାନକ ହରି ଜନ କେ ଦାସନି ଦାସା ॥ ୯ ॥ ॥

ଆସା ଅସଟପଦୀଆ

: ୧୪୫ :

ତରବରୁ କାଇଆ ପଂଖି ମନୁ ତରବରି ପଂଖୀ ପଂଚ ॥
ତତୁ ଚୁଗହି ମିଲି ଏକସେ ତିନ କଉ ଫାସ ନ ରଂଚ ॥

: ୧୪୩ :

ତମର ବସ୍ତ୍ରରେ ରକ୍ତ ଲାଗିଗଲେ, ତାହା ଅପବିତ୍ର ହୋଇଗଲା ବୋଲି ତମେ ମନେ କର । ତେବେ ଯେଉଁ ଲୋକ ପ୍ରତ୍ୟହ ମନୁଷ୍ୟ-ରକ୍ତ ପାନ କରୁଛି, ସେ ପବିତ୍ର ହେବା ଦୂରେ ଥାଉ, ନିର୍ମଳଚିତ୍ତ ହେବ ସେ କିପରି ? ନାନକଙ୍କର କଥନ ଏହି ଯେ, ତମେ କେବଳ ସେତିକିବେଳେ ଖୋଦାର ନାମ ନେଇପାରିବ, ଯେତେବେଳେ ତମର ଅଭ୍ୟନ୍ତର ବିଶୁଦ୍ଧ ଥିବ । ଅନ୍ୟପକ୍ଷରେ କେବଳ ଦୁନିଆକୁ ଭୁଲେଇବା ପାଇଁ ଈଶ୍ୱରଭକ୍ତ ଦେଖେଇ ହେବା, ଅକ୍ଷମଣୀୟ ମିଥ୍ୟା କର୍ମ ।

: ୧୪୪ :

ଶକ୍ତି-ଉପାସକର ମନ-ହସ୍ତୀ ସର୍ବଦା ମତ୍ତ ରହିଥାଏ, ଏବଂ ମାୟା-ମୋହର ଜଙ୍ଗଲରେ ଅସ୍ଥିର ହୋଇ ଅତି-ତପ୍ତ ହେଉଥାଏ । କିନ୍ତୁ ଗୁରୂପଦେଶରେ ନିଷ୍ଠାବାନ ସାଧକ ନିଜର ରାସ୍ତା ଓ ଘର ସହଜରେ ଖୋଜି ପାଇଥାଏ । ଗୁରୂପଦେଶ ବିନା ମନ ଲକ୍ଷ୍ୟ ସ୍ଥିର କରି ପାରେନା । ହେ ଭାଇ ! ତେଣୁ ସ୍ମରଣ କର ବିଗ୍ରହର ଅତି ନିର୍ମଳ ରାମ-ନାମ; କାରଣ ରାମନାମ ବ୍ୟତୀତ ଏ ସଂସାରର ସବୁ କିଛି କେବଳ କିଟୁ ଅହଙ୍କାର, ଯାହା ସର୍ବଥା ପରିତ୍ୟାଜ୍ୟ । ଏପ୍ରକାର ମନ ତ ସାଂସାରିକ ମୋହ-ମୂଢ଼, ସେ ସ୍ଥିର ରହିବ କିପରି ? ଯେଉଁ ମନ ଅଜ୍ଞତାରେ ପୂର୍ଣ୍ଣ, ତାହା ସେ ବାରମ୍ବାର ମୃତ୍ୟୁ-ଯନ୍ତ୍ରଣା ଭୋଗ କରିବ, ଏହା ନିଃସନ୍ଦେହ । ପ୍ରଭୁଙ୍କର କୃପା ହେଲେ ହିଁ ଭେଟ ହୋଇଥାନ୍ତି ସଦ୍‌ଗୁରୁ, ଯେ କି ସତ୍ୟ ଦେଇ କାଳରୂପକ କଣ୍ଟକ କିପରି ବିନଷ୍ଟ ହେବ, ତା ବତାଇ ଦେଇଥାନ୍ତି । ଆମର ମନ, କର୍ମ-ଧର୍ମର ସଂଚାଳକ, ଏହା ନିର୍ମିତ ପଞ୍ଚ-ତତ୍ତ୍ୱ ଦେଇ, ଏବଂ ଏହା ଶାକ, ଲୋଭୀ ଓ ମୂଢ଼; କିନ୍ତୁ ଏପ୍ରକାର ସ୍ୱଭାବ ମନ ମଧ୍ୟ ସୁନ୍ଦର ହୋଇଉଠିବ ଯଦି ତାହା ପ୍ରଭୁଙ୍କ ନାମ-ଜପ ଆରମ୍ଭ କରିଦିଏ । ଗୁରୂପଦିଷ୍ଟର ମନ ଆପଣା ଲକ୍ଷ୍ୟ ଓ ସ୍ଥାନ ସହଜରେ ପାଇପାରିବ, ଏବଂ ସାଧକ ତ୍ରିଭୁବନର ଜ୍ଞାତା ହୋଇଉଠିବ,—ଏପ୍ରକାର ମନ ଯୋଗୀ, ଭୋଗୀ ଓ ତପସ୍ୱୀ । ଗୁରୁ-ନିର୍ଦ୍ଦିଷ୍ଟ ଏ ମନ ଚିହ୍ନିପାରେ ନିଜକୁ ଓ ଈଶ୍ୱରଙ୍କୁ । ପ୍ରକୃତ ବୈରାଗୀ ମନ ସକଳ ଅହମିକାକୁ ପରିତ୍ୟାଗ କରେ ଏବଂ ପରିତ୍ୟାଗ କରେ ଘଟ-ଘଟରେ ଥିବା ମାନସିକ ଦ୍ୱିଧାକୁ । ଗୁରୂପଦିଷ୍ଟ ଲୋକ ହିଁ ରାମ-ରସାୟନର ସ୍ୱାଦ ପାଇଥାଏ । ଇହ ଓ ପର ଉଭୟ ଲୋକର ଏ ଲୋକର ସମ୍ମାନ ସ୍ୱୟଂ ହରି ରକ୍ଷା କରିଥାନ୍ତି । ଜାଣ ଭାଇ, ଏପରି ମନ ରାଜା ଓ ସଂଗ୍ରାମ-ଶୂର, କେବଳ ନାମବଳରେ ଓ ଗୁରୁକୃପାରେ ସେ ହୋଇଉଠେ ଅକୁତୋଭୟ । ସେ ଲୋକ ଆଭ୍ୟନ୍ତରୀଣ ପଂଚକୁ ପରାଜିତ କରି ନିଜର ବଶୀଭୂତ କରି ରଖେ ଏବଂ ଗୋଟିଏ ଗ୍ରାସରେ ଭକ୍ଷଣ କରିପକାଏ ଅହଂଭାବକୁ । ଗୁରୁମାର୍ଗୀ ଅନ୍ୟ ସକଳ ରାଗ-ସ୍ୱାଦକୁ ପରିତ୍ୟାଗ କରି ଚିତ୍ତକୁ ରଖେ କେବଳ ଭକ୍ତିରେହିଁ ସଦା-ଜାଗ୍ରତ । ସେ କରିଚାଲେ ଅନାହୃତ ଧ୍ୱନିର ଶ୍ରବଣ, ମନନ, ଚିନ୍ତନ, ଏବଂ ଆତ୍ମଦର୍ଶନ କରି ହୋଇଉଠେ ସ୍ୱୟଂ ନିରଙ୍କାର । ସେ ପ୍ରକାର ମନ ନିର୍ମଳ ଭାବରେ ସର୍ବତ୍ର ଦେଖିପାରେ କେବଳ ସେହି ଏକକଙ୍କୁ । ଗୁରୂପଦେଶ-ନିଷ୍ଠା ତାକୁ ତନ୍ମୟ କରି ରଖାଏ ଭାବ-ଭକ୍ତିରେ । ଗୁରୁକୃପାରେ ସେ ମନ ଅହର୍ନିଶି ମଗ୍ନ ରହେ ହରିନାମ-ଯଜ୍ଞରେ ଏବଂ ଆଦି ଯୁଗାଦିରୁ ଘଟ-ଘଟରେ ପରିବ୍ୟାପ୍ତ ହରିଙ୍କୁ ସେ ଅନୁଭବ କରିଥାଏ । ସେ ମନ ରାମ-ରସାୟନପାନରେ ହିଁ ମତ୍ତ ହୋଇଉଠେ, ଏବଂ ଗୁରୁକୃପାରୁ ସେ ଜାଣିପାରେ ସର୍ବ-ରସାୟନର ସ୍ୱାଦ । ଏପ୍ରକାର ଭକ୍ତ ପାଇଁ, ଯାଅ ସଦ୍‌ଗୁରୁଚରଣରେ ଆଶ୍ରୟ ନିଅ । ନାନକର କଥନ ଏହି ଯେ, ସେ ଏପ୍ରକାର ହରିଜନର ବିନୀତ ଦାସାନୁଦାସ ମାତ୍ର ।

: ୧୪୫ :

ଆମର ଏହି କାୟା ଏକ ବୃକ୍ଷ ମାତ୍ର; ମନ ତହିଁରେ ପକ୍ଷୀ, ଆଉ ପାଞ୍ଚଟି ପକ୍ଷୀ ସହିତ । ଏମାନେ ସମସ୍ତେ ଯଦି କେବଳ ତତ୍ତ୍ୱ-ଫଳ ଖାଉଥାନ୍ତେ, ତେବେ ଜୀବ କେବେହେଲେ ସଂସାର-ଜାଲରେ ପଡ଼ନ୍ତା ନାହିଁ । କିନ୍ତୁ ଯଦି

ଢଢ଼ନ୍ଧ ତ ବେଗୁଲ ବେଗୁଲେ ତାକନ୍ଧ ଗ୍ରେଗ ଘଣୀ ॥
ପଂଙ୍କ ଗୁଟେ ଫ ସ୍ମ ପଢ଼ୀ ଅବଗୁଣି ଖିଡ଼ ବଣୀ ॥
ବନୁ ସାଚେ କଉ ଛୁଟୈଐ ହରି ଗୁଣ କରମି ମଣୀ ॥
ଆପି ଛଡ଼ାଏ ଛୁଟୀଐ ବଡ଼ା ଆପି ଧଣୀ ॥
ଗୁରପରସାଦୀ ଛୁଟୀଐ କିରପା ଆପି କରେଇ ॥
ଅପଣୈ ହଥି ବଡ଼ାଈଆ ଜୈ ଭାବୈ ତୈ ଦେଇ ॥ ୫୩ ॥

ରାମକଲୀ ଦଖଣୀ, ଓଂଙ୍କାର

: ୧୪୬ :

ଭୁଲୀ ଭୁଲୀ ମୈଂ ଫିରୀ ପାଧରୁ କହୈ ନ କୋଇ ॥
ପୁଛହୁ ଜାଇ ସିଆଣିଆ ଦୁଖୁ କାଟୈ ମେରା କୋଇ ॥
ସତିଗୁରୁ ସାଚା ମନି ବସୈ ସାଜନୁ ଉତ ହୀ ଠାଇ ॥
ନାନକ ମନୁ ତ୍ରିପତାସୀଐ ସିଫତୀ ସାଚେ ନାଇ ॥ ୧ ॥

ବାର ମାରୂ ପଉଡ଼ୀ ୩ ସଲୋକ

: ୧୪୭ :

ହୁକମି ରଜାଈ ସାଖତୀ ଦରଗହ ସଚୁ କବୂଲୁ ॥
ସାହିବୁ ଲେଖା ମଂଗସୀ ଦୁନୀଆ ଦେଖି ନ ଭୂଲୁ ॥
ଦିଲ ଦରବାନୀ ଜୋ କରେ ଦରବେସୀ ଦିଲୁ ରାସି ॥
ଇସକ ମୁହବତି ନାନକା ଲେଖା କରତେ ପାସି ॥ ୧ ॥
ଅଲଗଉ ଜୋଇ ମଧୂକଡ଼ଉ ସାରଂଗପାଣି ସବାଇ ॥
ହୀରେ ହୀରା ବେଧିଆ ନାନକ କଂଠି ସମାଇ ॥ ୨ ॥

ବାର ମାରୂ ପଉଡ଼ୀ ୧୨ ସଲୋକ

: ୧୪୮ :

ଖେଲତଣି ଭୈ ମନି ବସୈ ହେକୈ ପାଧର ହୀଡ଼ୁ ॥
ଅତି ତାହପଣି ଦୁଖୁ ଘଣୋ ତୀନେ ଥାଵ ଭରୀଡ଼ୁ ॥ ୧ ॥

ବାର ମାରୂ ପଉଡ଼ୀ ୧୪ ସଲୋକ

: ୧୪୯ :

ଉଜଲୁ ଜରୈ ତ ନଉ କୁଲ ବଂଧୁ ॥ ପୂଜୈ ପ୍ରାଣ ହୋଵୈ ଥିରୁ କଂଧୁ ॥
କହଁ ତେ ଆଇଆ କହାଁ ଏହୁ ଜାଣୁ ॥ ଜୀଵତ ମରତ ରହୈ ପରଵାଣୁ ॥
ହୁକମୈ ବୂଝੈ ତତୁ ପଛାଣୈ ॥ ଇହୁ ପରସାଦୁ ଗୁରୁ ତେ ଜାଣୈ ॥
ହୋଂଦା ଫଡ଼ୀଅଗୁ ନାନକ ଜାଣୁ ॥ ନା ହଉ ନା ମୈଂ ଜୂନୀ ପାଣୁ ॥ ୨ ॥

ବାର ମଲାର ପଉଡ଼ୀ ୨୪ ସଲୋକ

ଅନ୍ୟ ଖାଦ୍ୟ ଅନ୍ୱେଷଣରେ ଏମାନେ ଦ୍ରୁତବେଗରେ ଖାଲି ଏଠିକି-ସେଠିକି ଉଡ଼ିବୁଲିବେ, ତେବେ ଉଡ଼ି ଉଡ଼ି ହୁଏତ ଡେଣା ଭାଙ୍ଗିଯିବ, ନଚେତ୍ କାଲରେ ଧରାପଡ଼ିଯିବେ, ଅଥବା ଏହି ଅବଗୁଣ ଯୋଗୁଁ ହେବେ ଅନ୍ୟ କୌଣସି ନା କୌଣସି ସଙ୍କଟର ସମ୍ମୁଖୀନ । ଏ ଜଗତରେ ସତ୍ୟାଶ୍ରୟ ବିନା କେହି ପାଇବେ ନାହିଁ ମୁକ୍ତି, ଏବଂ ଏଟି ହରିଗୁଣ ଗାନଠାରୁ ଉତ୍ତମତର କର୍ମ ଆଉ ନାହିଁ । ଶ୍ରେଷ୍ଠ କର୍ତ୍ତା ହିଁ ଏକ ଭଗବାନ୍ ସ୍ୱାମୀ, ମୁକ୍ତି ସମ୍ଭବେ କେବଳ ତାଙ୍କରି କୃପାରୁ । ଗୁରୁ ଏହି କୃପା ଆୟୋଜନ କରି ଦେଇଥାନ୍ତି ମାତ୍ର; କିନ୍ତୁ ପ୍ରକୃତ କୃପାର ଉତ୍ସ ହିଁ ଏକମାତ୍ର ଭଗବାନ । ସକଳ ବରଦାନ କେବଳ ତାଙ୍କରି ହାତରେ । ଯାହାଠି ସେ ପ୍ରସନ୍ନ ହୁଅନ୍ତି, ସେହି କେବଳ ପାଇଥାଏ କୃପା ।

: ୧୪୬ :

ମତେ କେହି ଠିକ୍ ରାସ୍ତା ବତାଇ ନ ଦେଇଥିବା ହେତୁ, ମୁଁ ପଥଭ୍ରଷ୍ଟ ହୋଇ ବହୁକାଳ ଏଣେତେଣେ ଘୂରିଲି, ବହୁ ଆପାତ-ବୁଦ୍ଧିମାନ ଯାତ୍ରୀଙ୍କୁ ପଚାରିଲି, "ଏ ଭାଇ, ମୁଁ ଏ ଅସୁବିଧାରୁ ମୁକ୍ତି ପାଇବି କପରି ?" ସେମାନେ କହିଲେ, "ତମ ମନରେ ସଦ୍‌ଗୁରୁ ପ୍ରତିଷ୍ଠିତ ହେଲେ, ସ୍ୱୟଂ ସର୍ବସ୍ୱାମୀ ତମକୁ ଉପଲବ୍ଧ ହେବେ ।" ନାନକର କଥନ ଏହି କି, ସତ୍ୟର ନାମର ଗୁଣଗାନରେ ହିଁ ମନର ପ୍ରକୃତ ତୃପ୍ତି ଆସେ ।

: ୧୪୭ :

ମୋର ଏହି ସକଳ ରଚନା, କେବଳ ଈଶ୍ୱରାଦେଶର ଫଳ, ଏବଂ ସେହି ପରମେଶ୍ୱରଙ୍କ ଚରଣତଳେ ଏକମାତ୍ର ମାନ୍ୟ ଗୁଣ ହେଲା ସତ୍ୟ । ଶେଷ ମୁହୂର୍ତ୍ତରେ ଆମ ପ୍ରତ୍ୟେକଙ୍କୁ ସେହି ପରମେଶ୍ୱରଙ୍କ ନିକଟରେ ଇହଜୀବନର ଜମା-ଖର୍ଚ୍ଚ-ଫର୍ଦ୍ଦ ଦେଖାଇବାକୁ ହେବ । ତେଣୁ ହେ ଭାଇ, ଦୁନିଆର ବାହ୍ୟ ଦୃଶ୍ୟରେ ଭୁଲିଯାଅନା । ମନଦ୍ୱାରା ପରିଚାଳିତ ନ ହୋଇ, ବରଂ ମନର ଦରଓ୍ୱାନ ହୁଅ ଏବଂ ତାକୁ ସର୍ବଦା ପରିଚାଳିତ କର କେବଳ ସନ୍ମାର୍ଗରେ । ନାନକର କଥନ ଏହି ଯେ, କର୍ତ୍ତା ପ୍ରଭୁ ଆମର ସେହି ଜମା-ଖର୍ଚ୍ଚ-ଫର୍ଦ୍ଦରୁ ବୁଝିନେଇଥାନ୍ତି ଆମମାନଙ୍କର ଧନ-ପ୍ରାଧାନ୍ୟର ନୁହେଁ, କେବଳ ପ୍ରେମ-ପ୍ରୀତିର ପଞ୍ଜୀ ହିଁ ସେ ଲେଖିରଖିଥାନ୍ତି । ତେଣୁ ସଂସାରଲୋଭରେ ନିଜକୁ ହଜାଇ ନ ଦେଇ, ମଧୁକର ପରି ନିର୍ଲିପ୍ତ ଭାବରେ ହିଁ ପ୍ରେମର ମଧୁ ସଂଗ୍ରହ କରି ଚାଲ; ଦେଖିବ, ତମେ ସର୍ବସ୍ଥାନରେ ହିଁ ଉପଲବ୍ଧି କରିପାରୁଛ ଶାରଂଗପାଣିଙ୍କର ଅବସ୍ଥିତି । ନାନକର କଥନ ଏହି ଯେ, ହରିଙ୍କୁ କେବଳ ହରିଦ୍ୱାରା କଣା କରିହେବ, ଏବଂ କେବଳ ତାହା ହିଁ କରିପାରିଲେ ତାହା ଗଳାରେ ମାଳା ହୋଇ ଆମକୁ ଅଳଂକୃତ କରିବ ।

: ୧୪୮ :

ହେ ଭାଇ, ଏ ଜଗତରେ ଈଶ୍ୱରଙ୍କ ନିକଟକୁ ଯିବାର ମାର୍ଗ କେବଳ ଗୋଟିଏ, ଏବଂ ଏହି ପଥ ହେଲା ମନକୁ ଭୟ ଓ ଦ୍ୱେଷରୁ ମୁକ୍ତ ରଖ । ଅନ୍ୟପ୍ରତି ଈର୍ଷା ଆଣିଦିଏ କେବଳ ଘୋର ଦୁଃଖ,—ସେଥିରେ ମନ, ବଚନ ଓ କର୍ମ ଏ ତିନିହେଁ ଭ୍ରଷ୍ଟ ହୋଇଯାନ୍ତି ।

: ୧୪୯ :

ଯାହା ଅସହନୀୟ ବୋଲି ଭାବୁଛ, ତାକୁ ସହିଗଲେ, ପ୍ରଭୁ ପରମେଶ୍ୱରଙ୍କର ପୂଜା କରି ଜାଣିଲେ, ତୁମର ତନୁ ହୋଇଯିବ ଆପେ ଆପେ ସ୍ଥିର । କେବେ ଚିନ୍ତା କରିଛ କି କେଉଁଠୁ ଆସିଲ ଓ ଯିବ ପୁଣି ଏଠୁ କେଉଁଠିକି ? ଜୀବନ ଓ ମରଣ ଉଭୟରେ, ସେହି ଜିଜ୍ଞାସା ହିଁ ତୁମକୁ ଦେବ ମାନ୍ୟତା । କେବଳ ଗୁରୁଙ୍କ ପ୍ରସାଦରେ ହିଁ ତମେ ଜାଣିପାରିବ ପ୍ରଭୁଙ୍କ ଆଦେଶ, ଓ ଜୀବନ-ମରଣର ତତ୍ତ୍ୱ । ନାନକ ପୁଣି କହେ ଯେ, ଯେଉଁ ପାମର ସର୍ବଦା 'ମୁଁ' 'ମୁଁ' ହୁଏ, ସେ ରହିବ ସେହି ଅହମିକାରେ ବନ୍ଧ । ଯେ ଲୋକକୁ ଜୀବନ-ମରଣର ଜାଲ ବାନ୍ଧିପାରିବନି, ଯେ କହିପାରେ "ମୁଁ ନୁହେଁ, ମୁଁ ନୁହେଁ, ସକଳ କର୍ମର କର୍ତ୍ତା କେବଳ ଏକ ପରମେଶ୍ୱର ।"

## ମିଥ୍ୟା ଅଗୁଆ

: ୧୫୦ :

ଜା ହଉ ନାହି ତା କଆ ଆଖା କହୁ ନାହି କଆ ହୋବା ॥
ଜାତା କରଣା କହ୍ୱଆ କଥନା ଭରଆ ଭର ଭର ଧୋବାଁ ॥
ଆପି ନ ବୁଝା ଲୋକ ବୁଝାଇ ଐସା ଆଗୃ ହୋବାଁ ॥
ନାନକ ଅଂଧା ହୋଇ କେ ଦସେ ରାହେ ସଭସୁ ମୁହାଏ ସାଥୈ ॥
ଅଗେ ଗଇଆ ମୁହେ ମୁହି ପାହି ସୁ ଐସା ଆଗୃ ଜାପେ ॥ ୧ ॥

ବାର ମାଝ ପଉଡ଼ୀ ୨ ସଲୋକ

: ୧୫୧ :

ଅଂଧା ଆଗୃ ଜେ ଥୀଐ କଉ ପାଧରୁ ଜାଣୈ ॥
ଆପି ମୁସେ ମତ ହୋଛୀଐ କଉ ରହୁ ପଛାଣୈ ॥
କଉ ରାହ ଜାବେ ମହଲୁ ପାବେ ଅଂଧ କୀ ମତ ଅଂଧଲୀ ॥
ବିଣୁ ନାମ ହର କେ କୁଛ ନ ସୁଝୈ ଅଂଧୁ ବୁଡୋ ଧଂଧଲୀ ॥
ଦିନୁ ରାତ ଚାନଣୁ ଚାଉ ଉପଜୈ ସବଦୁ ଗୁର କା ମନ ବସେ ॥
କର ଜୋଡ଼ ଗୁର ପହି କର ବିନଂତୀ ରାହୁ ପାଧରୁ ଗୁରୁ ଦସେ ॥ ୨ ॥

ସୁହୀ ଛନ୍ତ

## ମର୍ତ୍ତିପୂଜା

: ୧୫୨ :

ହିନ୍ଦୂ ମୂଲେ ଭୂଲେ ଅଖୁଟୀ ଜାହୀ ॥ ନାରଦ କହିଆ ସି ପୂଜ କରାଂହୀ ॥
ଅଂଧେ ଗୁଂଗେ ଅଂଧ ଅଂଧାରୁ ॥ ପାଥରୁ ଲେ ପୂଜହି ମୁଗଧ ଗବାରୁ ॥
ଓହି ଜା ଆପି ଡୁବେ ତୁମ କହା ତରଣହାରୁ ॥ ୦ ॥

ବାର ବିହାଗଡ଼ା ପଉଡ଼ୀ ୨୦ ସଲୋକ

: ୧୫୦ :

ମୁଁ ତ ମୁଁ ନୁହେ, 'ମୋର' ବୋଲି କି ଉପଦେଶ ଦେବି ଅନ୍ୟକୁ ? ମୁଁ ତ କିଛିହିଁ ନୁହେଁ । ମୁଁ କେଉଁ ଜଣ ହେବି ବୋଲି ଆଶା କରିପାରେ ? ପ୍ରଭୁଙ୍କର ଯାହା ନିର୍ଦ୍ଦେଶ, ତାହାହିଁ ମୋର କର୍ମ, ସେ ମତେ ଯେପରି କୁହାଉଛନ୍ତି, ତାହାହିଁ ମୋର କଥନ । ମୋଠି ପୁଣି ଏତେ ପୋଗ୍ୟ ମଳ ଭର୍ତ୍ତିରହିଛି ଓ ଭରଭର ଗନ୍ଧାଉଛି ଯେ ତାକୁ ମୁଁ ବାରମ୍ବାର ଧୋଇଚାଲିଛି । ନିଜେ ତ କିଛି ଜାଣେନା, ଅଥଚ ଅନ୍ୟ ଲୋକଙ୍କୁ ଦେଉଛି ଜ୍ଞାନ—ମୁଁ ଏଇ ପ୍ରକାର ପଥ-ପ୍ରଦର୍ଶକ । ନାନକର କଥନ ଏହି ଯେ, ଏ ଜଗତରେ ବହୁ ଅନ୍ଧହିଁ ମାର୍ଗ-ପ୍ରଦର୍ଶକର କାମ କରିଥାନ୍ତି; କିନ୍ତୁ ଏପ୍ରକାର ନିର୍ଦ୍ଦେଶକଙ୍କ ଯୋଗ୍ୟ ଶିଷ୍ୟ ସବୁ ଲୋଟା ସହିତ ପାଣିରେ ବୁଡ଼ିମରିବାର ଆଶଙ୍କା । ଏସବୁ ପରଲୋକରେ ନିଶ୍ଚୟ ଦଣ୍ଡିତ ହେବେ; କାରଣ ଏ ପ୍ରକାର ଅଜ୍ଞ ନେତାମାନଙ୍କର ତାହାହିଁ ଉପଯୁକ୍ତ ଦଣ୍ଡ ।

: ୧୫୧ :

ଯଦି ବାଟ-କଢ଼ାଳି ନିଜେ ଅନ୍ଧ, ସେ ତୁମକୁ ମାର୍ଗ ବତାଇବ କିପରି ? ସେ ତ ନିଜେ ବାଟବଣା ହେବ, ସେ କାହୁଁ ତୁମକୁ ଠିକ୍ ରାସ୍ତାକୁ ନେଇପାରିବ ? ତେବେ କିପରି ଠିକଣା ରାସ୍ତାରେ ଯାଇ ପହଞ୍ଚିବା ପ୍ରଭୁଙ୍କ ପ୍ରାସାଦରେ ? ଅନ୍ଧ ଲୋକର ମତିହିଁ ଅନ୍ଧ, ଏବଂ ହରିନାମ ବିନା ଏ ଜଗତର ରହସ୍ୟ କିଏ ଜାଣିପାରିବ ? ମତି-ଅନ୍ଧ ଲୋକ ନିଜେଇ ଉବେଇ-ଟୁବେଇ ହୋଇ ମରିବ ଜଞ୍ଜାଳ ଜଳରେ । କିନ୍ତୁ ଗୁରୁପ୍ରଦତ୍ତ ମନ୍ତ୍ର ଓ ଉପଦେଶ ଅନ୍ତରରେ ପ୍ରତିଷ୍ଠିତ ହୋଇଗଲେ, ଅହୋରାତ୍ର ଉତ୍ପାଦିତ ହେବ ପ୍ରଭୁଙ୍କ ପ୍ରତି ଉତ୍ସାହ ଓ ପ୍ରକଟିତ ହେବ ଆତ୍ମା । ହେ ଭାଇ, ଗୁରୁଙ୍କୁ ହାତ ଯୋଡ଼ି ବିନମ୍ରରେ ପ୍ରାର୍ଥନା କର, ସେହିହିଁ ତୁମକୁ ସାଧନାର ମାର୍ଗ ଠିକ୍ ବତାଇ ଦେବେ ।

: ୧୫୨ :

ହିନ୍ଦୁ ନିଜକୁ ଭୁଲିଯାଇଛି, ଯାଇଛି ସେ ଭୁଲି, ଏବଂ ଚାଲିଛି କେବଳ କୁମାର୍ଗରେ । କେଉଁ କାଳେ ନାରଦ କ'ଣ କହିଯାଇଥିଲେ, ସେ ସେହି ଅନୁସାରେହିଁ କିଛି ନ ବିଚାରି ପୂଜା କରିଚାଲିଛି—ମୂଢ଼, ମୂର୍ଖ ହିନ୍ଦୁ ଆଜି ପୂଜା କରୁଛି ପଥରକୁ । ନିଜେ ଅନ୍ଧ ଓ ବଧିର; ସେ ତେଣୁ ଘୂରିବୁଲୁଛି ଗହନ ଅନ୍ଧକାରରେ । ଯେ ସନ୍ତରଣ ନ ଜାଣି ନିଜେ ବୁଡ଼ିମରିବା ଉପରେ, ସେ କିପରି ଅନ୍ୟଙ୍କୁ ବୁଡ଼ିମରିବାରୁ ଉଦ୍ଧାର କରି ପାରିବ ?

: ୧୫୩ :

ଘର ନାରାଇଣୁ ସଭା ନାଲି ॥ ପୂଜ କରେ ରଖୈ ନାବାଲି ॥
କୁଂଗୂ ଚଂନଣୁ ଫୁଲ ଚଢ଼ାଏ ॥ ପୈରୀ ପୈ ପୈ ବହୁତୁ ମନାଏ ॥
ମାଣୂଆ ମଂଗି ମଂଗି ପୈନ୍ହୈ ଖାଇ ॥ ଅଂଧୀ କଂମୀ ଅଂଧ ସଜାଇ ॥
ଭୁଖିଆ ଦେନ୍ହ ନ ମରଦିଆ ରଖୈ ॥ ଅଂଧା ଝଗଡ଼ା ଅଂଧୀ ସଥୈ ॥ ୧ ॥

ବାର ସାରଙ୍ଗ ପଉଡ଼ୀ ୯, ସଲୋକ

## ନିରର୍ଥକ ରୀତି-ନୀତି

: ୧୫୪ :

ଜେ ମୋହାକା ଘରୁ ମୁହୈ ଘରୁ ମୁହ୍ଵ ପିତରୀ ଦେଇ ॥
ଅଗୈ ବସତୁ ସିଞ୍ଜାଣୀଐ ପିତରୀ ଚୋର କରେଇ ॥
ବଢ଼ୀଅହି ହଥ ଦଲାଲ କେ ମୁସଫୀ ଏହ କରେଇ ॥
ନାନକ ଅଗୈ ସୋ ମିଲୈ ଜି ଖଟେ ଘାଲେ ଦେଇ ॥ ୧ ॥

ବାର ଆସା ପଉଡ଼ୀ ୧୧, ସଲୋକ

: ୧୫୫ :

ଦୀବା ମେରା ଏକୁ ନାମୁ ଦୁଖୁ ବିଚି ପାଇଆ ତେଲୁ ॥
ଉନି ଚାନଣି ଓହୁ ସୋଖିଆ ଚୂକା ଜମ ସିଉ ମେଲୁ ॥ ୧ ॥
ଲୋକା ମତ କୋ ଫକଡ଼ି ପାଇ ॥
ଲଖ ମଡ଼ିଆ କରି ଏକଠେ ଏକ ରତୀ ଲେ ଭାହି ॥ ୧ ॥ ରହାଉ ॥
ପିଂଡୁ ପତଲି ମେରୀ କେସଉ କିରିଆ ସଚୁ ନାମୁ କରତାରୁ ॥
ଐଥୈ ଓଥୈ ଆଗୈ ପାଛୈ ଏହୁ ମେରା ଆଧାରୁ ॥ ୨ ॥
ଗଂଗ ବନାରସି ସିଫତି ତୁମାରୀ ନାବୈ ଆତମ ରାଉ ॥
ସଚା ନାବଣୁ ତାଂ ଥୀଐ ଜାଂ ଅହିନିସି ଲାଗୈ ଭାଉ ॥ ୩ ॥
ଇକ ଲୋକୀ ହୋରୁ ଛମିଛରୀ ବ୍ରାହମଣୁ ବଟି ପିଂଡୁ ଖାଇ ॥
ନାନକ ପିଂଡୁ ବଖସୀସ କା କବହୂଂ ନିଖୂଟସି ନାହି ॥ ୪ ॥ ୨ ॥ ୩୨ ॥

ଆସା

: ୧୫୬ :

ଜେ କରି ସୂତକୁ ମଂନୀଐ ସଭ ତୈ ସୂତକୁ ହୋଇ ॥
ଗୋହେ ଅତୈ ଲକଡ଼ୀ ଅଂଦରି କୀଡ଼ା ହୋଇ ॥

: ୧୫୩ :

ଘରେ ଘରେ ନାରସୃଣ-ପ୍ରତିମା, ଯାହା ହିନ୍ଦୁ ପ୍ରତ୍ୟହ ଗାଧୋଇ-ପାଧୋଇ ପୂଜା କରେ, ସାଙ୍ଗ-ସାଥୀଙ୍କି ନେଇ ଭେଟିଦିଏ କେଶର, ଚନ୍ଦନ ଓ ଫୁଲ; ପ୍ରତିମାକୁ ପ୍ରସନ୍ନ କରିବା ଚେଷ୍ଟାରେ ବନ୍ଦଇ ତାର ଚରଣ । ସେହି ପୂଜକ ନାରସୃଣ ମନୁଷ୍ୟଙ୍କୁ ଭିକ୍ଷାକରି ପାଉଥିବା ପିନ୍ଧୁଛି ଓ ଭୋଜ୍ୟ ଖାଉଛି । ତେଣୁ ଅନ୍ଧକର୍ମର ଅନ୍ଧ ଦଣ୍ଡ ପାଉଛି ହିନ୍ଦୁ; କାରଣ ମୂର୍ତ୍ତି କେଉଁଠି କ୍ଷୁଧାତୁରଙ୍କୁ ଅନ୍ନ ଦେଇପାରିବ ? ବା ମରିଯାଉଥିବା ଲୋକଙ୍କୁ ବଞ୍ଚାଇ ପାରିବ ? ଅନ୍ଧ ଅଜ୍ଞମାନଙ୍କର ସଭାରେ ବହୁ ଅନ୍ଧ-ଝଗଡ଼ା ହୁଏ କେବଳ ଅନ୍ଧ-ଅଜ୍ଞ ବିଚାର ନେଇ ।

: ୧୫୪ :

ଯଦି କୌଣସି ଚୋର କୌଣସି ଲୋକର ଘର ଲୁଟ୍ କରିନିଏ ଏବଂ ଚୋରମାଲ୍ ସବୁ ତାର ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ କରିଦିଏ ଅର୍ପଣ, ତେବେ କ'ଣ ପ୍ରକୃତରେ ପରଲୋକରେ ଯାଇ ସେସବୁ ବସ୍ତୁ ପହଞ୍ଚିଯିବ ? ଏ ବ୍ୟାପାରରେ ପ୍ରକୃତ ନ୍ୟାୟ-ବିଚାର ହେବ—ଯଦି ଚୋରି କରିଥିବା ଲୋକର ହାତ ଦୁଇଟାକୁ କାଟି ଦେଇ, କେବଳ ତାକୁ ନୁହେଁ, ତାର ପିତୃପୁରୁଷଙ୍କୁ ମଧ୍ୟ ଚିରକାଳ ଚିହ୍ନିତ କରି ରଖାଯାଏ ଚୋର ବୋଲି । ନାନକର ଘୋଷଣା ଏହି ଯେ, ସେହି କେବଳ ପରଲୋକରେ କୁଶଳ ଆଶା କରିପାରେ, ଯେ ନିଜ ଶ୍ରମରେ ଧନାର୍ଜନ କରି ସ୍ୱେଚ୍ଛାରେ ଦାନ କରିଥାଏ ।

: ୧୫୫ :

ମୋର ଏକ ନାମ ହେଲା ପ୍ରଦୀପ, ଯାହା ଭର୍ତ୍ତି ହୋଇଥିଲା କେବଳ ଦୁଃଖ-ତେଲରେ; ତେଣୁ ଦୀପ ଭଲ ଆଲୁଅ ଦେଇପାରିଲାନି, ଅଥଚ ତେଲ ଶୁଖିଗଲା ଏବଂ ଶେଷରେ ମୁକାବିଲା ହେଲା ଯମ ସାଥିରେ । ହେ ଭାଇ, ଏ ପ୍ରକାର ଅସାର ଘଟଣାକୁ କରି ସର୍ବଥା ପରିହାର । ଲକ୍ଷେ ହେବ କାଷ୍ଠ-ଖଣ୍ଡ ଏକଜ ଥିଲେ ମଧ୍ୟ ସାମାନ୍ୟ ଅଗ୍ନି କଣା ସେ ସମସ୍ତଙ୍କୁ ଧ୍ୱଂସ କରିଦେବ । ମୋର ପିଣ୍ଡ-ପୂଜ ହେଉଛନ୍ତି କେଶବ, ତାଙ୍କର ସତ୍ୟ-ନାମ-ଜପ ହିଁ ମୋର କ୍ରିୟା-କର୍ମ । ମୋର ଆଗ, ପଛ ଓ ସର୍ବନ କେବଳ ସେହିହିଁ ଏକମାତ୍ର ଆଧାର । ହେ ପ୍ରଭୁ, ତୁମର ସ୍ତୁତି ମୋତେ ଲାଗେ ଯେପରି କାଶୀ-ବାହିନୀ ଗଙ୍ଗାରେ ମୋର ଆତ୍ମା ସ୍ନାନ କରୁଛି । ମୋର ବିଶ୍ୱାସ, ତାହାହିଁ ପ୍ରକୃତ ତୀର୍ଥସ୍ନାନ । ଯଦି ମୁଁ ଅହର୍ନିଶ ଲୀନ ରହେ ତମର ପ୍ରେମରେ । ଦେବତା ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସମର୍ପିତ ପିଣ୍ଡ ସବୁକୁ ବ୍ରାହ୍ମଣ ହିଁ ବନାଏ ଓ ଖାଇଯାଏ; କିନ୍ତୁ ନାନକର ଘୋଷଣା ଏହି ଯେ, ଈଶ୍ୱରଙ୍କ କରୁଣାର ପିଣ୍ଡ ଚିରସ୍ଥାୟୀ ଓ ଅକ୍ଷୁଣ୍ଣ ।

: ୧୫୬ :

ସୂତକଥା (ଜନ୍ମ-ଅଶୌଚ) ଯଦି ମାନ, ତେବେ ମନେ ରଖିଥିବ ଯେ ଏ ଜଗତରେ ସକଳ ସ୍ଥାନରେ ସୂତକା-ଦୋଷ ଲାଗିରହିଛି । ବାହାରକୁ ଜିଦା ଦେଖାଯାଉଥିବା କାଠ ଓ ପଥର ଭିତରେ ବି କୀଟ ସବୁ ଲଭ କରୁଛନ୍ତି

ଜେତେ ଦାଣେ ଅଂନ କେ ଜୀଆ ବାଝୁ ନ କୋଇ ॥
ପହିଲା ପାଣୀ ଜୀଉ ହୈ ଜିତୁ ହରିଆ ସଭୁ କୋଇ ॥
ସୂତକୁ କିଉ କରି ରଖୀଐ ସୂତକୁ ପଵୈ ରସୋଇ ॥
ନାନକ ସୂତକୁ ଏବ ନ ଉତରେ ଗିଆନୁ ଉତାରେ ଧୋଇ ॥ ୧ ॥
ମନକା ସୂତକୁ ଲୋଭୁ ହୈ ଜିହ୍ୱା ସୂତକୁ କୂଡୁ ॥
ଅଖୀ ସୂତକୁ ଵେଖଣା ପର ତ୍ରିଅ ପରଧନ ରୂପୁ ॥
କଂନୀ ସୂତକୁ କଂନି ପୈ ଲାଇତବାରୀ ଖାହି ॥
ନାନକ ହଂସା ଆଦମୀ ବଧେ ଜମପୁରି ଜାହି ॥ ୨ ॥
ସଭୋ ସୂତକୁ ଭରମୁ ହୈ ଦୂଜୈ ଲଗୈ ଜାଇ ॥
ଜଂମଣୁ ମରଣା ହୁକମୁ ହୈ ଭାଣୈ ଆଵୈ ଜାଇ ॥
ଖାଣା ପୀଣା ପବିତ୍ରୁ ହୈ ଦିତୋନୁ ରିଜକୁ ସଂବାହି ॥
ନାନକ ଜିନୀ ଗୁରମୁଖି ବୁଝିଆ ତିନ୍ହା ସୂତକୁ ନାହି ॥ ୩ ॥

ଵାର ଆସା ପଉଡ଼ୀ ୧୮ ସଲୋକ

: ୧୫୭ :

ନାଵଣ ଚଲେ ତୀରଥୀ ମନି ଖୋଟୈ ତନି ଚୋର ॥
ଇକୁ ଭାଉ ଲଥୀ ନାତିଆ ଦୁଇ ଭା ଚଡ଼ୀଅସୁ ହୋର ॥
ବାହରି ଧୋତୀ ତୂମଡ଼ୀ ଅଂଦରି ବିସୁ ନିକୋର ॥
ସାଧ ଭଲେ ଅଣନାତିଆ ଚୋର ସି ଚୋରା ଚୋର ॥ ୨ ॥

ଵାର ସୂହୀ ପଉଡ଼ୀ ୧୨ ସଲୋକ

: ୧୫୮ :

ସୁଇନେ କା ଚଉକା କଂଚନ କୁଆର ॥ ରୁପେ କୀଆ କାରା ବହୁତୁ ବିସଥାରୁ ॥
ଗଂଗା କା ଉଦକୁ କରଂତେ କୀ ଆଗି ॥ ଗରୁଡ଼ା ଖାଣା ଦୁଧ ସିଉ ଗାଡ଼ି ॥ ୧ ॥
ରେ ମନ ଲେଖୈ କବହୁ ନ ପାଇ ॥ ଜାମି ନ ଭିଜୈ ସାଚ ନାଇ ॥ ୧ ॥ ରହାଉ ॥
ଦସଅଠ ଲୀଖୈ ହୋଵହି ପାସି ॥ ଚାରେ ବେଦ ମୁଖାଗର ପାଠି ॥
ପୁରବୀ ନାଵୈ ବରନାଂ କୀ ଦାତି ॥ ବରତ ନେମ କରେ ଦିନ ରାତି ॥ ୨ ॥
କାଜୀ ମୁଲାଁ ହୋଵହି ସେଖ ॥ ଜୋଗୀ ଜଂଗମ ଭଗଵେ ଭେଖ ॥
କୋ ଗିହସ୍ତୀ କରମା କୀ ସଂଧି ॥ ବିନୁ ବୂଝେ ସଭ ଖଡ଼ୀଅସି ବଂଧି ॥ ୩ ॥

ଜନ୍ମ ଓ ମୃତ୍ୟୁ । ଆମେ ଯେଉଁ ଜଳ ପାନ କରୁ, ସେ ତ ସ୍ୱୟଂ ଏକ ଜୀବ ଏବଂ ଜୀବପୂର୍ଣ୍ଣ ସଜଳ ଶ୍ୟାମଳ ଉଦ୍ଭିଦ, ଯାହା ଜୀବନ ପାଆନ୍ତି ଜଳରୁ ଏବଂ ଆମେ ଖାଉଥିବା ଶସ୍ୟର ଯେତେ ଦାନା, ସେଥିରୁ ଗୋଟିଏ ହେଲେ ଜୀବହୀନ ନୁହନ୍ତି । ଆମ ପ୍ରତ୍ୟେକର ରୋଷାଇଶାଳା ସୂତକାଦୋଷମୟ । ସୂତକାଦୋଷରୁ ମୁକ୍ତ ରହିପାରିବ କିଏ, କିପରି ? ନାନକଙ୍କ କଥନ ଏହି ଯେ ଏପ୍ରକାର ସର୍ବବ୍ୟାପ୍ତ ସୂତକାରୁ ମୁକ୍ତି ସମ୍ଭବ କେବଳ ଜ୍ଞାନ ଦେଇ । ମନର ସୂତକା-ଦୋଷ ହେଲା ଲୋଭ, ମିଥ୍ୟା-କଥନ ହେଲା ଜିହ୍ୱାର ସୂତକା, ଆଖିର ସୂତକା ହେଲା—ପରନାରୀ, ପରଧନ, ପରରୂପ ପ୍ରତି ଆସକ୍ତିମୟ ଦୃଷ୍ଟି ଏବଂ କାନର ସୂତକା ହେଲା—ପରନିନ୍ଦା ଓ ପରଚୁଗୁଲି ଶ୍ରବଣ । ନାନକଙ୍କର କହିବାର କଥା ଏହି ଯେ, ମନୁଷ୍ୟ ଏଇ ସବୁ ପ୍ରତି ଦୁର୍ବଳ ରହିଲେ ବନ୍ଧାହୋଇ ଯମପୁରକୁ ଯିବା ନିଶ୍ଚିତ । ସୂତକା-ବର୍ଜନ ହିଁ ଏକ ଭ୍ରାନ୍ତ ଧାରଣା, ଯାହା ଯୋଗୁଁ ଆମର ମନ ଦ୍ୱୈତ-ବସ୍ତୁର ପ୍ରତି ଉନ୍ମୁଖ ହୋଇ ରହେ । କାରଣ ଜନ୍ମ ଓ ମରଣ ତ ଈଶ୍ୱରଙ୍କ ହୁକୁମ, ପ୍ରଭୁଙ୍କ ଇଚ୍ଛାନୁସାରେ ଜୀବ ଆସୁଛି, ଯାଉଛି; ତେଣୁ ତାହାଠ ଅଶୌଚ-ଦୋଷ ଆସିବ କିପରି ? ଆମର ଦୈନନ୍ଦିନ ପାନ-ଭୋଜନ ପବିତ୍ର କର୍ମ, କାରଣ ସେହି ପ୍ରଭୁ ତ କରୁଣାରେ ତାହା ଯୋଗାଇଥାନ୍ତି ଆମର ପେଟ ପୂର୍ତ୍ତି କରିବା ପାଇଁ । ନାନକ ତେଣୁ ଘୋଷଣା କରେ ଯେ, ଯିଏ ଗୁରୂପଦେଶ ଦେଇ ଜ୍ଞାନ ପାଇଛି, ତାକୁ କୌଣସି ହେଲେ ସୂତକା-ଦୋଷ ଲାଗିବ ନାହିଁ ।

: ୧୫୭ :

ତୀର୍ଥ-ସ୍ନାନ ପାଇଁ ଯେଉଁ ଲୋକ ଗାଁ-ଘର ଛାଡ଼ି କରନ୍ତି ଦୂର-ପଥଯାତ୍ରା, ମନେ ରଖିବ ଯେ ସେ ଲୋକର ଚିତ୍ତ କୁଟିଳ ଓ ଦେହ ଚୌର୍ଯ୍ୟପରାୟଣ । ଯେଉଁ ଲୋକ ତୀର୍ଥସ୍ନାନଦ୍ୱାରା ମଳ-ମୁକ୍ତ ହେଲା ବୋଲି ମନେକରେ, ପ୍ରକୃତରେ ତା' ଭିତରେ ସେହି ମଳ ଦ୍ୱିଗୁଣ ବଢ଼ିଯାଏ । 'ତୋଡ଼ନ୍ତା'ର ବାହାରଟାକୁ ଯେତେ ଧୋଇଲେ ମଧ୍ୟ ତା ଭିତରେ ତ ଖାଲି ବିଷ ଯେମିତି ଭରିଥିଲା, ସେଇମିତି ରହେ । ବିନା ତୀର୍ଥ-ସ୍ନାନରେ ମଧ୍ୟ ସାଧୁ, ସାଧୁ ହିଁ ରହେ; ବରଂ ତୀର୍ଥ-ସ୍ନାନ ପରେ ଚୋର ଅଧିକ ଚୋର ହୋଇଉଠିବାର ଆଶଙ୍କାଟା ଅଯଥାର୍ଥ ହେବନି ।

: ୧୫୮ :

ସୁନାର ଆସବାବ, ସୁନାର ଭୋଜନ-ପାତ୍ର, ନାନା-ରତ୍ନ-ସମନ୍ୱିତ ଗୃହ, ପୁଣି ନିତ୍ୟ ପବିତ୍ର ଗଙ୍ଗାନୀର ସ୍ନାନ ଓ ଭୋଜନ, କେବଳ ଅରଣ୍ୟାଗ୍ନିର ବ୍ୟବହାର, ଏବଂ ଆହାର କେବଳ ଖାଣ୍ଟି ଦୁଧର କ୍ଷୀରି—ହେ ମନ, ଏବମ୍ବିଧ ବାହ୍ୟ ଶୁଚିତାରୁ କ'ଣ ମିଳିବ, ଯେପର୍ଯ୍ୟନ୍ତ ମନ ଲଗ୍ନ ନହୋଇ ପାରିଛି ସତ୍ୟ-ନାମରେ ? ଥାଉ ପାଖରେ ଅଠରଟିଯାକ ପୁରାଣ, ଜିହ୍ୱାଗ୍ରରେ ଥାଉ ଚାରିଟିଯାକ ବେଦ, କରୁଥାଅ ପଛେ ପ୍ରତ୍ୟହ ତୀର୍ଥ-ସ୍ନାନ, ଯୋଗୀ ହୋଇ ରହ ଏକ ସ୍ଥାନରେ ବା ରହ ଚଳଗତିଶୀଳ, କିମ୍ବା ରହ ଗୃହସ୍ଥ କର୍ମଜଞ୍ଜାଳରେ ବୁଡ଼ିରହି; ହେ ମନ, ଯେପର୍ଯ୍ୟନ୍ତ ପ୍ରଭୁଙ୍କୁ ନ ଜାଣିଛ, ତେବେ ଏ ସମସ୍ତ ତମର ରହିବେ କେବଳ ବନ୍ଧନର ହେତୁ ହୋଇ । ଏ ଜଗତରେ ଜାତ ପ୍ରତ୍ୟେକଟି ଜୀବର କପାଳରେ ତା'ର କର୍ମକଳାପ ଲିଖିତ ରହିଛି । ସେହି କର୍ମକଳାପର ସମ୍ପାଦନା ଉପରେ ହିଁ

କେତେ ଜାଥ ଲଖୀ ସିର ଭାର ॥ କରଣୀ ଉପର ହୋବଗି ସାର ॥
ହୁକମୁ କରହ୍ନି ମୂରଖ ଗବାର ॥ ନାନକ ସାଚେ କେ ସିଫତି ଭଂଡ଼ାର ॥ ୪ ॥

ତସଂରୁ

: ୧୫୯ :

ଧ୍ରିଗୁ ତିନା କା ଜୀବିଆ କି ଲିଖି ଲିଖି ବେଚହ୍ନି ନାଉ ॥
ଖେତୀ ଜିନ କୀ ଉଜଡ଼ୈ ଖଲବାଡ଼େ କଆ ଥାଉ ॥
ସଚୈ ସରମୈ ବାହରେ ଅଗୈ ଲହହ୍ନି ନ ଦାଦ ॥
ଅକଲି ଏହ ନ ଆଖୀଐ ଅକଲି ଗବାଈଐ ବାଦ ॥
ଅକଲୀ ସାହବୁ ସେବୀଐ ଅକଲୀ ପାଈଐ ମାନୁ ॥
ଅକଲୀ ପଢ଼ି କୈ ବୁଝୀଐ ଅକଲୀ କୀଚୈ ଦାନୁ ॥
ନାନକୁ ଆଖୈ ରାହୁ ଏହୁ ହୋରି ଗଲାଁ ସୈତାନୁ ॥ ୧ ॥

ବର ସାରଙ୍ଗ ପଉଡ଼ୀ ୨୦ ସଲୋକ

: ୧୬୦ :

ଗିଆନ ବିହୂଣା ଗାବୈ ଗୀତ ॥ ଭୁଖେ ମୁଲାଂ ଘରେ ମସୀତି ॥
ମଖଟୂ ହୋଇକୈ କଂନ ପଡ଼ାଏ ॥ ଫକରୁ କରେ ହୋରୁ ଜାତୁ ଗବାଏ ॥
ଗୁରୁ ପୀରୁ ସଦାଏ ମଙ୍ଗଣ ଜାଇ ॥ ତା କୈ ମୂଲି ନ ଲଗୀଐ ପାଇ ॥
ଘାଲି ଖାଇ କିଛୁ ହଥହୁ ଦେଇ ॥ ନାନକ ରାହୁ ପଛାଣହ୍ନି ସେଇ ॥ ୧ ॥

ବାର ସାରଙ୍ଗ ପଉଡ଼ୀ ୨୨ ସଲୋକ

: ୧୬୧ :

ଗଊ ବିରାହମଣ କଉ କରୁ ଲାବହୁ ଗୋବରି ତରଣୁ ନ ଜାଈ ॥
ଧୋତୀ ଟିକା ତୈ ଜପମାଲୀ ଧାନୁ ମଲେଛାଂ ଖାଈ ॥
ଅଂତରି ପୂଜା ପଡ଼ହି କତେବା ସଂଜମୁ ତୁରକା ଭାଈ ॥
ଛୋଡ଼ୀଲେ ପାଖଂଡା ॥ ନାମି ଲଇଐ ଜାହି ତରଂଦା ॥ ୧ ॥

ବାର ଆସା ପଉଡ଼ୀ ୧୬ ସଲୋକ

ପ୍ରତ୍ୟେକର ବିଗ୍ରହ ହେବ । ଯେଉଁ ଲୋକ ଅନ୍ୟ ଲୋକ ଉପରେ ହୁକୁମ ଚଲାଉଛୁ, ସେ ଏକ ଘୋର ମୂର୍ଖ । ନାନକ କହେ ଯେ, ଅନ୍ୟ ଉପରେ କ୍ଷମତାବିସ୍ତାରର ଲୋଭ ତ୍ୟାଗ କର, ବରଂ ପ୍ରଭୁଙ୍କ ଗୁଣଭଣ୍ଡାର ଖୋଜିବୁଥ ।

: ୧୬୯ :

ତାର ଜୀବନକୁ ଧିକ୍ ଯେ ନାମ-ପ୍ରଗ୍ରହକୁ ପଣ୍ୟରୂପେ ବ୍ୟବହାର କରେ । କାରଣ, ଯାହାର ଦେହ ଉଜୁଡ଼ିଯାଇଛୁ ତାର ଆଉ ଖଳା କାହିଁ ? ଯେଉଁ ଲୋକର ଜୀବନରେ ସତ୍ୟ ଓ ଲଜ୍ଜାର ପ୍ରଭାବ ନାହିଁ, ସେ ଲୋକ ପରଲୋକରେ ଆଦର-ସମ୍ମାନ ପାଇବ ବୋଲି କିପରି ଆଶା କରିପାରେ ? ଯେଉଁ ଲୋକ ନିଜକୁ ବୁଦ୍ଧିମାନ ମନେକରି କେବଳ ବିବାଦରେହିଁ ଜୀବନଟା ନଷ୍ଟ କରିଦେଲା, ତାକୁ କି ପ୍ରକୃତରେ ବୁଦ୍ଧିମାନ କୁହାଯିବ ? ସ୍ମରଣ ରଖ ଯେ, ମନୁଷ୍ୟ ବୁଦ୍ଧିଯୁକ୍ତ ହୋଇ ହିଁ ପ୍ରଭୁଙ୍କର ପ୍ରକୃତ ସେବା କରିପାରେ ଏବଂ ପ୍ରକୃତ ବୁଦ୍ଧିଯୁକ୍ତ ମନୁଷ୍ୟହିଁ ସମାଜରେ ସମ୍ମାନ ପାଇଥାଏ । କେବଳ ବୁଦ୍ଧି ବଳରେ ହିଁ ବିଦ୍ୟାର୍ଜ୍ଜନ ଓ ପଠିତ ଶାସ୍ତ୍ରର ମର୍ମବୋଧ ଘଟିଥାଏ, ଏବଂ ଯଥାଯୁକ୍ତ ଦାନ ମଧ୍ୟ କରାଯାଇଥାଏ କେବଳ ବୁଦ୍ଧି-ବିଗ୍ରହର ପ୍ରୟୋଗ ଫଳରେ । ନାନକର କଥନ ଏହି କି, ଏହି ବୁଦ୍ଧିବିଗ୍ରହ-ପ୍ରତିଷ୍ଠ ଜୀବନ-ଗ୍ରଳନା ହିଁ ଏକମାତ୍ର ଆଧ୍ୟାତ୍ମିକ ସାଧନାର ପଥ, ଏବଂ ଆଉ ଯେତେ ତଥାକଥିତ ପଥ ସଇତାନର ନିର୍ଦ୍ଦେଶ ବୋଲି ଜାଣିବ ।

: ୧୭୦ :

ନିଜେ ଅର୍ଥ ବୁଝି ନପାରୁଥିବା ଲୋକ ବି ଗୀତ ଗାଇଗ୍ରଲିଛନ୍ତି—କେବଳ ଗଣ୍ଡେ ଭିଖ ଆଶାରେ । କ୍ଷୁଧାତୁର ମୁଲ୍ଲା ନିଜ ଘରକୁ ମସ୍‌ଜିଦ୍ ବନେଇ ଦେଇଛି । ଜୀବିକାର୍ଜ୍ଜନ କରି ନପାରି ମଧ୍ୟ କେହି କେହି କାନ ଫୋଡ଼େଇ ଫକୀର ବନିଯାଉଛନ୍ତି । ସକଳ ମାନ-ମର୍ଯ୍ୟାଦା-ଜ୍ଞାନ ହରାଇ ନିଜକୁ ଗୁରୁ ବା ପୀର ବୋଲାଇ ମଧ୍ୟ ଯୋକେ କେବଳ ଭିଖ ମାଗିବୁଲୁଛନ୍ତି । ହେ ଭାଇମାନେ, ଏ ପ୍ରକାର ନିର୍ଲଜ୍ଜ ଓ ଧର୍ମଜ୍ଞାନଶୂନ୍ୟ ଗୁରୁ ବା ପୀରଙ୍କର କେବେହେଲେ ପାଦ ଛୁଅଁ ନାହିଁ । ପରିଶ୍ରମ କରି ନିଜେ ଖାଅ ଓ ଅନ୍ୟକୁ ଦାନ କର । ନାନକ କହେ ଯେ, ଏହି ପ୍ରକାର ସାଧୁ ଗାର୍ହସ୍ଥ୍ୟ ଦେଇହିଁ ଲୋକ ଈଶ୍ୱରଙ୍କ ପଥରେ ସହଜରେ ଗ୍ରଲି ଯାଇ ପାରିବ ।

: ୧୭୧ :

ଗୁରୁ-ବ୍ରାହ୍ମଣଙ୍କ ଉପରେ ତ କର ଲଗାଉଛ; କିନ୍ତୁ ଗୋବର ବ୍ୟବହାର କରି କିପରି ଆଶା କର ଭବବନ୍ଧନରୁ ପାରିହୋଇଯିବା ପାଇଁ ? ବାହାରେ ଧୋତି, ଟିକା ଓ ଜପମାଳା ଧରି ଅକୁଣ୍ଠିତ ଚିତ୍ତରେ ମ୍ଲେଚ୍ଛାଦଙ୍କ ଅନ୍ନ ଭୁଞ୍ଜି ଗ୍ରଲିଛ । ଘରେ ପୂଜାପାଠକରି, ବାହାରେ ପଢ଼ କୋରାନ, ତମର ଖାଉ-ପିଉ ସବୁ କେବଳ ତୁର୍କଙ୍କ ପରି । ହେ ପାଷଣ୍ଡ, ଏ ପ୍ରକାର କପଟାଗ୍ରର ଛାଡ଼ିଦିଅ, କେବଳ ନିଷ୍ଠାପର ନାମ-ଜପ ହିଁ ତମକୁ ପାରି କରାଇପାରେ ଭବ-ବନ୍ଧନରୁ ।

## ପଞ୍ଚମ ଭାଗ

## ଆତ୍ମୋନ୍ନତିପାଇଁ ପାରିବାରିକ ଜୀବନର ପରିତ୍ୟାଗ

# ଅପେକ୍ଷିତ ନୁହେଁ

ସଚ ସିମରଣୀ ହୋବୈ ପରଗାସୁ । ତାତେ ବିଖିଆ ମହି ରହୈ ଉଦାସୁ ॥
ସତିଗୁର କୀ ଐସୀ ବଡ଼ିଆଈ । ପୁତ୍ର କଲତ୍ର ବିଚେ ଗତି ପାଈ ॥ ୨ ॥ ୩ ॥ ୪ ॥

ଧନାସରୀ

ସତ୍ୟର ସ୍ଫୁରଣରେ ମନର ବିକାଶ ଘଟେ । ଏ ପ୍ରକାର ମନକୁ ବିଷୟ ଦେଇ ରହିଥିଲେହେଁ ତାହା ରହିଥାଏ ନିର୍ଲିପ୍ତ । ସଦ୍‌ଗୁରୁ ଆତ୍ମସ୍ଥର ଏହି ମହିମା ଯେ, ପୁତ୍ର-ପତ୍ନୀଙ୍କ ସାଥିରେ ରହି ମଧ୍ୟ ମନୁଷ୍ୟ ଭବଜାଲରୁ ସହଜରେ ମୁକ୍ତି ଲାଭ କରି ପାରିବ ।

## ସ୍ତ୍ରୀ ମନ୍ଦ ନୁହେଁ

: ୧୬୨ :

ଭଂଡି ଜଂମୀଐ ଭଂଡି ନିଂମୀଐ ଭଂଡି ମଂଗଣୁ ବିଆହୁ ॥
ଭଂଡହୁ ହୋବୈ ଦୋସତୀ ଭଂଡହୁ ଚଲୈ ରାହୁ ॥
ଭଂଡୁ ମୁଆ ଭଂଡୁ ଭାଲୀଐ ଭଂଡି ହୋବୈ ବଂଧାନ ॥
ସୋ କିଉ ମଂଦା ଆଖୀଐ ଜିତୁ ଜଂମହି ରାଜାନ ॥
ଭଂଡହୁ ହୀ ଭଂଡୁ ଉପଜୈ ଭଂଡୈ ବାଝୁ ନ କୋଇ ॥
ନାନକ ଭଂଡୈ ବାହରା ଏକୋ ସଚା ସୋଇ ॥
ଜିତୁ ମୁଖି ସଦା ସାଲାହୀଐ ଭାଗା ରତୀ ଚାରି ॥
ନାନକ ତେ ମୁଖ ଊଜଲେ ତିତୁ ସଚୈ ଦରବାରି ॥ ୨ ॥

ବାର ଆସା ପଉଡ଼ୀ ୧୯ ସଲୋକ

## ତ୍ୟାଗ

### ( ଯୋଗୀମାନଙ୍କ ସହ ଚର୍ଚ୍ଚା )

: ୧୬୩ :

ଦୁନିଆ ସାଗରୁ ଦୁତରୁ କହୀଐ କିଉକରି ପାଈଐ ପାରୋ ॥
ଚରପଟୁ ବୋଲୈ ଅଉଧୂ ନାନକ ଦେହୁ ସଚା ବୀଚାରୋ ॥
ଆପେ ଆଖୈ ଆପେ ସମଝୈ ତିସୁ କିଆ ଉତରୁ ଦୀଜୈ ॥
ସାଚୁ କହହୁ ତୁମ ପାରଗରାମୀ ତୁଝୁ କିଆ ବୈସଣୁ ଦୀଜୈ ॥ ୪ ॥
ଜୈସେ ଜଲ ମହି କମଲୁ ନିରାଲମୁ ମୁରଗାଈ ନୈସାଣେ ॥
ସୁରତି ସବଦି ଭବସାଗରୁ ତରୀଐ ନାନକ ନାମୁ ବଖାଣେ ॥
ରହହି ଇକାଂତି ଏକୋ ମନି ବସିଆ ଆସା ମାହି ନିରାସୋ ॥
ଅଗମୁ ଅଗୋଚରୁ ଦେଖି ଦିଖାଏ ନାନକୁ ତା କା ଦାସୋ ॥ ୫ ॥

ରାମକଲୀ ସିଧ ଗୋସଟି

: ୧୬୪ :

ହାଟୀ ବାଟୀ ରହହି ନିରାଲେ ରୂଖି ବିରଖି ଉଦିଆନେ ॥
କଂଦ ମୂଲୁ ଆହାରୋ ଖାଈଐ ଅଉଧୂ ବୋଲୈ ଗିଆନେ ॥
ତୀରଥି ନାଈଐ ସୁଖୁ ଫଲୁ ପାଈଐ ମୈଲୁ ନ ଲାଗୈ କାଈ ॥
ଗୋରଖ ପୂତୁ ଲୋହାରୀପା ବୋଲୈ ଜୋଗ ଜୁଗତି ବିଧି ସାଈ ॥ ୭ ॥

: ୧୬୨ :

ନାରୀଠାରୁ ମୋର ଜନ୍ମ, ନାରୀଗର୍ଭରୁ ପଡ଼ି ମୁଁ ଧରାପୃଷ୍ଠ ହେଲି, ପୁଣି ନାରୀ ସହିତ ମୋର ବିବାହ । କେବଳ ମୋର ନୁହେଁ ସମଗ୍ର ଜଗତର ମୈତ୍ରୀ ଘଟିଥାଏ ନାରୀ ସହିତ, ଏବଂ ଆମ ସକଳର ବଂଶରକ୍ଷା ସମ୍ଭବ ହୁଏ ଓ ହୋଇଚାଲିଛି କେବଳ ନାରୀ ଯୋଗୁ । ବିବାହିତା ସ୍ତ୍ରୀର ମୃତ୍ୟୁ ଘଟିଲେ, ଲୋକ ଆଉ ଏକ ନାରୀ ଖୋଜି ଆଣେ; କାରଣ ଗୃହସ୍ଥର ମର୍ଯ୍ୟାଦା ରହେ କେବଳ ନାରୀ ଯୋଗୁଁ । ତେଣୁ ନାରୀମାନଙ୍କ ସମ୍ବନ୍ଧରେ ନିନ୍ଦନୀୟ ବାକ୍ୟ ସବୁ କାହିଁକି ପ୍ରୟୋଗ କରୁଛ ? ରାଜାମାନେ ମଧ୍ୟ ସେହି ନାରୀଦେହରୁ ଜାତ, ନାରୀରୁ ଜାତ ହୁଅନ୍ତି ପୁଣି ନାରୀ, ନାରୀ ବିନା ଏ ସୃଷ୍ଟି ଓ ସମାଜରେ କିଏ ଅଛି ଏକା ? ନାନକର କଥନ ଏହି ଯେ, ଏ ସୃଷ୍ଟିରେ ନାରୀସ୍ଥାନ ଅବସ୍ଥିତ କେବଳ ସତ୍ୟର । ଯାହାର ମୁଖରେ ସର୍ବଦା ଘଟିଚାଲିଥାଏ ସତ୍ୟମୟ ପ୍ରଭୁ-ଗୁଣଗାନ, ସେହିହିଁ କେବଳ ଭାଗ୍ୟଶାଳୀ ଓ ଶୋଭାଯୁକ୍ତ । ନାନକ କହେ ଯେ, ଈଶ୍ୱରଙ୍କ ଦରବାରରେ କେବଳ ଏପରି ଲୋକର ବଦନହିଁ ଉଜ୍ଜ୍ୱଳ ରହିବ ।

: ୧୬୩ :

ଅବଧୂତ ପଚାରେ—ଏହି ଭବବାରିଧି ଅତ୍ୟନ୍ତ ଦୁସ୍ତର; ହେ ନାନକ, କହ ତ କିପରି ଏହାକୁ ପାର ହୋଇ ପାରିବା ? ଏଥିର ମୁଁ କି ଉତ୍ତର ଦେବି ? କାରଣ, ଯିଏ ପ୍ରକୃତ ଜ୍ଞାତା, ସେହିହିଁ ଏଠି ପ୍ରଶ୍ନକର୍ତ୍ତା । ହେ ଅବଧୂତ, ତୁମେ ସତ୍ୟ କହ ଯେ ତମେ ନିଜେ ଭବସିନ୍ଧୁର ପାରଙ୍ଗତ । ତମ ସାଥିରେ ତେଣୁ ମୁଁ ଏ ପ୍ରସଙ୍ଗରେ କି ବିବାଦ କରିପାରେ ? କିନ୍ତୁ ନାନକର ବକ୍ତବ୍ୟ ଏତିକି ଯେ, ଜଳରେ ପଦ୍ମ ଓ ହଂସଗୁଳି ଯେପରି ନିର୍ଲିପ୍ତ ଅବସ୍ଥାନ କରିଥାନ୍ତି, ଆମେ ସଂସାରରେ ସେହିପରି ରହି ପ୍ରଭୁଙ୍କ ନାମ ମୁଗ୍ଧ ହୋଇ ଯଦି ଜପିଚାଲିବା, ତେବେ, ଏହି ଦୁସ୍ତର ଭବସାଗର ସହଜରେ ପାରହୋଇ ପାରିବା । ଏପରି ଲୋକ ଯାହାର ଚିତ୍ତରେ କେବଳ ପ୍ରଭୁହିଁ ଅଧିଷ୍ଠିତ, ସେ ସହସ୍ର ଆଶା-ଚଞ୍ଚଳ ଲୋକଙ୍କ ଭିତରେ, ନି-ଆଶ ଜୀବନ ଯାପନ କରିଥାନ୍ତି । ସେହି ଆଗମ-ଅଗୋଚର ପ୍ରଭୁ ଯେ ସବୁ ଦେଖୁଛନ୍ତି ଏବଂ ଯିଏ ଆମକୁ ଦେଖାଇ ଦିଅନ୍ତି, ନାନକ ସେହି ପ୍ରଭୁଙ୍କର ଚିରଦାସ ।

: ୧୬୪ :

ଯୋଗୀଖପୃଷ ଲୋହାରିପା କହନ୍ତି, "ହାଟ ଓ ବାଟରେ ମୁଁ ସମାଜରୁ ଅଲଗା ହୋଇ ରହେ, ରହେ ବା ଗଛମୂଳେ କୌଣସି ତୋଟାରେ; କନ୍ଦମୂଳ ମୋର ଆହାର, ଏହି ପ୍ରକାର ଜୀବନ ଭିତରେ ଅବଧୂତଙ୍କ ବାଣୀକୁ ମୁଁ ସାଧିତ କରିଥାଏଁ । ତୀର୍ଥସ୍ଥାନରେ ମିଳିଥାଏ ସୁଖ ଫଳ, ଏବଂ ଲାଗେନାହିଁ ସେଠି କୌଣସି ମଇଳା, ଏହାହିଁ ଯୋଗର ଯୁକ୍ତି । କିନ୍ତୁ ହାଟ-ବାଟରେ ସୁଖ-ନିଦ୍ରା ନହେଲେ ପର ଘର ପାଇଁ ଯେପରି ଚିତ୍ତ ବିଚଳିତ ନ ହୁଏ,

ହାଟୀ ବାଟୀ ନୀଂଦ ନ ଆବୈ ପର ଘର ଚିତୁ ନ ଡୁଲାଈ ॥
ବିନୁ ନାବୈ ମନୁ ଟେକ ନ ଟିକଈ ନାନକ ଭୂଖ ନ ଜାଈ ॥
ହାଟୁ ପଟଣୁ ଘରୁ ଗୁରୂ ଦିଖାଇଆ ସହଜେ ସଚୁ ଵାପାରୋ ॥
ଖଂଡିତ ନିଦ୍ରା ଅଲପ ଅହାରଂ ନାନକ ତତୁ ବୀଚାରୋ ॥ ୮ ॥

ରାମକଲୀ ସିଧ ଗୋସଟି

: ୧୬୫ :

ଦରସନୁ ଭେଖ କରହୁ ଜୋଗିନ୍ଦ୍ରା ମୁଦ୍ରା ଝୋଲୀ ଖିଂଥା ॥
ବାରହ ଅଂତରି ଏକୁ ସରେବହୁ ଖଟୁ ଦରସନ ଇକ ପଂଥା ॥
ଇନ ବିଧି ମନୁ ସମଝାଈଐ ପୁରଖା ବାହୁଡ଼ି ଚୋଟ ନ ଖାଈଐ ॥
ନାନକୁ ବୋଲୈ ଗୁରମୁଖି ବୂଝୈ ଜୋଗ ଜୁଗତି ଇଵ ପାଈଐ ॥ ୯ ॥
ଅଂତରି ସବଦୁ ନିରଂତରି ମୁଦ୍ରା ହଉମୈ ମମତା-ଦୂରି କରୀ ॥
କାମୁ କ୍ରୋଧୁ ଅହଂକାରୁ ନିଵାରୈ ଗୁର କୈ ସବଦି ସୁ ସମଝ ପରୀ ॥
ଖିଂଥା ଝୋଲୀ ଭରିପୁରି ରହିଆ ନାନକ ତାରୈ ଏକୁ ହରୀ ॥
ସାଚା ସାହିବୁ ସାଚୀ ନାଈ ପରଖୈ ଗୁର କୀ ବାତ ଖରୀ ॥ ୧୦ ॥
ଊଂଧଉ ଖପରୁ ପଂଚ ଭୂ ଟୋପୀ ॥ କାଇଆ କଡ଼ାସଣୁ ମନୁ ଜାଗୋଟୀ ॥
ସତୁ ସଂତୋଖୁ ସଂଜମୁ ହୈ ନାଲି ॥ ନାନକ ଗୁରମୁଖି ନାମୁ ସମାଲି ॥

ରାମକଲୀ ସିଧ ଗୋସଟି

: ୧୬୬ :

ଜୋଗୁ ନ ଖିଂଥା ଜୋଗୁ ନ ଡଂଡୈ ଜୋଗୁ ନ ଭସମ ଚଡ଼ାଈଐ ॥
ଜୋଗୁ ନ ମୁଂଦୀ ମୂଂଡି ମୁଡ଼ାଈଐ ଜୋଗୁ ନ ସିଂଙୀ ବାଈଐ ॥
ଅଂଜନ ମାହି ନିରଂଜନି ରହୀଐ ଜୋଗ ଜୁଗତି ଇଵ ପାଈଐ ॥ ୧ ॥
ଗଲୀ ଜୋଗୁ ନ ହୋଈ ॥ ଏକ ଦ୍ରିସଟି କରି ସମସରି ଜାଣୈ ଜୋଗୀ କହୀଐ ସୋଈ ॥ ୧ ॥ ରହାଉ ॥
ଜୋଗୁ ନ ବାହରି ମଡ଼ୀ ମସାଣୀ ଜୋଗୁ ନ ତାଡ଼ୀ ଲାଈଐ ॥
ଜୋଗୁ ନ ଦେସି ଦିସଂତରି ଭଵୀଐ ଜୋଗୁ ନ ତୀରଥି ନାଈଐ ॥
ଅଂଜନ ମାହି ନିରଂଜନି ରହୀଐ ଜୋଗ ଜୁଗତି ଇଵ ପାଈଐ ॥ ୨ ॥
ସତିଗୁରୁ ଭେଟୈ ତା ସହସା ତୂଟୈ ଧାଵତୁ ବରଜି ରହାଈଐ ॥
ନିଝରୁ ଝରୈ ସହଜ ଧୁନି ଲାଗୈ ଘର ହୀ ପରଚା ପାଈଐ ॥
ଅଂଜନ ମାହି ନିରଂଜନି ରହୀଐ ଜୋଗୁ ଜୁଗତି ଇଵ ପାଈଐ ॥ ୩ ॥
ନାନକ ଜୀଵତିଆ ମରି ରହୀଐ ଐସା ଜୋଗୁ କମାଈଐ ॥
ବାଜେ ବାଝହୁ ସିଂଙୀ ବାଜୈ ତଉ ନିରଭଉ ପଦୁ ପାଈଐ ॥
ଅଂଜନ ମାହି ନିରଂଜନି ରହୀଐ ଜୋଗ ଜୁଗତି ତଉ ପାଈଐ ॥ ୪ ॥ ୧ ॥ ୮ ॥

ସୂହୀ

ନାମ ବିନା ମନ କେବେ ହେଲେ ସ୍ଥିର ହେବ ନାହିଁ କି ମନର କ୍ଷୁଧା ଦବି ରହିବ ନାହିଁ । ହାଟ, ନଗର ଓ ଘରର ଭିନ୍ନତା ଗୁରୁଙ୍କ ସାହାଯ୍ୟରେ ମୁଁ ଦେଖିପାରିଛି, ଏବଂ ଏହା ହିଁ ବୁଝିଛି ଯେ, ଯେଉଁଠି ବ୍ୟାପାର କେବଳ ସତ୍ୟାଶ୍ରୟ ଉପରେ ପ୍ରତିଷ୍ଠିତ ତାହା ହିଁ ସବୁଠାରୁ ସହଜ ସାଧନା । ନାନକ କହେ ଯେ, ଅଳ୍ପ ନିଦ୍ରା ବା ଅଳ୍ପ ଭୋଜନରେ ହିଁ ହୋଇପାରିବ ଯଥାର୍ଥ ତତ୍ତ୍ୱ-ବିଚାର ।

: ୧୬୫ :

ଯୋଗୀ କହିଥିଲେ—ମୁଦ୍ରା, ଝୁଲି ଓ କନ୍ଥା ହେଲା ଯୋଗୀର ବେଶ, ସେ ସବୁକୁ ଦେହରେ ଧାରଣ କର । ବାର ଯୋଗ-ମନ୍ତ୍ରରୁ ଗୋଟାକୁ ହିଁ ସେବନ କର, ଷଡ୍‌ଦର୍ଶନ ଭିତରେ ତାହା ହିଁ ଶ୍ରେଷ୍ଠ ପନ୍ଥା । ହେ ପୁରୁଷ, ମନଃ-ଶିକ୍ଷା ପାଇଁ ଏହା ହିଁ ଏକ ବିଧି, ଯାହା ପାଳିଲେ ଯମର ପ୍ରହାର ଖାଇବାକୁ ପଡ଼ିବ ନାହିଁ । ନାନକ କହିଥିଲେ ଯେ, ଗୁରୁମୁଖ ଏହା ସହଜରେ ବୁଝିଯିବ; କାରଣ ସେ ଯୋଗର ଯୁକ୍ତି ସହଜରେ ପାଇଥାନ୍ତି; ଅଭ୍ୟନ୍ତରସ୍ଥ ଶବ୍ଦ ହିଁ ସାଧକର ଅନ୍ତସ୍ଥାନ ମୁଦ୍ରା, ଯାହା ଅହମିକା ଓ ମମତା ଆଦିକୁ ଦୂର କରିଦିଏ । ଗୁରୁପ୍ରଦତ୍ତ ଶବ୍ଦରେ ଯେତେବେଳେ ଜ୍ଞାନ ଉଦୟ ହୁଏ, ସେତେବେଳେ ଆପେ ଆପେ କାମ, କ୍ରୋଧ, ଅହଂକାରାଦି ଅପସୃତ ହୋଇଯାନ୍ତି । ପ୍ରଭୁଙ୍କ କରୁଣା ପରିପୂର୍ଣ୍ଣ ଶକ୍ତିମୟ । ସାଧକର ସେହି ହିଁ ଝୁଲି, ସେହି ହିଁ କନ୍ଥା । ଏକ ହରିନାମ ହିଁ ସାଧକଙ୍କୁ ଭବସିନ୍ଧୁ ପାର କରାଇ ଦେଇପାରେ । ହେ ପୁରୁଷ, ଜାଣିରଖ ଯେ, ସତ୍ୟ ହିଁ ଈଶ୍ୱର, ସତ୍ୟ ତାଙ୍କର ନାମ, ଏହା ଉତ୍ତମ ଗୁରୁଙ୍କ ବାଣୀ । ମନକୁ ସଂସାରରୁ ଟାଣିରଖିବା ହିଁ ଯଥାର୍ଥ ଭିକ୍ଷାପାତ୍ର, ପଂଚଭୂତ ହିଁ ସାଧକର ଯଥାର୍ଥ ଟୋପି, କାୟା ହିଁ ତୃଣାସନ, ମନ ପ୍ରହରୀ, ଦୟା, ସନ୍ତୋଷ, ସଂଯମ, ତାର ସାଥୀ-ସାଙ୍ଗ । ନାନକ ତେଣୁ କହେ ଯେ, ଗୁରୁପ୍ରଦତ୍ତ ନାମକୁ ହିଁ ହୃଦୟରେ ସୁପ୍ରତିଷ୍ଠିତ କରି ରଖ ।

: ୧୬୬ :

ଯୋଗ ସାଧନା, କନ୍ଥା, ଦଣ୍ଡ ବା ଭସ୍ମ-ବିଲେପନରେ ନ ଥାଏ; ଦେହଯାକ ମୁଦ୍ରା ମାରିହେଲେ, କେହି ପ୍ରକୃତ ଯୋଗୀ ହୋଇଯିବେନି । ମସ୍ତକ-ମୁଣ୍ଡନ ବା ଶିଙ୍ଗା ବଜାଇବାରେ ଯୋଗ ନ ଥାଏ । ଯିଏ ଆଖିରେ ନିରଞ୍ଜନ-ଜ୍ଞାନ-ଅଞ୍ଜନ ଦେଇଥାନ୍ତି, ସେହି କେବଳ ଯୋଗ-ଯୁକ୍ତି ପ୍ରାପ୍ତ ହୋଇଥାନ୍ତି । ଯୋଗ କେବଳ କଥାର କଥା ନୁହେଁ । ମନୁଷ୍ୟ ଯେତେବେଳେ ସମବର୍ତ୍ତୀ ଓ ସମଦର୍ଶୀ ହୋଇଉଠେ, ସେତିକିବେଳେ ହିଁ ତାକୁ ଯଥାର୍ଥରେ କୁହାଯିବ ଯୋଗୀ । ସମସ୍ତଙ୍କୁ ଦେଖେଇହେଲା ଭଳି, ବାହାର ମଠରେ ଧ୍ୟାନ ଯୋଗ ନୋହିପାରେ, ନୋହିପାରେ ଦେଶ-ଦେଶାନ୍ତର ଭ୍ରମଣ ବା ତୀର୍ଥ-ସ୍ନାନ କଲେ । ଯୋଗ ଥାଏ ନିରଞ୍ଜନ-ସମ-ଅଞ୍ଜନରେ । କେବଳ ସଦ୍‌ଗୁରୁ ସକଳ ସନ୍ଦେହ ଦୂର କରିପାରନ୍ତି ଏବଂ କେବଳ ସେହି ହିଁ ସ୍ଥିର କରିପାରନ୍ତି ଚଞ୍ଚଳ ମନକୁ । ସେହି ଧ୍ୱନି ନିର୍ଝର-ଶବ୍ଦ ପରି ସହଜ; ତେଣୁ ମନ ସେଥିରେ ଲାଗିଯାଏ, ଏବଂ ଘରେ ରହି ମଧ୍ୟ ମିଳିଯାଇଥାଏ ତାର ପରିଚୟ । ନାନକ କହେ ଯେ, ଏପରି ଯୋଗାଭ୍ୟାସ କର, ଯେପରିକି ସଂସାରରେ ଜୀବନ୍ତ ରହି ମଧ୍ୟ ତମେ ମୃତ, ଯେପରିକି ବିନା ବଜାଣରେ ଶିଙ୍ଗା ବାଜିଉଠିବ ଏବଂ କେବଳ ତେବେହିଁ ପାଇବ ସେହି ନିର୍ଭୟ ପଦ ।

## ଷଷ୍ଠ ଭାଗ

### ତତ୍‌କାଳୀନ

# ସାମାଜିକ ଓ ରାଜନୈତିକ ପରିସ୍ଥିତି

କାଜି କୁଡ଼ ବୋଲ ମଲୁ ଖାଇ । ବ୍ରାହ୍ମଣ ନାବେ ଜୀଆଁ ଘାଇ ॥
ଜୋଗୀ ଜୁଗତ ନ ଜାଣେ ଅନ୍ଧୁ । ତିନେ ଓଜାଡ଼େ କା ବନ୍ଧୁ ॥ ୨ ॥ ୫ ॥ ୧ ॥

ଧନାସରୀ

କାଜି ଖୁସିରେ ଗୋ-ମାଂସ ଭୋଜନ କରେ ଓ ପ୍ରଚାର କରେ କେବଳ ମିଥ୍ୟା । ବ୍ରାହ୍ମଣ ଜୀବହତ୍ୟା କରି କେବଳ ସ୍ନାନରେ ସେହି ପାପ ଧୋଇଦେବାକୁ ଚେଷ୍ଟା କରେ । ଯୋଗୀ ବୋଲାଉଥିବା ବ୍ୟକ୍ତିକୁ ଯୋଗର ଯୁକ୍ତି ଜଣାନାହିଁ । ସେ ଏକ ଅନ୍ଧ । ଏ ତିନିକ ତିନିହେଁ କେବଳ ଅଧଃପତନର ବନ୍ଧୁ ।

: ୧୬୭ :

ସଗି ପାପୁ କରି ସତ କମାହୁ ॥ ଗୁର ଦୀକ୍ଷିଆ ଘର ଦେବଣ ଜାହୁ ॥
ଇସତରି ପୁରଖେ ଖଟିଐ ଭାଉ ॥ ଭାବେ ଆବଉ ଭାବେ ଜାଉ ॥
ସାସତ୍ରୁ ବେଦୁ ନ ମାନେ କୋଇ ॥ ଆପୋ ଆପୈ ପୂଜା ହୋଇ ॥
କାଜୀ ହୋଇ କେ ବହେ ନିଆଇ ॥ ଫେରେ ତସବୀ କରେ ଖୁଦାଇ ॥
ବଢ଼ୀ ଲୈକେ ହକୁ ଗବାଏ ॥ ଜେକୋ ପୁଛୈ ତା ପଢ଼ି ସୁଣାଏ ॥
ତୁରକ ମନ୍ତ୍ରୁ କନି ରିଦୈ ସମାହୁ ॥ ଲୋକ ମୁହାବହୁ ଚାଡ଼ୀ ଖାହୁ ॥
ଚଉକା ଦେ କେ ସୁଚୁ ହୋଇ ॥ ଐସା ହିନ୍ଦୁ ବେଖହୁ କୋଇ ॥
ଜୋଗୀ ଗିରହୀ ଜଟା ବିଭୂତ ॥ ଆଗୈ ପାଛୈ ରୋବହୁ ପୂତ ॥
ଜୋଗୁ ନ ପାଇଆ ଜୁଗତ ଗବାଈ॥ କିତୁ କାରଣି ସିରି ଛାଇ ପାଈ ॥
ନାନକ କଲି କା ଏହୁ ପରବାଣୁ ॥ ଆପେ ଆଖଣୁ ଆପେ ଜାଣୁ ॥ ୧ ॥

ବାର ରାମକଲୀ ସଲୋକ ୧ ପଉଡ଼ୀ ୧୧

: ୧୬୮ :

ଆଦ ପୁରଖ କଉ ଅଲହୁ କହୀଐ ସେଖାଁ ଆଈ ବାରୀ ॥
ଦେବଲ ଦେବତିଆ କରୁ ଲଗା ଐସୀ କୀରତ ଚାଲୀ ॥ ୫ ॥
କୂଜା ବାଂଗ ନିବାଜ ମୁସଲା ନୀଲ ରୂପ ବନବାରୀ ॥
ଘର ଘର ମୀଆ ସଭନାଁ ଜୀଆଁ ବୋଲୀ ଅବର ତୁମାରୀ ॥ ୬ ॥

ବସନ୍ତ ହିଂଡୋ଼ଲ ଅସଟପଦୀଆ

: ୧୬୯ :

କଲି ହୋଈ କୁତେ ମୁହୀ ଖାଜୁ ହୋଆ ମୁରଦାରୁ ॥
କୂଡ଼ୁ ବୋଲି ବୋଲି ଭଉକଣା ଚୂକା ଧରମୁ ବିଚାରୁ ॥
ଜିନ ଜୀବଂଦିଆ ପତି ନହୀଂ ମୁଇଆ ମଂଦୀ ସୋଇ ॥
ଲିଖିଆ ହୋବୈ ନାନକା କରତା କରେ ସୁ ହୋଇ ॥ ୧ ॥
ରଂନା ହୋଈଆ ବୋଧୀଆ ପୁରସ ହୋଏ ସଈଆଦ ॥
ସୀଲୁ ସଂଜମୁ ସୁଚ ଭଂନୀ ଖାଣା ଖାଜୁ ଅହାଜୁ ॥
ସରମୁ ଗଇଆ ଘରି ଆପଣୈ ପତି ଉଠି ଚଲୀ ନାଲି ॥
ନାନକ ସଚୁ ଏକୁ ହୈ ଅଉରୁ ନ ସଚୁ ଭାଲି ॥ ୨ ॥

ବାର ସାରଂଗ ପଉଡ଼ୀ ୧୪ ସଲୋକ

: ୧୭୦ :

ହରଣାଂ ବାଜਾਂ ତੈ ସିକଦାରାଂ ଏନ୍ହା ପଢ଼ିଆ ନାଉ ॥
ଫାଂଧୀ ଲଗୀ ଜାତି ଫହାଇନି ଅଗୈ ନାହୀଂ ଥାଉ ॥

: ୧୬୭ :

ତଥାକଥିତ ଦାନୀ ପ୍ରତ୍ୟହ ପାପ ଅର୍ଜନ କରି, କରିଥାଏ ଦାନ; ଦୀକ୍ଷାଦାତା ଗୁରୁ ଶିଷ୍ୟମାନଙ୍କ ଘର ଘର ବୁଲେ ମାଗଣ ଆଶାରେ । ସ୍ତ୍ରୀର ପ୍ରେମ ଫୁଟିଉଠେ କେବଳ ପୁରୁଷର ଅର୍ଜିତ ଧନରୁ; ତା'ର ପୁରୁଷ ଘରକୁ ଭଲଭଲରେ ଆସୁ ବା ନଆସୁ । ଶାସ୍ତ୍ର ବା ବେଦର ବାଣୀକୁ ନ ମାନି ସମସ୍ତେ ବର୍ତ୍ତମାନ କେବଳ ଆତ୍ମ-ସୁଖରେ ମଗ୍ନ । କାଜି ଲାଞ୍ଚ ନେଇ ପ୍ରତ୍ୟହ ସତ୍ୟର ହତ୍ୟା କରୁଛି, ଅଥଚ ବାହାରକୁ ମାଳା ଗଡ଼ାଇ ନ୍ୟାୟ ଦେବାର ଭାଣ କରୁଛି ଈଶ୍ୱରଙ୍କ ନାମ ନେଇ; ପ୍ରଶ୍ନ କଲେ ସେ ଶାସ୍ତ୍ର-ବାକ୍ୟ ପଢ଼ି ଶୁଣାଇ ଦେଉଛି ଅଥଚ ଲୋକଙ୍କୁ ଠକିବାହିଁ ତାର ଜୀବିକାର୍ଜନ । ଏଣେ ହିନ୍ଦୁକୁ ଅନାଅ, ଯେ କି ତାର ସବୁ ଅପକର୍ମକୁ ଗୋବର-ଲେପ ଦେଇ ଘୋଡ଼େଇବାକୁ ଚେଷ୍ଟା କରେ, ବାହାରକୁ ଜଟା ବିଭୂତି ଲଗାଇ ଯୋଗୀ ବୋଲାଇ, ପଛଆଡ଼େ ଗାର୍ହସ୍ଥ୍ୟ ବନାଇ ଦେଇ ଅଛି । ତାର ଆଗରେ ଓ ପଛରେ ବୁଲୁଛନ୍ତି ତାର କନ୍ଦନରତ ଶିଶୁଗଣ । ନାହିଁ ଯୋଗ, ନାହିଁ ଯୁକ୍ତି, ଏପରି ମୂର୍ଖର କପାଳରେ ବିଭୂତି ବୋଳିଲେ କିଏ ? ନାନକ କହେ ଯେ, ଏହି ସବୁ ହେଲା କଳିଯୁଗର ଲକ୍ଷଣ; ଯେ ଏହା କହୁଛି ସେ ସମସ୍ତ ଜାଣିକରି କହୁଛି ।

: ୧୬୮ :

ଯେଣୁ ଆଦିପୁରୁଷକୁ କେବଳ ଆଲ୍ଲା କହିବାକୁ ହେବ; ତେଣୁ ଶିଖ୍‌ଙ୍କ ପାଳି ଆସିଗଲା ବୋଲି କହିବାକୁ ହେବ । ଦେବାଳୟମାନଙ୍କ ଉପରେ କର ବସିଲା, ଧର୍ମ-ସାଧନାର ବଡ଼ କଥା । ଏବେ ପାଣି-କୁଣ୍ଡା, ନମାଜର ଆସନ ଓ କୃଷ୍ଣଙ୍କର ନୀଳ ପ୍ରତିମା । ଘରେ ଘରେ ଆଜି ସମସ୍ତେ ମିଆଁ, ଦୁନିଆର ବୋଲି ବି ବଦଳିଗଲା ପରି ବୋଧହେଉଛି ।

: ୧୬୯ :

କଳିଯୁଗ କୁକୁରମୁଖ ହୋଇ ବସି ମୁର୍ଦ୍ଦାର ଖାଇବାରେ ଲାଗିଛି । ସମସ୍ତେ ମିଛ କହୁଛନ୍ତି ଏବଂ ଭୁକୁଛନ୍ତି, ପ୍ରକୃତ ଧର୍ମ-ବିଚାର ଜଗତରୁ ବିଦାୟ ନେଇଛି; ଯେପରି କୌଣସି ହେଲେ ଜୀବନ୍ତ ଲୋକ ସମ୍ମାନଯୋଗ୍ୟ ମନେ ହେଉନାହାନ୍ତି । ମଲେ ପଛରେ ଛାଡ଼ିଯାଉଛନ୍ତି କେବଳ ବଦ୍‌ନାମ । କିନ୍ତୁ ନାନକ କହେ ଯେ, କର୍ତ୍ତା ପ୍ରଭୁଙ୍କ ହୁକୁମ ଅନୁଯାୟୀ ହିଁ ସବୁ ଘଟିବ; ଯାହା ଭାଗ୍ୟ-ଲିଖିତ ତାହାହିଁ ଘଟିବ । ଅଥଚ ଆଜି ନାରୀ ମତିହୀନା ଓ ପୁରୁଷ ସ୍ୱେଚ୍ଛା-ଚାରୀଶୀଳ; ସ୍ୱଚ୍ଛତା, ସଂଯମ ଇତ୍ୟାଦି ତ ଗଲା । ଯାହା ପୂର୍ବେ ଥିଲା ଅଖାଦ୍ୟ, ଆଜି ତାହା ଦୈନନ୍ଦିନ ଖାଦ୍ୟରୂପେ ଗୃହୀତ । ଲଜ୍ଜା, ଆତ୍ମ-ସମ୍ମାନକୁ ତା' ସାଥିରେ ନେଇ ନିଜ ଘରେ ଯାଇ ଲୁଚିରହିଲାଣି । ନାନକର କଥନ ଏହି ଯେ ସତ୍ୟ କେବଳ ଭଗବାନ, ଆଉ କାହାକୁ ସତ୍ୟ ବୋଲି ଖୋଜିହୁଏନା ।

: ୧୭୦ :

ଏବେ ହରିଣ, ଛଞ୍ଚାଣ ଓ ସର୍ଦ୍ଦାର—ଏହିମାନଙ୍କୁ ଶିକ୍ଷିତ ବୋଲି ଧରିହେଉଛି । ଘରଆଡ଼େ ତ କୁକର୍ମର ବ୍ୟବସାୟ ଚାଲିଛି, ଲୋକେ ଅଜ୍ଞାତରେ କୁଳ-ଧର୍ମକୁ କୁ-କର୍ମରେ ପକେଇ ଦେଉଛନ୍ତି । ପରଲୋକରେ ଏମାନେ

ସୋ ପଢ଼ିଆ ସୋ ପଂଡ଼ିତୁ ବୀନା ଜିସୁ କମାଣା ନାଉ ॥
ପହିଲେ ଦେ ଜଡ଼ ଅଂଦରି ଜଂମୈ ତା ଉପରି ହୋବୈ ଛାଉ ॥
ରାଜେ ସୀହ ମୁକଦମ କୁତେ ॥ ଜାଇ ଜଗାଇନି ବୈଠେ ସୁତେ ॥
ଚାକର ନହଦା ପାଇନି ଘାଉ ॥ ରତୁ ପିତୁ କୁତହୋ ଚଟି ଜାହୁ ॥
ଜିଥୈ ଜୀଆଂ ହୋସୀ ସାର ॥ ନକୀଂ ବଢ଼ୀଂ ଲାଇତବାର ॥ ୨ ॥

ବାର ମଲାର ପଉଡ଼ୀ ୨୨ ସଲୋକ

: ୧୭୧ :

ମାଣସ ଖାଣେ କରହି ନିବାଜ ॥ ଛୁରୀ ବଗାଇନି ତିନ ଗଲି ତାଗ ॥
ତିନ ଘରି ବ୍ରହମଣ ପୂରହି ନାଦ ॥ ଉନା ଭି ଆବହି ଓଈ ସାଦ ॥
କୂଡ଼ୀ ରାସି କୂଡ଼ା ବାପାରୁ ॥ କୂଡ଼ୁ ବୋଲି କରହି ଆହାରୁ ॥
ସରମ ଧରମ କା ଡେରା ଦୂରି ॥ ନାନକ କୂଡ଼ୁ ରହିଆ ଭରପୂରି ॥
ମଥୈ ଟିକା ତେଡ଼ି ଧୋତୀ କଖାଈ ॥ ହଥି ଛୁରୀ ଜଗତ କାସାଈ ॥
ନୀଲ ବସତ୍ର ପହିରି ହୋବହି ପରବାଣୁ ॥ ମଲେଛ ଧାନୁ ଲେ ପୂଜହି ପୁରାଣୁ ॥
ଅଭାଖିଆ କା କୁଠା ବକରା ଖାଣା ॥ ଚଉକେ ଉପରି କିସୈ ନ ଜାଣା ॥
ଦେକୈ ଚଉକା କଢ଼ୀ କାର ॥ ଉପରି ଆଇ ବୈଠେ କୂଡ଼ିଆର ॥
ମତୁ ଭିଟୈ ବେ ମତୁ ଭିଟୈ ॥ ଇହୁ ଅଂନୁ ଅସାଡ଼ା ଫିଟୈ ॥
ତନି ଫିଟୈ ଫେଡ଼ କରେନି ॥ ମନି ଜୂଠୈ ଚୁଲୀ ଭରେନି ॥
କହୁ ନାନକ ସଚୁ ଧିଆଈଐ ॥ ସୁଚି ହୋବୈ ତା ସଚୁ ପାଈଐ ॥ ୨ ॥

ବାର ଆସା ପଉଡ଼ୀ ୧୬ ସଲୋକ

: ୧୭୨ :

କଲି କାତୀ ରାଜେ କାସାଈ ଧରମୁ ପଂଖ କରି ଉଡ଼ରିଆ ॥
କୂଡ଼ୁ ଅମାବସ ସଚୁ ଚନ୍ଦ୍ରମା ଦୀସୈ ନାହୀ କହ ଚଢ଼ିଆ ॥
ହଉ ଭାଲି ବିକୁੰନୀ ହୋଈ ॥ ଆଧେରୈ ରାହୁ ନ କୋଈ ॥
ବିଚି ହଉମୈ କରି ଦୁଖୁ ରୋଈ ॥ କହୁ ନାନକ କିନି ବିଧି ଗତି ହୋଈ ॥ ୧ ॥

ବାର ମାଝ ପଉଡ଼ୀ ୧୬ ସଲୋକ

: ୧୭୩ :

ଲବୁ ପାପୁ ଦୁଇ ରାଜା ମହତା କୂଡ଼ୁ ହୋଆ ସିକଦାରୁ ॥
କାମୁ ନେବୁ ସଦି ପୁଛୀଐ ବହି ବହି କରେ ବୀଚାରୁ ॥
ଅଂଧୀ ରଯତି ଗିଆନ ବିହୂଣୀ ଭାହି ଭରେ ମୁରଦାରୁ ॥
ଗିଆନୀ ନଚହି ବାଜେ ବାବହି ରୂପ କରହି ସୀଗାରୁ ॥
ଊଚେ କୂକହି ବାଦା ଗାବହି ଜୋଧା କା ବୀଚାରୁ ॥
ମୂରଖ ପଂଡ଼ିତ ହିକମତି ହୁଜତି ସଂଜୈ କରହି ପିଆରୁ ॥

କ ସ୍ଥାନ ପାଇବା ଆଶା କରନ୍ତି ? ଯେଉଁ ଲୋକ ନାମ ସଂଚୟ କରନ୍ତି, ସେହି କେବଳ ଶିକ୍ଷିତ, ସେହି କେବଳ ପଣ୍ଡିତ, ସେହି କେବଳ ଚତୁର, ଗଛର ଚେର ମାଟିରେ ଦ୍ରବୀଭୂତ ହେଲେ ବିନା ତାହା ବାହାରେ ଗ୍ରାଇ ଦେଇ ପାରିବ ? ରାଜା, ଚୌଧୁରୀ ଓ କୁକୁର ଶାନ୍ତିରେ ଶୋଇଲା ଲୋକଙ୍କୁ ଉଠାଉଛନ୍ତି, ବଞ୍ଚାଉଛନ୍ତି । ଗୃହର ନଖାଗ୍ରଧ ଜୀବ ପରି ତା'ର ସ୍ୱାମୀକୁ ଘାଉଲା କରି ଚାଲିଯାଉଛି, କୁକୁର ସବୁ ମଣିଷର ରକ୍ତ-ପିତ୍ତ ଚାଟୁଛନ୍ତି । ତେଣୁ ଯେଉଁ ପରଲୋକରେ ଜୀବର ସୁଖ-ଦୁଃଖର ପ୍ରଶ୍ନ ଉଠିବ, ସେତେବେଳେ ଏହି ଚଣ୍ଡିକଟାମାନଙ୍କର କଥା କିଏ ବିଶ୍ୱାସ କରିବ ?

: ୧୭୧ :

ମାନବଭକ୍ଷକ ନମାଜ ପଢ଼ୁଛି, ଏବଂ ଆତତାୟୀମାନେ ପଇତା ପକାଇ ବୁଲୁଚନ୍ତି, ଏବଂ ନିଜର ଯଜମାନ-ଘରକୁ ଫମ୍ପା ମନ୍ତ୍ରୋଚ୍ଚାରଣରେ ମୁଖରିତ କରୁଛନ୍ତି । ମିଥ୍ୟାହିଁ ଏମାନଙ୍କର ପୁଞ୍ଜି, ମିଥ୍ୟାହିଁ ଏମାନଙ୍କର ବ୍ୟବସାୟ; ମିଥ୍ୟା କହି ଏମାନେ ସଂଗ୍ରହ କରିଥାନ୍ତି ଦୈନିକ ଆହାର । ଲଜ୍ଜା ଓ ଧର୍ମକୁ ଏମାନେ ନିଜର ତମ୍ବୁ ଏକାବେଳକେ ଉଠାଇ ନେଲେଣି, ଏବଂ ନାନକ ସବୁଠି ଦେଖୁଛି କେବଳ ମିଥ୍ୟାଚାର । ମୁଣ୍ଡରେ ଚିତା ଓ ପରିଧାନ ଗେରିକ; କିନ୍ତୁ ଏହି ସମାଜ-କଂସାଇଗୁଡ଼ିକ ବୁଲୁଥାନ୍ତି ପ୍ରଚ୍ଛନ୍ନରେ ଛୁରି ଧରି । ମାନ୍ୟ ହେବା ଲକ୍ଷ୍ୟରେ ଏମାନେ ଅଙ୍ଗରେ ନୀଳବସ୍ତ୍ର ବି ପରିଧାନ କରିଥାନ୍ତି ଏବଂ ମ୍ଳେଚ୍ଛ ଜନଠୁ ଭିକ୍ଷା ନେଇ କରିଥାନ୍ତି ଶାସ୍ତ୍ର, ପୁରାଣର ପୂଜା । ଏମାନେ ପରଦେଶୀୟ ମନ୍ତ୍ରରେ କତଲ କରିଯାଇଥିବା ଜୀବର ମାଂସ ଅକାତରେ ଭକ୍ଷଣ କରିଥାନ୍ତି; ଅଥଚ ନିଜଠାରୁ ଆମ ସମସ୍ତଙ୍କୁ ଅପବିତ୍ର ଭାବି ଦୂରେଇ ରଖିଥାନ୍ତି । ବେଦୀ ଢିଆରି ରହିଛି ଏବଂ ଅଳଂକୃତ ହୋଇଛି ଚିତାଦ୍ୱାରା; କିନ୍ତୁ ବେଦୀ ଉପରୁ ମିଥ୍ୟାଗ୍ରସ୍ତ କହୁଥାଏ, ଦେଖ ମୋ ବେଦୀ ଯେପରି ଅକ୍ଷତ ରହେ ଏବଂ ମୋର ଅନ୍ନ ରହେ ପବିତ୍ର । ନିଜର ତନୁ ପରିପୂର୍ଣ୍ଣ ବିକାରଗ୍ରସ୍ତ, ଅଥଚ ସେ ଅନ୍ୟର ଦୁଷ୍କର୍ମ କଥା କହିଚାଲିଥାନ୍ତି । ମନଟାଯାକ କେବଳ ମିଥ୍ୟା-ପୂର୍ଣ୍ଣ, ବାରମ୍ବାର ମୁହଁ ଧୋଉଥାନ୍ତି ଓ କୁଳି କରୁଥାନ୍ତି କେବଳ ବାହ୍ୟ ପରିଚ୍ଛନ୍ନତା ପାଇଁ । ନାନକ କହେ ଯେ, ହେ ଭାଇ, ସତ୍ୟ-ଧ୍ୟାନର ହିଁ ଆଶ୍ରୟ ନିଅ, କେବଳ ସତ୍ୟପ୍ରାପ୍ତି ହିଁ ତମକୁ କରିପାରେ ପରିପୂର୍ଣ୍ଣ ଶୁଚି ।

: ୧୭୨ :

ଶାସକ ଆଜି କଂସେଇ; ତା ହାତରେ କଳିଯୁଗରୂପକ କାତି; ଧର୍ମ-ପକ୍ଷୀ ତା' ଉପରେ ଉଡ଼ିଗଲାଣି । ମିଥ୍ୟାଚାରର ଅମା-ରାତି ପୃଥିବୀକୁ ଘୋଡ଼ାଇ ରଖିଛି, ସତ୍ୟ-ଚନ୍ଦ୍ରମାର ଉଦୟ ଆଉ ଦେଖିବା କିପରି ? ଚାରିଆଡ଼େ ଅଣ୍ଡାଳ ଅଣ୍ଡାଳ ମୁଁ ବ୍ୟଥିତ ହୋଇଗଲିଣି; କିନ୍ତୁ ଘୋର ଅନ୍ଧକାରରେ କୌଣସି ବାଟର ସନ୍ଧାନ ପାଇପାରୁନି । ସମସ୍ତେ ଅହଂକାରମୟ କର୍ମକଳାପରେ ବ୍ୟସ୍ତ, ଏବଂ ଦୁଃଖରେ ବିଳାପ କରିବାର ମଧ୍ୟ ଦେଖାଯାନ୍ତି । ନାନକ ତେଣୁ ପଚାରେ : ଭାଇ, ଏଇ କି ମୁକ୍ତିର ଢଂଗ ?

: ୧୭୩ :

ଲୋଭ ଓ ପାପକର୍ମ ଏ ଉଭୟେ ହେଲେ ଯଥାକ୍ରମେ ରାଜା ଓ ମନ୍ତ୍ରୀ ଏବଂ ଏମାନେ ମିଶିକରି ଲୁଣ୍ଠନ କରୁଛନ୍ତି ଟଙ୍କାପଇସାଥିଲାବାଲାଙ୍କୁ । ଏମାନଙ୍କ ନାଏବ ହେଲା "କାମ", ଏବଂ ରାଜା ଏ ସମସ୍ତଙ୍କୁ ପରାମର୍ଶ ପାଇଁ ଡାକି ସେହିମାନଙ୍କ ଉପଦେଶ ଅନୁସାରେ କାମ କରେ । ଅଜ୍ଞ ପ୍ରଜାଏ ଏମାନଙ୍କର କାମନାଗ୍ନିକୁ ବରାବର ପ୍ରଜ୍ୱଳିତ କରି ରଖିଥାନ୍ତି । ଏପରିକି ଏମାନଙ୍କ ଭିତରେ ଥିବା ଜ୍ଞାନୀମାନେ ମଧ୍ୟ ସେମାନଙ୍କ ନିର୍ଦ୍ଦେଶରେ ବେଶ ପକାଇ ଓ ବାଜା ବଜାଇ ନାଚନ୍ତି ଏବଂ ଏ ଯୋଦ୍ଧାମାନଙ୍କର ଭିତର କଳହ-କଥାକୁ କାବ୍ୟ-କବିତା ଆକାରରେ ବୋଲନ୍ତି । ଆଜିର ସମାଜର ତଥାକଥିତ ପଣ୍ଡିତ ଜନ ଏହିପରି ମୂର୍ଖ; ପ୍ରେମ ତାଙ୍କର କେବଳ ଧନ-ସଞ୍ଚୟରେ,

ଧରମୀ ଧରମୁ କରହି ଗାବାବହି ମଂଗହି ମୋଖ ଦୁଆରୁ ॥
ଜତୀ ସଦାବହି ଜୁଗତ ନ ଜାନହି ଛଡି ବହହି ଘର ବାରୁ ॥
ସଭ କୋ ପୂରା ଆପେ ହୋବୈ ଘଟି ନ କୋଈ ଆଖୈ ॥
ପତ ପରବାଣା ପିଛୈ ପାଈଐ ତା ନାନକ ତୋଲିଆ ଜାପୈ ॥ ୨ ॥

ବାର ଆସା ପଉଡ଼ୀ ୧୧ ସଲୋକ

## ବାବରର ଆକ୍ରମଣ
## ( ଦୂରଦର୍ଶିତା )

: ୧୭୪ :

ଜୈସୀ ମୈ ଆବୈ ଖସମ କୀ ବାଣୀ ତୈସଡ଼ା କରୀ ଗିଆନୁ ବେ ଲାଲୋ ॥
ପାପ କୀ ଜଂଞ ଲୈ କାବଲହୁ ଧାଇଆ ଜୋରୀ ମଂଗୈ ଦାନୁ ବେ ଲାଲୋ ॥
ସରମୁ ଧରମୁ ଦୁଇ ଛପି ଖଲୋଏ କୂଡ଼ୁ ଫିରୈ ପରଧାନୁ ବେ ଲାଲୋ ॥
କାଜୀଆ ବାମ୍ଣା କୀ ଗଲ ଥକୀ ଅଗଦୁ ପଢ଼ୈ ସୈତାନୁ ବେ ଲାଲୋ ॥
ମୁସଲମାନୀଆ ପଢ଼ହି କତେବା କସଟ ମହି କରହି ଖୁଦାଇ ବେ ଲାଲୋ ॥
ଜାତ ସନାତୀ ହୋର ହିଦବାଣୀଆ ଏହି ଭୀ ଲେଖେ ଲାଇ ବେ ଲାଲୋ ॥
ଖୂନ କେ ସୋହଲେ ଗାବୀଅହି ନାନକ ରତୁ କା କୁଂଗୂ ପାଇ ବେ ଲାଲୋ ॥ ୧ ॥
ସାହିବ କେ ଗୁଣ ନାନକୁ ଗାବୈ ମାସପୁରୀ ବିଚ ଆଖୁ ମସୋଲା ॥
ଜିନ ଉପାଈ ରଂଗି ରବାଈ ବୈଠା ବେଖୈ ବଖି ଇକେଲା ॥
ସଚୁ ସୋ ସାହିବୁ ସଚୁ ତପାବସୁ ସଚଡ଼ା ନିଆଉ କରେଗୁ ମସୋଲା ॥
କାଇଆ କପଡ଼ୁ ଟୁକୁ ଟୁକୁ ହୋସୀ ହିଂଦୁସତାନ ସମାଲସୀ ବୋଲା ॥
ଆବନି ଅଠତରୈ ଜାନି ସତାନବୈ ହୋରୁ ଭି ଉଠସୀ ମରଦ କା ଚେଲା ॥
ସଚ କୀ ବାଣୀ ନାନକୁ ଆଖେ ସଚୁ ସୁଣାଇସୀ ସଚ କୀ ବେଲା ॥ ୨ ॥ ୩ ॥ ୫ ॥ ତିଲଂଗ

## ବାବରର ଆକ୍ରମଣ
## ( ଖେଦ )

: ୧୭୫ :

ଖୁରାସାନ ଖସମାନା କୀଆ ହିନ୍ଦୁସତାନୁ ଡରାଇଆ ॥
ଆପୈ ଦୋସୁ ନ ଦେଈ କରତା ଜମ କରି ମୁଗଲୁ ଚଢ଼ାଇଆ ॥
ଏତୀ ମାର ପଈ କୁରଲାଣେ ତୈଂ କୀ ଦରଦୁ ନ ଆଇଆ ॥ ୧ ॥
କରତା ତୂ ସଭନା କା ସୋଈ ॥
ଜେ ସକତା ସକତେ କଉ ମାରେ ତା ମନି ରୋସୁ ନ ହୋଈ ॥ ୧ ॥ ରହାଉ ॥
ସକତା ସୀହୁ ମାରେ ପୈ ବଗୈ ଖସମୈ ସା ପୁରସାଈ ॥
ରତନ ବିଗାଡ଼ି ବିଗୋଏ କୁତୀଂ ମୁଇଆ ସାର ନ କାଈ ॥
ଆପେ ଜୋଡ଼ି ବିଛୋଡ଼େ ଆପେ ବେଖୁ ତେରୀ ବଡ଼ିଆଈ ॥ ୨ ॥

ଏବଂ ସେମାନେ କେବଳ ବାଦ-ବିବାଦରେ ପଟୁ । କେତେକ ପୁଣି ଧର୍ମ-କର୍ମ କରନ୍ତି କେବଳ ଇହଲୋକରେ ଲୋକ-ପ୍ରଶଂସା ପାଇବା ପାଇଁ, ଏବଂ ଦାବି କରନ୍ତି ସେହି କପଟାଚାରର ବଦଳରେ ପ୍ରଭୁଙ୍କଠାରେ ମୋକ୍ଷ । କେତେକ ପୁଣି ସନ୍ନ୍ୟାସୀମାନଙ୍କ କଥାରେ ପଡ଼ି କିଛିମାତ୍ର ଯୁକ୍ତି ନକରି ଘର-ପରିବାର ଛାଡ଼ି ଚାଲିଯାଉଛନ୍ତି । ପ୍ରତ୍ୟେକ ଲୋକ ଭାବୁଛନ୍ତି ଯେ, ସେ ଏକ ପରିପୂର୍ଣ୍ଣ ମାନବ । କାହାରିକୁ କହିବାର ଶୁଣାଯାଏନି ଯେ, "ଆହା ମୋ ଜୀବନରେ ଏଇ ଏଇ ତ୍ରୁଟି ସବୁରେ ରହିଗଲା ।" ନାନକର କଥନ ଏହି ଯେ, ସତ୍ୟ-ନ୍ୟାୟର ଇଙ୍ଗିତ ଚାଉଳ ହେବାର କଥା; ତେଣୁ ସେହି ଚାଉଳରେ ମାପିଲା ପରେ ହିଁ ବୁଝ, ତମେ କେତେ ଦୂର ପୂର୍ଣ୍ଣ ।

: ୧୭୪ :

ହେ ବନ୍ଧୁ, ମୁଁ ସ୍ୱାମୀଙ୍କଠାରୁ ଯେଉଁପରି ବାଣୀ ପ୍ରାପ୍ତ ହୋଇଛି, ତୁମକୁ ସେହିପରି ପ୍ରଦାନ କରିବି ଜ୍ଞାନ । ସାବଧାନ ରହ ତେଣୁ ; ବାବୁର, କାବୁଲରୁ ଆସୁଛି ପାପର ବିବାହଯାତ୍ରା ତମଠୁ କନ୍ୟାକୁ ବଳପୂର୍ବକ ଛଡ଼ାଇ ନେବାକୁ । ଶୀଘ୍ର ଏ ରାଜ୍ୟରୁ ଶରମ ଓ ଧରମ ଉଭୟେ ଅଦୃଶ୍ୟ ହୋଇଯିବେ, ସର୍ବବ୍ୟାପ୍ତ ହୋଇଯିବ କେବଳ ମିଥ୍ୟାଚାର । ଜନତାର ମୁଖ୍ୟନେତା ହେବ କେବଳ ମିଥ୍ୟା । କାଜି ଓ ବ୍ରାହ୍ମଣମାନଙ୍କର କର୍ମରେ ଆସିବ ସମାପ୍ତି; ଏଣିକି ତରୁଣ-ତରୁଣୀଙ୍କୁ ବିବାହ କରାଇବ କେବଳ ସଇତାନ । ଏଣିକି ଯେଉଁ ମୁସଲମାନ କି କଷ୍ଟରେ ଉଚ୍ଚାରଣ କରିପାରନ୍ତି ଖୁଦା ବା ଅଲ୍ଲା, ସେହିମାନେହିଁ ଶୁଣାଇବେ କୋରାଣ । ନାନକ କହେ ଯେ, ଏଣିକି ପଦ୍ୟ ଲେଖା ହେବ କେବଳ ହତ୍ୟାର ଏବଂ ରାସ୍ତାରେ ରାସ୍ତାରେ ରକ୍ତ ଛିଞ୍ଚିକିବ ଫୁଲ-କେଶର ପରି । ଅଥଚ ଏହିପରି ହତ୍ୟା-ପୁରୀରେ ମଧ୍ୟ ନାନକ ଗାଇଚାଲିବ କେବଳ ପ୍ରଭୁଙ୍କ ଗୁଣଗାଥା । ଯେ ଏହି ବିବିଧ-ବର୍ଣ୍ଣ-ସୁନ୍ଦର ଜଗତ ସୃଷ୍ଟି କଲେ, ମୁଁ ଦେଖିପାରୁଛି ଯେ, ଏହି ସମଗ୍ର ବିଚିତ୍ର ସୃଷ୍ଟିରେ କେବଳ ସେହି ଏକାକୀ ବିରାଜମାନ । ମୋର ସେହି ପ୍ରଭୁ, ସବୁ ସମସ୍ୟାମାନଙ୍କର ନିଶ୍ଚେ ହେବ ସତ୍ୟ ସମାଧାନ । ମୋର କାୟା-ରୂପକ କପଡ଼ା ତ ଦିନେ ଶୀର୍ଣ୍ଣ ହୋଇଯିବ; କିନ୍ତୁ ମୋର ବିଶ୍ୱାସ, ସାରା ହିନ୍ଦୁସ୍ଥାନ ମୋର ବଚନକୁ ସ୍ମରଣ କରିବ । ଅଠସ୍ତରିରେ ଏ ପୃଥିବୀକୁ ଆସିଲି, ସତାନବେରେ ଯିବି; କିନ୍ତୁ ମୋ ପଛରେ ଦେଖାଦେବେ ପୁଣି ଆଉ ଏକ ମର୍ଦ୍ଦ ପିଲା, ମୋର ବାଣୀର ପ୍ରଚାର ପାଇଁ । କାରଣ ନାନକ ଯାହା କହୁଛି ତାହା କେବଳ ସତ୍ୟର ବାଣୀ; ସତ୍ୟର ଠିକ୍ ବେଳରେ କେବଳ ସତ୍ୟହିଁ ମୁଁ ଶୁଣାଇଯିବି ।

: ୧୭୫ :

ଖୁରାସାନର ରକ୍ଷାକର୍ତ୍ତା କିନ୍ତୁ ଭାରତର ଆତଙ୍କ ଯେଉଁ ମୋଗଲ, ତାଙ୍କୁ କର୍ତ୍ତା ପ୍ରଭୁ ଯମସ୍ୱରୂପ ପଠାଇଦେଇଛନ୍ତି; ଯେପରିକି ତାଙ୍କୁ ନିଜକୁ କେହି ଦୋଷ ଦେବେନି । କିନ୍ତୁ କି ଯେ ସଂହାରର ଲୀଳା ଦେଖିଲୁଁ, କି ଯେ ଆର୍ତ୍ତ-କ୍ରନ୍ଦନ; ହେ ଈଶ୍ୱର, ତୁମଠାରେ କି ସାମାନ୍ୟ ଦୟାଭାବ ହେଲାନି ? ହେ କର୍ତ୍ତାପୁରୁଷ, ତମ ଆଖିରେ ସମସ୍ତେ ସମାନ ବୋଲି ମାନନ୍ତି; କିନ୍ତୁ ଯଦି କେବଳ ଶକ୍ତିଶାଳୀକୁ ଶକ୍ତିଶାଳୀ ମାରନ୍ତେ, ସେଥିରେ କାହାର ମନରେ ରୋଷ ଆସନ୍ତା ନାହିଁ । କିନ୍ତୁ ଶକ୍ତିଶାଳୀ ସିଂହ ଯଦି ନିରୀହ ଗୋରୁପଲଙ୍କୁ ମାରେ, ତେବେ ସେ କରୁଣ ଦୁର୍ଦ୍ଦଶା ପାଇଁ ତୁମେ ଦାୟୀ ହେବ ନାହିଁ କି, ହେ କର୍ତ୍ତା ? ଏ ଦେଶ ଥିଲା ରତ୍ନରାଜ୍ୟ, ତାକୁ ବିଗାଡ଼ି ଦେଇଗଲେ କୁକୁରପଲ । ଆହା, ସହସ୍ର ସହସ୍ର ମୃତ ଜନଙ୍କ ଦୁଃଖ କେହିହେଲେ ମନେ ପକାଇଲେ ନାହିଁ । ହେ ଈଶ୍ୱର, ତୁଇ ମିଳନର କର୍ତ୍ତା, ତୁଇ ପୁଣି କରୁ ପୃଥକୀକରଣ; ତେଣୁ ଯଦି କେହି ନିଜକୁ ବଡ଼ ବୋଲି ପ୍ରତିପନ୍ନ କରିବାପାଇଁ ବା

ଜେ କୋ ନାଉ ଧରାଏ ବଡ଼ା ସାଦ କରେ ମନ ଭାଣେ ॥
ଖସମୈ ନଦରୀ କୀଡ଼ା ଆବୈ ଜେତେ ଚୁଗୈ ଦାଣେ ॥
ମର ମର ଜୀବୈ ତା କଛୁ ପାଏ ନାନକ ନାମୁ ବଖାଣେ ॥ ୩ ॥ ୫ ॥ ୩୯ ॥

ଆସା

: ୧୭୨ :

ଜିନ ସିର ସୋହନ ପଟୀଆ ମାଂଗୀ ପାଇ ସଂଧୂରୁ ॥
ସେ ସିର କାତୀ ମୁଂନୀଅନ୍ହି ଗଲ ବଚ ଆବୈ ଧୂଡ଼ ॥
ମହଲା ଅଂଦର ହୋଦୀଆ ହୁଣି ବହଣି ନ ମିଲନ୍ହି ହଦୂର ॥ ୧ ॥
ଆଦେସୁ ବାବା ଆଦେସୁ ॥
ଆଦ ପୁରଖ ତେରା ଅଂତୁ ନ ପାଇଆ କର କର ଦେଖହି ବେସ ॥ ୧ ॥ ରହାଉ ॥
ଜଦହୁ ସୀଆ ବୀଆହୀଆ ଲାଡ଼େ ସୋହନ ପାସି ॥
ହୀଡ଼ୋଲୀ ଚଡ଼ି ଆଈଆ ଦଂଦ ଖଂଡ଼ କୀତେ ରାସି ॥
ଉପରହୁ ପାଣୀ ବାରୀଐ ଝଲେ ଝିମକନ ପାସି ॥ ୨ ॥
ଇକୁ ଲଖୁ ଲହନ୍ହି ବହିଠୀଆ ଲଖୁ ଲହନ୍ହି ଖଡ଼ୀଆ ॥
ଗରୀ ଛୁହାରେ ଖାଂଦୀଆ ମାଣନ୍ହି ସେଜଡ଼ୀଆ ॥
ତିନ୍ହ ଗଲ ସିଲକା ପାଈଆ ତୁଟନ୍ହି ମୋତସରୀଆ ॥ ୩ ॥
ଧନୁ ଜୋବନୁ ଦୁଇ ବୈରୀ ହୋଏ ଜିନ୍ହି ରଖେ ରଂଗୁ ଲାଇ ॥
ଦୂତା ନୋ ଫୁରମାଇଆ ଲୈ ଚଲେ ପତ ଗବାଇ ॥
ଜେ ତିସୁ ଭାବୈ ଦେ ବଡ଼ିଆଈ ଜେ ଭାବୈ ଦେଇ ସଜାଇ ॥ ୪ ॥
ଅଗୋ ଦେ ଜେ ଚେତୀଐ ତାଂ କାଇତୁ ମିଲୈ ସଜାଇ ॥
ସାହାଂ ସୁରତ ଗବାଈଆ ରଂଗି ତମାସୈ ଚାଇ ॥
ବାବରବାଣୀ ଫିର ଗଈ କୁଇରୁ ନ ରୋଟୀ ଖାଇ ॥ ୫ ॥
ଇକନା ବଖତ ଖୁଆଈଅହି ଇକନ୍ହା ପୂଜା ଜାଇ ॥
ଚଉକେ ବିଣୁ ହିଂଦବାଣୀଆ କିଉ ଟିକେ କଢହି ନାଇ ॥
ରାମୁ ନ କବହୂ ଚେତିଓ ହୁଣି କହଣି ନ ମିଲୈ ଖୁଦାଇ ॥ ୬ ॥
ଇକ ଘର ଆବହି ଆପଣେ ଇକ ମିଲ ମିଲ ପୁଛହି ସୁଖ ॥
ଇକନ୍ହା ଏହୋ ଲିଖିଆ ବହି ବହି ରୋବହି ଦୁଖ ॥
ଜୋ ତିସୁ ଭାବୈ ସୋ ଥୀଐ ନାନକ କିଆ ମାନୁଖ ॥ ୭ ॥ ୧୧ ॥

ଆସା ଅସଟପଦୀଆ

ସ୍ୱେଚ୍ଛାଚାରୀ ହୋଇ ବିଳାସ କରିବାପାଇଁ ଅନ୍ୟ ଉପରେ ଅତ୍ୟାଚାର କରିବସେ, ତେବେ ସେ ଦାୟିତ୍ୱ ମଧ୍ୟ ତୁମର ହେବା ଉଚିତ । ହେ ସ୍ୱାମୀ, ହୁଏତ ତୁମ ଦୃଷ୍ଟିରେ ଏଗୁଡ଼ିକ ଦାନାଖିଆ କୀଟ ମାତ୍ର । ନାନକର କଥନ ଏହି ଯେ, ମଲେ ମଧ୍ୟ ଯେ ଜୀଇଁ ରହି ନାମ-ଜପ କରେ, ସେହି ଅବା ଏ ଜୀବନରୁ କିଛି ପାଏ ।

: ୧୭୬ :

ଯାର ମସ୍ତକରେ ଥିଲେ ଥିଲା ଶୋଭାମୟ କେଶ-ରଚନା, ଏବଂ ଭାଲପଟ ଚର୍ଚ୍ଚିତ ଥିଲା ସିନ୍ଦୂରବିନ୍ଦୁରେ, ସେ ଆଜି ମୁଣ୍ଡିତ-ମସ୍ତକ, ଏବଂ ସେ ଆଜି ଭୂ-ଲୁଣ୍ଠିତ ହୋଇ ପଡ଼ିରହିଛି । ସେ ଯେଉଁ ଘରେ ଜୀବନ କଟାଇଥିଲା ସେ ଘରର ପାଖକୁ ଯାଇ ସେ ଆଉ ବସି ବି ପାରିବନି । ନମସ୍କାର ପ୍ରଭୁ, ନମସ୍କାର । ହେ ଆଦି-ପୁରୁଷ, କିଏ ତୁମର ଭେଦ ଜାଣିପାରେ ? କେତେ ବେଶ-ରୂପରେ ତୁମେ ଦେଖାଦିଅ । ଯେତେବେଳେ ସେହି ତରୁଣୀର ବିବାହ ହେଲା, କି ସୁନ୍ଦର ଦେଖାଯାଉଥିଲା; ସେ ତାର ବର ସହିତ ଏବଂ ଯେଉଁ ପାଲିଙ୍କିରେ ବସି ସେ ଶାଶୁଘରକୁ ଯାଇଥିଲା ତାହା ମଧ୍ୟ ହସ୍ତୀଦନ୍ତଖଚିତ ହୋଇ ଦିଶୁଥିଲା ଅତି ସୁନ୍ଦର, ପଙ୍ଖା ଝିଲମିଲ୍ ଝିଲମିଲ୍ କରୁଥିଲା । ଶାଶୁମାନେ ତାକୁ ଆଦରରେ ଅଭ୍ୟର୍ଥନା କରି ନେଇଥିଲେ । ସେ ବସିଲେ ମିଳୁଥିଲା ତାକୁ ଲକ୍ଷେ ଭେଟି, ଲକ୍ଷେ ଭେଟି ମଧ୍ୟ ମିଳୁଥିଲା ଠିଆହେଲେ । ସେ ଯେତେବେଳେ ଖାଉଥିଲା କେବଳ ବାଦାମ ଓ ଖଜୁର ଏବଂ ଭୋଗ କରୁଥିଲା ଶଯ୍ୟାର ଆନନ୍ଦ । କିନ୍ତୁ ହାୟ, ଆଜି ତାର ଗଳାରେ ମୋତିର ମାଳା ପରିବର୍ତ୍ତରେ ଦଉଡ଼ିବନ୍ଧା, ଯେଉଁ ଜୀବନ ଧନ ଓ ଯୌବନ ଯୋଗୁଁ ଥିଲା କେବଳ ରଙ୍ଗର ସମସ୍ତ, ସେ ଆଜି ହୋଇଉଠିଛି ତାର ପରମ ବୈରି । ତମର ଦୂତମାନଙ୍କୁ ହୁକୁମ ହୋଇଛି ଯେ, ସ୍ତ୍ରୀକୁ ନେଇ ଚାଲ—ଆହା, ବହୁତ ଅପମାନ ତାକୁ ମିଳିଗଲାଣି । ପ୍ରଭୁଙ୍କର ଇଚ୍ଛାରେହିଁ ଲୋକକୁ ମିଳେ ମହିମା, ପ୍ରଭୁର ଇଚ୍ଛା ହେଲେ ସେ ପାଏ ଦଣ୍ଡ । କିନ୍ତୁ ଲୋକ ପ୍ରଥମରୁ ଯଦି ତାର କର୍ତ୍ତବ୍ୟ ନେଇ ଅବହିତ ରହେ, ତେବେ ସେ ଦଣ୍ଡିତ ହେବାର ଆଦୌ ଆଶଙ୍କା ନଥାଏ । ଏବେ ଦେଖୁଛୁ ଯେ ପ୍ରଘୋଷିତ ବାବର-ଶାସନରେ ଖେଳ-କୌତୁକରେ ହିଁ ଅଚେତ ଶାସକବର୍ଗ । ପୂର୍ବର ରାଜକୁମାରମାନଙ୍କର ଅନ୍ନହିଁ ସେମାନଙ୍କଠାରୁ ଛଡ଼ାଇ ନିଆଗଲାଣି, ସାଧାରଣ ଲୋକ କଥା କ'ଣ କହିବା ? ପୂଜା ନମାଜର ବେଳ ଆଉ ନାହିଁ ଏବଂ ହିନ୍ଦୁ ମହିଳାମାନଙ୍କର ଘରେ ଘରେ ଥିବା ପବିତ୍ର ଗୋମୟଲିପ୍ତ ବେଦୀସବୁ ଆଜି କାହିଁ ? ମସ୍ତକରେ ଟିକା ଦେଇ ପରମ ନିର୍ଭୟରେ ବସି କି ପାରିବେ କେଉଁଠି ଆଜି ସେମାନେ ? ବା ସ୍ନାନକୁ ଯିବେ ନଦୀ, ପୁଷ୍କରିଣୀକୁ ପୂର୍ବପରି ନିର୍ଭୟରେ ? ରାମନାମ ତ ଲୋକେ ଭୁଲିଗଲେଣି, ଏବେ ଖୋଦା ନାମ ନେବା ବି ମୁସ୍କିଲ ହେଲାଣି । ଅରାଜକତା ଏପରି ଯେ କେହି ଘରକୁ ବାହାରୁ ଫେରିଆସିଲା ମାତ୍ରେ ଘରେ ଅନ୍ୟ ସମସ୍ତେ ଭଲରେ ଅଛନ୍ତି କି ନାହିଁ ପଚାରିବାକୁ ହେଉଛି । କେତେକଙ୍କ ଭାଗ୍ୟ କେବଳ ବସି ବସି ରୋଦନ କରିବା; କିନ୍ତୁ ସେଥିରେ ବି ଦୁଃଖ କଟୁନି । ନାନକ କହେ ଯେ, ସେହି ପ୍ରଭୁଙ୍କ ଇଚ୍ଛାନୁସାରେ ହିଁ ଏସବୁର ସମାପ୍ତି ଘଟିପାରେ । ମନୁଷ୍ୟ ହାତରେ କି ଶକ୍ତି ଅଛି, ପ୍ରତିକାର ପାଇଁ ?

: ୧୨୭ :

କହା ସୁ ଖେଲ ତବେଲା ଘୋଡ଼େ କହା ଭେରୀ ସହନାଈ ॥
କହା ସୁ ତେଗବଂଦ ଗାଡ଼େରଡ଼ି କହା ସୁ ଲାଲ କବାଈ ॥
କହା ସୁ ଆରସୀଆ ମୁହ ବଂକେ ଐଥୈ ଦିସହି ନାହୀ ॥
ଇହୁ ଜଗୁ ତେରା ତୂ ଗୋସାଈ ॥
ଏକ ଘଡ଼ୀ ମହି ଥାପି ଉଥାପେ ଜରୁ ଵଂଡ଼ି ଦେଵୈ ଭାଈ ॥ ୧ ॥ ରହାଉ ॥
କହାଁ ସୁ ଘର ଦର ମଂଡ଼ପ ମହଲା କହା ସୁ ବଂକ ସରାଈ ॥
କହାଁ ସୁ ସେଜ ସୁଖାଲୀ କାମଣି ଜିସୁ ଵେଖି ନୀଦ ନ ପାଈ ॥
କହା ସୁ ପାନ ତଂବୋଲୀ ହରମା ହୋଈଆ ଛାଈ ମାଈ ॥ ୨ ॥
ଇସୁ ଜର କାରଣି ଘଣୀ ଵିଗୁତୀ ଇନି ଜର ଘଣୀ ଖୁଆଈ ॥
ପାପା ବାଝହୁ ହୋଵୈ ନାହୀ ମୁଇଆ ସାଥି ନ ଜାଈ ॥
ଜିସ ନୋ ଆପି ଖୁଆଏ କରତା ଖୁସି ଲଏ ଚଂଗିଆଈ ॥ ୩ ॥
କୋଟୀ ହୂ ପୀର ବରଜି ରହାଏ ଜା ପୀରୁ ସୁଣିଆ ଧାଇଆ ॥
ଥାନ ମୁକାମ ଜଲେ ବିଜ ମଂଦର ମୁଛି ମୁଛି କୁଇର ରୁଲାଇଆ ॥
କୋଈ ମୁଗଲୁ ନ ହୋଆ ଅଂଧା କିନୈ ନ ପରଚା ଲାଇଆ ॥ ୪ ॥
ମୁଗଲ ପଠାଣା ଭଈ ଲଡ଼ାଈ ରଣ ମହି ତେଗ ଵଗାଈ ॥
ଓନ୍ହୀ ତୁପକ ତାଣି ଚଲାଈ ଓନ୍ହୀ ହସତି ଚିଡ଼ାଈ ॥
ଜିନ୍ହ କୀ ଚୀରୀ ଦରଗହ ପାଟୀ ତିନ୍ହା ମରଣା ଭାଈ ॥ ୫ ॥
ଇକ ହିଂଦଵାଣୀ ଅଵର ତୁରକାଣୀ ଭଟିଆଣୀ ଠକୁରାଣୀ ॥
ଇକନ୍ହା ପେରଣ ସିର ଖୁର ପାଟେ ଇକନ୍ହା ଵାସୁ ମସାଣୀ ॥
ଜିନ୍ହ କେ ବଂକେ ଘରୀ ନ ଆଇଆ ତିନ୍ହ କିଉ ରୈଣି ବିହାଣୀ ॥ ୬ ॥
ଆପେ କରେ କରାଏ କରତା କିସ ନୋ ଆଖି ସୁଣାଈଐ ॥
ଦୁଖୁ ସୁଖୁ ତେରୈ ଭାଣୈ ହୋଵୈ କିସ ଥୈ ଜାଇ ରୁଆଈଐ ॥
ହୁକମୀ ହୁକମି ଚଲାଏ ଵିଗସୈ ନାନକ ଲିଖିଆ ପାଈଐ ॥ ୭ ॥ ୧୨ ॥

ଆସା ଅସଟପଦୀଆ

## ଆଦର୍ଶ ମାନବ

: ୧୨୮ :

ଐସେ ଜନ ଵିରଲେ ଜଗ ଅଂଦରି ପରଖି ଖଜାନୈ ପାଇଆ ॥
ଜାତି ଵରନ ତେ ଭଏ ଅତୀତା ମମତା ଲୋଭୁ ଚୁକାଇଆ ॥ ୭ ॥
ନାମି ରତେ ତୀରଥ ସେ ନିରମଲ ଦୁଖୁ ହଉମୈ ମୈଲୁ ଚୁକାଇଆ ॥
ନାନକୁ ତିନ କେ ଚରନ ପଖାଲୈ ଜିନା ଗୁରମୁଖି ସାଚା ଭାଇଆ ॥ ୮ ॥ ୭ ॥

ପ୍ରଭାତୀ ଅସଟପଦୀଆ

: ୧୭୭ :

କାହିଁ ସେ ବେଳର ପୋଲୋ ଖେଳ, ଅଶ୍ୱଶାଳା ଓ ଅଶ୍ୱବୃନ୍ଦ ? କାହିଁ ବା ଭେରୀ-ତୂରୀର ଶାହାନାଇ ? କାହାନ୍ତି ଡାକୁଆ ଓ ସୈନିକସବୁ ? କାହିଁ ସେସବୁ ଦର୍ପଣ ଓ ଦର୍ପଣରେ ଦେଖୁଥିବା ସୁନ୍ଦର ମୁଖସବୁ ? କେହି ତ ଆଉ ଦୃଷ୍ଟିରେ ପଡ଼ୁନାହାନ୍ତି । ମୁଁ ତେଣୁ ବୁଝୁଛି ଯେ, ଏ ଜଗତ ଏକାନ୍ତରେ ତମର । ହେ ପ୍ରଭୁ, ତମର ଖିଆଲ ଅନୁସାରେହିଁ ତମେ ସବୁକଥା ସ୍ଥାପିତ-ବିସ୍ଥାପିତ କରିଦେଉଛ ଏବଂ କ୍ଷଣକରେ କରିଦଅ ଧନ-ବିତରଣ । ସେକାଳର ଘର-ଦ୍ୱାର, ମଣ୍ଡପ ମହଲ କାହିଁ, କୁଆଡ଼େ ଗଲା ସେଦିନର ସୁନ୍ଦର ମୁସାଫିରଖାନା ସବୁ ? କୁଆଡ଼େ ବା ଗଲେ ଶଯ୍ୟା-ସୁଖଦାୟିନୀ ସେହି କାମିନୀଗଣ, ଯାହାଙ୍କର ମୁଖଦର୍ଶନ ଘଟିଲେ ଲୋକଙ୍କୁ ରାତରେ ନିଦ ହେଉ ନଥିଲା ? ସେଦିନର ଅନ୍ତଃପୁର ବା କାହିଁ, ଯେଉଁଠି ତାମ୍ବୁଲଦାୟିନୀ ରମଣୀମାନେ ଅନବରତ କେବଳ ତାମ୍ବୁଲ ବାଣ୍ଟୁଥିଲେ ? ସେହି ସେହି ସ୍ଥାନରେ ଏସବୁର କିଛିହିଁ ଦୃଷ୍ଟ ହୁଏନାହିଁ ଆଜି । ବହୁଲୋକ ନଷ୍ଟ-ଭ୍ରଷ୍ଟ ହୋଇଗଲେ କେବଳ ଧନପାଇଁ ଏବଂ ପ୍ରଭୁଙ୍କ ମାର୍ଗକୁ ଭୁଲିଗଲେ ଏକାବେଳକେ । ବିନା ପାପରେ କି ଧନ-ସମ୍ପଦ ଆସେ କେବେ ? ଏବଂ ଲୋକ ମଲାପରେ ତାର ସେହି ପାପ-ସଞ୍ଚିତ ଧନ ତା ସାଥିରେ ନଯାଇ ଏଇଠି ପଡ଼ିରହେ । ମନେହୁଏ କି, ନିଜେ ପ୍ରଭୁ ଯାହାକୁ ଭ୍ରମିତ କରିବାକୁ ଖିଆଲ କରନ୍ତି, ବୋଧହୁଏ ତା'ଠୁ ଆଗ ସଦ୍‌ଗୁଣରାଜି କାଢ଼ିନିଅନ୍ତି । ସଞ୍ଚିତ ଧନ-ଧାନ୍ୟ ଭଣ୍ଡାରସବୁ ଜଳିଉଠିଲା ଏବଂ ପକ୍‌କା ଘରସବୁ ଭସ୍ମୀଭୂତ ହୋଇଗଲା । ରାଜକୁମାରମାନେ ଖଣ୍ଡ-ବିଖଣ୍ଡିତ ହୋଇ ମାଟିରେ ଗଡ଼ିଲେ, ଯାଦୁମନ୍ତ୍ରରେ କୌଣସି ଅଦ୍ଭୁତ ଫଳିଲା ନାହିଁ, କି କୌଣସି ମୋଗଲ ଅନ୍ଧ ହେଲା ନାହିଁ । ମୋଗଲ ଓ ପଠାଣ ଭିତରେ ଖଣ୍ଡାରେ ହାତାହାତି ହୋଇ ଯୁଦ୍ଧ ଚାଲିଲା, ଗୁଳି ଦପଟୁ ଫୁଟିଲା ଏବଂ ହସ୍ତୀସେନା ମଧ୍ୟ ଲଢ଼ିଲେ; କିନ୍ତୁ ଯାହା ଯାହାଙ୍କ ସମ୍ପର୍କରେ ପ୍ରଭୁଙ୍କର ଆଜ୍ଞାପତ୍ର ଶେଷ ହୋଇ ଆସିଥିଲା, ସେ'ପଟେ ସେଇମାନେ ପଟାପଟ୍ ମଲେ । ହିନ୍ଦୁ ସ୍ତ୍ରୀ, ତୁରକୀ ଠାକୁରାଣୀ ଓ ଭଟିସ୍ତାଣୀ କେହି ବାଦ ପଡ଼ିଲେନି; ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ବସ୍ତ୍ରଚ୍ୟୁତ ହୋଇ ସମସ୍ତେ ଗଲେ ଶ୍ମଶାନକୁ । ଯେଉଁ ସ୍ତ୍ରୀମାନଙ୍କର ସୁନ୍ଦର ଓ ପରାକ୍ରମ ସ୍ୱାମୀମାନେ ଆଉ ଫେରିଲେ ନାହିଁ, ସେମାନଙ୍କର ରାତି ଏବେ କିପରି କଟେ ? ଯିଏ କର୍ତ୍ତା ସେ'ତ ନିଜେ ଏସବୁ କରିଛନ୍ତି ବା କରାଉଛନ୍ତି, ଫେରାଦ କରିବା କାହା ପାଖରେ ? ହେ ପ୍ରଭୁ, ଦୁଃଖ-ସୁଖ ତ ସବୁ ତୋର ଇଚ୍ଛାଧୀନ; ନିଜର ଏତେ ଦୁଃଖ ବେଦନ କରି ତତେ ଶୁଣାଇ କି ଲାଭ ? ଈଶ୍ୱରଙ୍କ ଅନୁଶାସନରେ ହିଁ ସମଗ୍ର ସଂସାର ଚାଳିତ; ସେ ଏବେ ସବୁ ଦେଖୁଛନ୍ତି ଏବଂ ଦେଖି ହୁଏତ ଖୁସି ହେଉଛନ୍ତି । ନାନକର କଥନ ଏହି ଯେ, ପ୍ରତ୍ୟେକ ମନୁଷ୍ୟ ନିଜ କର୍ମର ଫଳ ଭୋଗିବହିଁ ଭୋଗିବ ।

: ୧୭୮ :

ପ୍ରଭୁ ନିଜେ ପରୀକ୍ଷା କରି ନିଜ ଭଣ୍ଡାରକୁ ନେଇଯାଉଥିବା ବ୍ୟକ୍ତି ଏ ଜଗତରେ ବିରଳ; କାରଣ ଏପରି ଲୋକଠାରେ ଜାତି-ବର୍ଣ୍ଣର ଭେଦ ସଂପୂର୍ଣ୍ଣ ଲୋପ ପାଇଥିବ, ଏବଂ ଲୋପ ହୋଇଥିବ ମମତ୍ୱ-ବୋଧ ଓ ଲୋଭ । ନାମରତ ସେହି ମହାତ୍ମା ତୀର୍ଥପରି ନିର୍ମଳ; ଯାହାଙ୍କଠାରେ ଲୁପ୍ତ ହୋଇଛି ଅହଙ୍କାର ଓ ଦୁଃଖର ମଳ । ନାନକ ଏପରି ଲୋକର ଚରଣ-ବନ୍ଦନା କରେ; କାରଣ ଗୁରୁଙ୍କ ଉପଦେଶ ଅନୁଯାୟୀ ତାର ଜାଗ୍ରତ ହୋଇଛି ସନ୍ଥପୁରୁଷ-ମାନଙ୍କ ପ୍ରତି ପ୍ରେମ, ଶ୍ରଦ୍ଧା ଓ ସମ୍ମାନ ।